ସେମାନଙ୍କ ନିକଟରେ କୃତଜ୍ଞ :
ଯେଉଁ ସମ୍ପାଦକମାନେ ପୂର୍ବରୁ
ଆଲୋଚନାଗୁଡିକୁ ପହଞ୍ଚାଇଛନ୍ତି
ଅଗଣିତ ପାଠକପାଠିକାଙ୍କ ସାମ୍ନାରେ

ପ୍ରକାଶନର ଏଇ ଶୁଭ ଅବସରରେ:
ଶ୍ରଦ୍ଧା ଓ ସମ୍ମାନର ସହିତ ସ୍ମରଣ
କରୁଚି  ଗାଳ୍ପିକ ଦେବାଶିଷ ପାଣିଗ୍ରାହୀ
ଏବଂ କବୟିତ୍ରୀ ସୈରିନ୍ଧ୍ରୀ ସାହୁଙ୍କୁ

ବିଶେଷ କୃତଜ୍ଞତା:
ଗବେଷକ ଡଃ. ଫଣୀନ୍ଦ୍ର ଭୂଷଣ ନନ୍ଦ

ମୋର ଧନ୍ୟବାଦ ଏମାନଙ୍କୁ:
ଅଙ୍କିତା ଗ୍ରାଫିକ୍ସ
ପ୍ରକାଶ ମହାପାତ୍ର (ପ୍ରଚ୍ଛଦ ଶିଳ୍ପୀ)
ଏବଂ ପ୍ରକାଶକ କାବ୍ୟଲୋକଙ୍କୁ



ନକୁଲ ଚଂଦ୍ର ସାହୁଙ୍କ

ସମକାଳୀନ ଶ୍ରେଷ୍ଠପ୍ରବନ୍ଧ କେତୋଟି

# ସୃଷ୍ଟିର ସ୍ନାୟୁ ଓ ଶବ୍‌ଦର ଆତ୍ମା

କାବ୍ୟଲୋକ

**ସୃଷ୍ଟିର ସ୍ନାୟୁ ଓ ଶବ୍‌ଦର ଆତ୍ମା** (ସାହିତ୍ୟ ଆଲୋଚନା ଓ ସମାଲୋଚନା) ❐ ଲେଖକ : ନକୁଳ ଚଂଦ୍ର ସାହୁ, 'ଶବ୍‌ଦ ଘର'ଗୋଡିସାହି,କଟକ-୭୫୪ ୦୦୬ ❐ ପ୍ରକାଶକ : କାବ୍ୟଲୋକ, ୨/୨, ଟାଇପ୍ - ।। ଆର୍, ୟୁନିଟ୍-୧, ଭୁବନେଶ୍ୱର-୯ / ନିଜିଗଡ଼ କୁରୁଖି, ହରିରାଜପୁର, ଜଟଣୀ, ପୁରୀ-୭୫୨୦୫୦ ❐ ସ୍ୱତ୍ତ୍ୱ : ଶ୍ରୀମତୀ ସୁଚିତ୍ରା ସାହୁ, ❐ ପ୍ରଚ୍ଛଦ : ପ୍ରକାଶ ମହାପାତ୍ର ❐ ମୁଦ୍ରଣ : କଲ୍ୟାଣୀ, ଭୁବନେଶ୍ୱର-୧୪ ❐ ପ୍ରଥମ ପ୍ରକାଶନ : **ରାଜଧାନୀ ପୁସ୍ତକମେଳା-୨୦୦୮** ❐ ମୂଲ୍ୟ : ୧୪୦ ଟଙ୍କା

**Srustira snayou o sabdara aatma** (A collection of essays on philosophy of literature)❐By :Nakul Chandra Sahoo ❐Publisher : **KAVYALOKA**, 2/2. Type-II R, Unit-I, Bhubaneswar-9 / Nizigarh Kurukhi, Harirajpur, Jatni, Puri-752050 ❐©Smt. Suchitra Sahoo ❐Cover Design : **Prakash Mohapatra** ❐ First Edition : Rajadhani Pustak Mela-**2008** ❐ Price : **Rs. 140/-**

**ISBN: 978-81-89777-54-8**

ଯାହାଙ୍କ କଲମରେ କେବଳ ଅମୃତ ଓ ଆଲୋକ
ଭବିଷ୍ୟତର ପୃଥିବୀ ପାଇଁ ପାଥେୟ
ସେହି ମହାନ୍ ସ୍ରଷ୍ଟା
ନବ କିଶୋର ରାଜଙ୍କୁ ମୋ ଏଇ ପ୍ରବନ୍ଧର ଅର୍ଘ୍ୟ

- ନକୁଳ ଚଂଦ୍ର

# ପ୍ରବନ୍ଧକ୍ରମ

ପୃଷ୍ଠା ବିଷୟ

# ମହାକାଳର ଚୋଟ ଓ ସମକାଳୀନ ଶବ୍ଦ ଶିଳ୍ପ

ଖୁବ୍ ନିକଟରେ ବିକାଶମୁଖୀ ଗୋଟିଏ ଶତାବ୍ଦୀ ବିଦାୟ ନେଇଛି। ସେହି ଶତାବ୍ଦୀର ସର୍ବଶ୍ରେଷ୍ଠ ଉପନ୍ୟାସ ଭାବେ ଜେମ୍ସ ଜଏସ୍‌ଙ୍କ 'ୟୁଲିସିସ୍'କୁ ବିଦ୍ୱାନ ମଣ୍ଡଳୀ ମାନ୍ୟତା ସମର୍ପିଛନ୍ତି। ସେହିଭଳି ଗତଶତକର ଶେଷଦଶଂଧିରେ ଏ.ଏସ୍.ବ୍ୟଓଙ୍କ 'Pos-session', ବେନ୍ ଓକ୍ରିଙ୍କ 'The Famished Road, ମାଇକେଲ ଅଂଦାଜୀଙ୍କ ରଚିତ The English patient', ରୋଡୀ ଡ୍ୟୁଲେଙ୍କ 'Paddy clarke Ha, Ha, Ha,, ଟୋନି ମୋରିସନ୍‌ଙ୍କ 'Paradise' ଏବଂ ଡେରିକ୍ ଓ୍ୱାଲକଟ୍‌ଙ୍କ କାବ୍ୟ 'Omeros' ପ୍ରଭୃତି ବିଶ୍ୱସାହିତ୍ୟର ମାର୍କେଟକୁ ଚହଲାଇଛି। ବହି ସମାଜ ଜୀବନର ମୁଖପତ୍ର। ସମାଜ, ସଭ୍ୟତା ଓ ସଂସ୍କୃତିର ବାହକ ସାହିତ୍ୟ। ପ୍ରକାଶିତ ଉପରୋକ୍ତ ସବୁତକ ବହି ମାନବୀୟ ଅବସ୍ଥା (human situation) ର ଗଭୀର ଅଧ୍ୟୟନରେ ଭାରାକ୍ରାନ୍ତ ଏବଂ ଅଭିବ୍ୟକ୍ତିରେ ସମୟ ଉର୍ଦ୍ଧ୍ୱରତ (timeless) ବା କାଳଜୟୀ। ଗତ ଶତାବ୍ଦୀ ପ୍ରାରମ୍ଭରେ ପ୍ରଖ୍ୟାତ ଗଦ୍ୟଶିଳ୍ପୀ ହେନ୍‌ରି ମିଲର ରଚନା କରିଥିଲେ 'ଦି ଟ୍ରପିକ୍ ଅଫ୍ କ୍ୟାନସର', ସମୟର କ୍ୟାନ୍‌ସର ଖାଇ ଚାଲିଛି ସମସ୍ତଙ୍କୁ। କିଏ ମହାକାଳର ଚୋଟରୁ ବଞ୍ଚୁଛି ? ଭାରତୀୟ ଅଦ୍ୱୈତବାଦୀ ପୁରୁଣା ଚିନ୍ତାକୁ ନୂତନ ଗଦ୍ୟର ଆଙ୍ଗିକରେ ସିଏ କରିଥିଲେ ଚକ୍‌ମକ୍। ଶବ୍ଦ ଖର୍ଚ୍ଚରେ ଶ୍ଳୀଳ ଅଶ୍ଳୀଳର କିଛି ବାଛ ବିଚାର ରଖି ନଥିଲେ ମିଲର। ଶତକ ଶେଷ ଦଶନ୍ଧି ବେଳକୁ 'ଲେଡୀ ଚାଟାର୍ଲି' ପ୍ରତି ଦୃଷ୍ଟି ନାହିଁ ପାଠକଙ୍କ କିମ୍ୱା ଲେଖକଙ୍କ; ଶେଷ ଦଶନ୍ଧିରେ ମଣିଷର ଆଖି ଅନ୍ୱେଷଣ କରୁଛି ଏବଂ ତର୍ଜମା କରୁଛି 'ଦି ସୁଇଟେବ୍ଲ ବୟେ'କୁ। 'ଦି ଗଡ୍ ଅଫ୍ ସ୍ମଲଥିଙ୍ଗସ୍'କୁ ଖୋଜୁଛି। କବିତା କ୍ଷେତ୍ରରେ କବି ଘୋଷଣା କରୁଛନ୍ତି, Death like a dream that brings forgetfulness of the world' (କବି ଜର୍ଜ ଲୁଇସ୍ ବୁର୍‌ଜେସ୍)। 'La Recoleta' କବିତା ପ୍ରାରମ୍ଭ ପଙ୍‌କ୍ତି 'Death is scrupulous here; here in this city of ports'; ଆଉ ମୃତ୍ୟୁର ଭୟ ନାହିଁ। ମୃତ୍ୟୁକୁ ବୁଝି ହୋଇ ଗଲାଣି, 'Death is life lived away / Life is death com-ing on' ବୋଲି ! ମୋଟ କଥା ମଣିଷର ଅନ୍ତଦୃଷ୍ଟି ବଦଳିଛି। ସେଇଥି ପାଇଁ 'Under Orion' ସଂକଳନରେ Jorge Luis Borges ଶେଷ ଦଶଂଧିର ଶବ୍ଦ ଶିଳ୍ପରେ ଉପସ୍ଥାପିତ

କରାଇଛନ୍ତି ମଣିଷଙ୍କ ବଦଳା ଦୃଷ୍ଟି। ପାଠ କରା ଯାଇ ପାରେ ତାଙ୍କ ନିମ୍ନ ପଂକ୍ତି କେତୋଟି:

'The sun, wonderfully seen through / Whitman's eyes .' You have used up the years and they have / used up you. / And still, and still, you have not / written the poem."

ସମୟର କ୍ୟାନସର କବିଙ୍କୁ ଖାଇଛି ଏବଂ କବି ମଧ ହଜମ କରି ଦେଇଛନ୍ତି ତମାମ ସମୟର କ୍ୟାନ୍‌ସରକୁ। କବିତା ନାହିଁ। ଯାହା ରହିଛି ତାହା ଅବଶିଷ୍ଟ କିଛି! ଜୀବନରୁ 'ଅବଶିଷ୍ଟ'ର ସଂଜ୍ଞା ଗୋଟିଏ ବିଶେଷ୍ୟପଦ ବ୍ୟତୀତ ନୁହେଁ ଅନ୍ୟ କିଛି!

ନୂତନ ଶତାବ୍ଦୀ ଆରମ୍ଭରେ 'ବ୍ଲୁମ୍ସବୋରି' ପ୍ରକାଶନ ସଂସ୍ଥା ପ୍ରକାଶ କରିଛନ୍ତି ମାନିଲ୍ ସୁରିଙ୍କ ଖଣ୍ଡିଏ ପୁସ୍ତକ 'ଦି ଡେଥ୍ ଅଫ୍ ବିଷ୍ଣୁ'। ଭାରତୀୟ ସାଂସ୍କୃତିକ ଚେତନାକୁ ଚମକାଇ ଦେଲାଭଳି ହୋଇଛି ଶୀର୍ଷକଟି। ବିଷ୍ଣୁ ଅଜାତ, ଅମୃତ, ଅଲେଖ ଓ ନିରଂଜନ। ମିଥିରେ ଯିଏ ସ୍ୱୟଂ ସ୍ରଷ୍ଟା ଓ ସଂହାରକର୍ତ୍ତା, ତାଙ୍କର ପୁଣି ମୃତ୍ୟୁ ? ? ବହି ବିକ୍ରୟ ପାଇଁ ଚମକପ୍ରଦ ନାମମାନ ଏବେ ଦିଆ ଯାଉଛି। ଦ୍ୱିତୀୟ କଥା- 'ବିଷ୍ଣୁ' ଉପନ୍ୟାସର ଏକ ଚରିତ୍ର। ଗୋଟିଏ ବହୁତଳ ବିଶିଷ୍ଟ ଆପାର୍ଟମେଣ୍ଟ ସୌଧର ପାହାଚରେ ରହୁଥିବା ଜଣେ ମଣିଷ। ଜଣେ ବାସହୀନର ମୃତ୍ୟୁ କାହାଣୀ ରୋଚକ ଭାଷାରେ ରଚନା କରିଛନ୍ତି ମାନିଲ୍ ସୁରି। ଯାହାର ମୁଖ୍ୟ କଥା 'ମାନବୀୟ ଅବସ୍ଥା'। ମଣିଷର ଯାତନା, ବଞ୍ଚିବା ଓ ରହିବା କରୁଣ ଅବସ୍ଥାର ଘଟଣା ବା ବର୍ଣ୍ଣନା। ମାନବ ସମ୍ବଳ କେତେ ଦୁସ୍ଥ, କେତେ ଅସହାୟ ଓ ରୁଗ୍‌ଣ ତାହା ବର୍ଣ୍ଣନା କରିଛି ସାହିତ୍ୟ। ଭାଷା ବଡ଼ ରୋକ୍‌ଠୋକ୍। ବିଶ୍ୱ ସାହିତ୍ୟ ବା ଭାରତୀୟ ସାହିତ୍ୟ ସହିତ ଓଡ଼ିଆ ସାହିତ୍ୟର ଗତି ବା ପଦପାତ ଠିକ୍ ସମଭାବରେ ଘଟୁଛି। ଦିନେ ଯେଉଁ କବି ଦୃଷ୍ଟିକୁ ଆକର୍ଷିତ କରିଥିଲା 'ସାତ ବର୍ଣ୍ଣର ସକାଳ', ତାହା ଦୁଇ ଚାରୋଟି ବର୍ଷ ପରେ ତିରୋହିତ। କାବ୍ୟ ଚେତନାରେ ପ୍ରବେଶ କରିଛି ନିଃସଙ୍ଗତା ବୋଧର ସାଂଘାତିକ ଅସୁସ୍ଥବୋଧ 'ଏକା ଏକା ସହବାସ।' ବରଂ ସ୍ପଷ୍ଟ ହେବ କହିଲେ, 'ସହବାସ ଏକା ଏକା'! କିଏ କାହା ସହ ସହବାସ କରୁଛି? ଆପାର୍ଟମେଣ୍ଟର ଶିଡ଼ି ତଳେ ମାନିଲ୍ ସୁରିଙ୍କ 'ବିଷ୍ଣୁ' ବାସ କରୁଥିଲା ନିଜ ସହିତ।

ସୂର୍ଯ୍ୟମିଶ୍ରଙ୍କ ପୋରୁହାଁ କାବ୍ୟ 'ସାତ ବର୍ଣ୍ଣର ସକାଳ' ଏବଂ ତା' ପରବର୍ତ୍ତୀ କାବ୍ୟିକ ଉତ୍ତରଣ 'ଏକାଏକା ସହବାସ'। ଏହା ପରବର୍ତ୍ତୀ ଚେତନା 'ଶୂନ୍ୟବାସ' ଏବଂ ନିକଟରେ ପ୍ରକାଶିତ ହୋଇଛି ତାଙ୍କ 'ହାୟ ଶବ୍ଦ'। ପ୍ରାରମ୍ଭରୁ ମାନବୀୟ

ଅବସ୍ଥା ପ୍ରତି ରହିଛି ସୂର୍ଯ୍ୟମିଶ୍ରଙ୍କ ଦୃଷ୍ଟି । ମାନବୀୟ କରୁଣ ଅବସ୍ଥାର ଚିତ୍ରଣ 'ଏକାଏକା ସହବାସ'ରୁ ସାଂଘାତିକ ଭାବେ କରିହୁଏ ଉପଲବ୍ଧି । ବୁର୍‌ଜେସ୍‌ଙ୍କ କବିତାର ନିମ୍ନ ପଙ୍କ୍ତି କେତୋଟି ସୂର୍ଯ୍ୟମିଶ୍ରଙ୍କ କାବ୍ୟିକ ସ୍ଥାପତ୍ୟର ଭିତ୍ତିକୁ କିୟଦଂଶ ବୁଝାଇଛି :

'... life is real.
Space and time are its shape
The minds magical modes
and when life burns out
space, time and death go out with it
as when light fails
the images in the mirror fails.

-La Recoleta / Jorge Luis Borges

ଜାଁପଲ୍ ସାର୍‌ତ୍ରେ ଲେଖିଛନ୍ତି ଖଣ୍ଡିଏ ବହି 'ବିଙ୍ଗ୍ ଏଣ୍ଡ ନଥିଂନେସ୍' । ବୋଧେ ଅସ୍ତିତ୍ୱବାଦର ମର୍ମ କଥା ! 'ସତ୍ତା' ଓ 'ଶୂନ୍ୟତା' ଦୁଇଟି ଯାକ ଏକ । ଶୂନ୍ୟତା ସହିତ ବାସ କରୁଛି ସତ୍ତା ବା ସତ୍ତା ସହିତ ବାସ କରିଛି ଶୂନ୍ୟତା । ଶୂନ୍ୟତା ବ୍ୟତୀତ ସତ୍ତା ନିଷ୍ପ୍ରାଣ । ଶିବ ଓ ସୌନ୍ଦର୍ଯ୍ୟ ରହିତ । ସତ୍ତା ହିଁ ଅସ୍ତିତ୍ୱ । ସତ୍ତା ମଧ୍ୟରେ ଶୂନ୍ୟତା ବା ଶୂନ୍ୟତା ମଧ୍ୟରେ ସତ୍ତା ଚେତନାର ଏକାଏକା ସହବାସର ଅବସ୍ଥା ! ଉପନୀଷଦୀୟ ଧାରଣାରେ 'ଏକୋସତ୍', ସତ୍ ଏକ । ବିପ୍ରାଃ ବହୁଧା ବଦନ୍ତି । ପଣ୍ଡିତମାନେ ତାହାକୁ ଅନେକ ପ୍ରକାର କହନ୍ତି । ଆଧୁନିକ କବି ଆଚାର୍ଯ୍ୟଶଙ୍କର, ଯାଜ୍ଞବଲ୍‌କ ଓ ଜନକଙ୍କ ଠାରୁ ଆଜି ପର୍ଯ୍ୟନ୍ତ ଆବିଷ୍କୃତ ଜ୍ଞାନ ଓ ସବୁସିଦ୍ଧିକୁ ସ୍କନ୍ଧରେ ବହନ କରନ୍ତି । ତେଣୁ ଋଷିପରି କରନ୍ତି ଆତ୍ମାରେ ଅବସ୍ଥାନ । ତାଙ୍କ କାବ୍ୟିକ ଚେତନା ଏକ ଆଲୋକର ଝରଣା । ସତ୍ୟର ଢ଼ାଙ୍କୁଣି ଟପି ତାହା ଅସତ୍ୟ ନଗରର ଉପତ୍ୟକା ଆଡ଼କୁ ହୋଇଛି ପ୍ରବାହିତ । ବୁର୍‌ଜେସ୍ ତାକୁ 'city of ports' ବିଂବରେ କରିଛନ୍ତି ପ୍ରତୀକିତ । ସୂର୍ଯ୍ୟମିଶ୍ର ତାକୁ 'ପୁରୀ' ଭାବେ କରିଛନ୍ତି ଅଭିବ୍ୟକ୍ତ । 'ପୁରୀ' ଗୋଟିଏ ସହର ନୁହେଁ, ଗୋଟିଏ ସତ୍ତା; ସାର୍‌ତ୍ରେଙ୍କ 'ବିଙ୍ଗ୍ ।'ଅସ୍ତିତ୍ୱବାଦୀ ମାନବୀୟ ଅବସ୍ଥାରେ ହୋଇଛି ଆକ୍ରାନ୍ତ !

'ଏକାଏକା ସହବାସ'ର ଏହି ବ୍ୟଂଜନାୟିତ ଅର୍ଥକୁ ବାଦ ଦେଲେ ସାଧାରଣ ଅର୍ଥ ଆତ୍ମରତି । ସଂସ୍କୃତରେ ଯାହାକୁ କୁହାଯାଏ 'ସ୍ୱମେହନ' । 'ଦି ପ୍ରାଇମ୍ ଅଫ୍ ଲାଇଫ୍'ରେ ସାର୍‌ତ୍ରେଙ୍କ ବାନ୍ଧବୀ 'ସିମନ ଡି ବିଏଭୋର୍' ଲେଖିଛନ୍ତି, ନଦୀକୂଳରେ

ତାଙ୍କୁ ଏକୁଟିଆ ଦେଖି ତାଙ୍କପ୍ରତି ତୃଷିତ ଯୁବକ ଜଣେ ବୁଢା ଆଢୁଆଳରେ କି ଘୋର ନିଃସଙ୍ଗତାପୂର୍ଣ୍ଣ କର୍ମରେ ରତ ! ! ଆଧୁନିକ ମଣିଷ ନିଜ ପାଶବିକ ତୃଷ୍ଣା ପ୍ରଶମନ ପାଇଁ ନ କରୁଛନ୍ତି ଯେ କ'ଣ ? କୃତ୍ରିମତା ଭିତରେ ତାର ଆତ୍ମହତ୍ୟା କଣ ଏକ ମାତ୍ର ରାସ୍ତା ? ପ୍ରଶ୍ନ ଓ ଘୃଣା ଭିତରେ ରୁନ୍ଧି ହୋଇ ଯାଇଛି ସିମନଙ୍କ ମନ।

ତେର ବର୍ଷର କିଶୋରଟିଏ କାଗଜରେ ପେନ୍‌ସିଲରେ ବସିବସି ଆଙ୍କୁଥାଏ ଛବି। ଶ୍ରେଣୀ ଶିକ୍ଷୟିତ୍ରୀ ତା ପାଖକୁ ଆସି ତା ଛବି ଅଙ୍କା ଦେଖି ପଚାରିଲେ, 'ଉମୋଭ୍, ତୁମେ ଜାଣ, କ'ଣ ତୁମେ କରୁଛ ?' 'ନା'। କହିଛି ଉମୋଭ। 'Well, this is life. But you are too small to understand. The day, if you are lucky, you will under stand', କହିଛି ଶିକ୍ଷୟିତ୍ରୀଟି; ଲେଖିଛନ୍ତି ବେନ୍ ଓକ୍ରୀ। 'ଏକାଏକା ସହବାସ'ରେ ସୂର୍ଯ୍ୟମିଶ୍ର ଲେଖିଛନ୍ତି ଯାହା, ତାହା ଜୀବନ। ମଣିଷର ଅଲଣା ଜୀବନ ! ନିମ୍ବପରି ପିତା ଜୀବନ। ନିମ୍ବର ସ୍ୱାଦ କ'ଣ, ଜାଣନ୍ତି ସମସ୍ତେ। ପୁଣି କବିତାର ଧାରାରେ ଇଲିୟଟ୍ ପ୍ରତ୍ୟକ୍ଷ ଭାବେ ଉପସ୍ଥାପିତ କରାଇ ନାହାନ୍ତି ମନର ମଣିଷଟିକୁ। ରୋମାନ୍ସ ମୃତ। ଆଧୁନିକତାର ପ୍ରବାହ ସ୍ଥିତି ଧର୍ମରେ ଶାଣିତ।

'Creative Evolution'ରେ ଲେଖିଛନ୍ତି Henry Bergson, କବି ସତ୍ୟ ଦ୍ରଷ୍ଟା। ସତ୍ୟର ଦର୍ଶନ ସମ୍ଭବ ହୁଏ ବୋଧିଦ୍ୱାରା, ନୁହେଁ ବୁଦ୍ଧିଦ୍ୱାରା। କାରଣ ବୋଧି ଏକ ଶ୍ରେଣୀୟ ସହାନୁଭୂତି। କବି ମାତ୍ରକେ ଏହି ଶକ୍ତିର ଅଟନ୍ତି ଅଧିକାରୀ। ପୁଣି ବୋଧି ବଳରେ ପ୍ରକୃତି ସହିତ ନିବିଡ଼ ସାନ୍ନିଧ କରନ୍ତି ସ୍ଥାପନ। କାଳର ଲକ୍ଷ୍ୟ ମୂଳତଃ ସତ୍ୟପ୍ରାପ୍ତି। କଳା ଶିଳ୍ପୀ ସତ୍ୟ ଦର୍ଶନର ଯୋଗ୍ୟତମ ବ୍ୟକ୍ତି। ସତ୍ୟ ସନ୍ଧାନୀ ହିଁ ଯଥାର୍ଥରେ ଜଣେ କଳାଶିଳ୍ପୀ।

ଏକ ଅଜ୍ଞାନ ଅଭାବବୋଧ ଓ କ୍ରିୟାଶୀଳ ଆବେଗରେ ନୂଆ ରୂପ ହେଉଛି ମଣିଷ। ସୂର୍ଯ୍ୟମିଶ୍ର ଆଙ୍କିଛନ୍ତି ତା'ର ଚିତ୍ର। ଆଧୁନିକ ମଣିଷ ଅସ୍ଥିରତା ଓ ସଂଶୟକୁ ଜୀବନାଦର୍ଶ ରୂପେ କରିଛି ଗ୍ରହଣ। ଜୀବନ ଯନ୍ତ୍ରଣାର ଶରବ୍ୟ ହୋଇ ମଣିଷ ଭୁଲି ଯାଇଛି ଯେ ସିଏ ଆନନ୍ଦର ପ୍ରତିଭୂ। ବୁଦ୍ଧିବାଦରେ ଅତ୍ୟଧିକ ଆସ୍ଥା ସ୍ଥାପନ କରି ଅସହାୟ ହୋଇ ପଡିଚି ମଣିଷ। ସୂର୍ଯ୍ୟମିଶ୍ରଙ୍କ ସେହି ଅସହାୟ ମଣିଷର ଚିତ୍ର 'ଏକାଏକା ସହବାସ'।

'Time and Free will' (ପୃଷ୍ଠା ୧୩୧ )ରେ ଆଲୋଚନା କରିଛନ୍ତି Bergson; ଆରିଷ୍ଟଟଲ୍‌ଙ୍କ ମତ ଅନୁଯାୟୀ ମନୁଷ୍ୟ ଏକ ସାମାଜିକ ପ୍ରାଣୀ। ସେମାନଙ୍କ ପାରସ୍ପରିକ

ଯୋଗାଯୋଗ ପାଇଁ ଏକ ମାତ୍ର ଭାଷା ହିଁ ବଡ଼ ମାଧ୍ୟମ। ଭାଷା ମଣିଷ ଭାବନାର ଶ୍ରେଷ୍ଠତମ ବାହକ। ଶବ୍ଦ ଭାଷାର ଏକକ ଓ ସ୍ଥାୟୀ ସ୍ୱୀକୃତ ଅର୍ଥରେ ସମୃଦ୍ଧ। ମାନବ ଅନୁଭୂତିର ସାମଗ୍ରିକ ସତ୍ତାକୁ ଭାଷା ହିଁ କରିଥାଏ ନାମ କରଣ। ଏହା ବହିରାଭିମୁଖ୍ୟର କାର୍ଯ୍ୟ ଓ ଚଳମାନ ସତ୍ତାର ପ୍ରକାଶକ ଅଟେ ବହିରାଭିମୁଖ୍ୟ। ପୁନଶ୍ଚ ଭାଷାରେ ପ୍ରକାଶିତ ହେବା ହିଁ ପ୍ରତ୍ୟେକ ଅନୁଭୂତିର ଚରମ ଲକ୍ଷ୍ୟ। ନିଜର ଚରମ ଓ ପରମ ଅନୁଭୂତିମାନଙ୍କୁ ସୂର୍ଯ୍ୟମିଶ୍ର ଏଥିରେ ପ୍ରଦାନ କରିଛନ୍ତି ଶିଳ୍ପ ରୂପ।

"ଫିଲୋସଫିକାଲ ଇନ୍‌ଭେଷ୍ଟିଗେସନ୍'ରେ 'ଥିଓରି ଅଫ୍ ପ୍ରାଇଭେଟ ଲାଙ୍ଗୁଏଜ୍' ଶୀର୍ଷକ ଆଲୋଚନା କରିଛନ୍ତି ଲୁଡ୍‌ଉଇଗ ଉଇଟଗେନ୍‌ଷ୍ଟାଇନ୍। ତାଙ୍କ ମତରେ ମାନସିକ ଜଗତର ଆଭିମୁଖ୍ୟ ଦୁଇଟି। ଏକ-ବହିରାଭିମୁଖ୍ୟ ଓ ଦୁଇ-ଗଭୀରତର ଆଭିମୁଖ୍ୟ। ଆବେଗ, ସମ୍ବେଦନ ଓ ବିଚାର ପ୍ରଭୃତି ବହିରାଭିମୁଖ୍ୟ ଅନ୍ତର୍ଗତ ଏବଂ ଏଗୁଡିକ ସ୍ୱତନ୍ତ୍ର। ଏମାନଙ୍କ ବିଭିନ୍ନତା ରହିଛି ଓ ନାମକରଣ ମଧ୍ୟ ସମ୍ଭବପର। ଗଭୀରତର ଆଭିମୁଖ୍ୟରେ ମନର ବିବିଧ ଅନୁଭୂତି ସ୍ୱାତନ୍ତ୍ର୍ୟ ହରାଇ ହୋଇଥାନ୍ତି ସଂହତିବଦ୍ଧ। ଏଣୁ ଏମାନେ ବ୍ୟକ୍ତି ସତ୍ତାକୁ ଦିଅନ୍ତି ଦୋହଲାଇ। ଏଗୁଡିକ ହେଲା, ଗଭୀର ପ୍ରେମ, ନିଗୂଢ଼ ଅନ୍ତର୍ଦାହ ଓ ଚରମ ହତାଶା ଶ୍ରେଣୀୟ ମାନସିକ ଅବସ୍ଥା। ଯେଉଁ ଅବସ୍ଥା କବିତା ସୃଷ୍ଟିର ପ୍ରେରଣା, ବା ମୂଳ ଉତ୍ସ। କବିତା ଜନ୍ମନିଏ ଏଇ ମାନସିକ ଅବସ୍ଥାମାନଙ୍କରୁ। 'ଏକାଏକା ସହବାସ' ବା 'ଶୂନ୍ୟବାସ' ଏହିଭଳି ଏକ ମାନସିକ ସ୍ଥିତିର ଡାଳରେ ପ୍ରସ୍ଫୁଟିତ ହୋଇଥିବା କବିତାର ପୁଷ୍ପ। ପୁଷ୍ପ ପ୍ରସ୍ଫୁଟିତ ହେବାରେ ଥାଏ ସୁଖ। ଏହି କବିତାଗୁଡ଼ିକରେ ରହିଛି ସୁଖ। ଏହାର ସର୍ଜନା ନେପଥ୍ୟରେ ରହିଛି ସେହି ସୁଖର ପ୍ରବାହ ପ୍ରଚ୍ଛନ୍ନ।

କବିତା କାହା ପାଇଁ? କାହାରି ପାଇଁ ନୁହେଁ, ନିଜର ବିଜ୍ଞାପନ ପାଇଁ କେବଳ? କବି ଏବେ ଲେଖୁଛନ୍ତି ନିଜ ପାଇଁ? 'କାହା ପାଇଁ' ଏକ ସଂଦିଗ୍ଧ ଚେତନା। ତାହା ନିଜ ପାଇଁ ବି ନ ହୋଇପାରେ। ବରଂ ନିଜର ପ୍ରତିଦ୍ୱନ୍ଦ୍ୱୀ 'ଶତ୍ରୁ' ପାଇଁ ବି ହୋଇପାରେ: 'ସେଠାରୁ ମୋତେ ଭୁଲାଇ ଆଣିଲ ଗୋଟାଏ/ ଅସରନ୍ତି କାହାଣୀର ସୁବାସରେ' (ଶତ୍ରୁ)/ ରମାକାନ୍ତ ରଥ ('ଧ୍ୱନି ପ୍ରତିଧ୍ୱନି' ୩ ଜୁନ୍ ୨୦୦୧), ଯେଉଁଠି ଦୃଢ଼ୋକ୍ତି ଗୋଟିଏ ରହିଛି, 'ଆମ ଅବଶ୍ୟମ୍ଭାବୀ ଯୁଦ୍ଧରେ ମୁଁ ନିଶ୍ଚୟ ଭାବେ/ ଜିତି ଯିବି।' କବି ଚେସ୍ ଖେଳୁଛନ୍ତି? ନା' ଯୋଶେଫ କେ. ପରି କାଫ୍‌କାଙ୍କ ଦୁର୍ଗ ଭିତରେ ଖୋଜୁଛନ୍ତି ଦୁର୍ଗ ଦଖଲ ପାଇଁ ଦୁର୍ଗାଧିକାରୀ ନିଜର ଶତ୍ରୁଟିକୁ? ଯିଏ ଆଦୌ ନାହିଁ!

ସିଏ ନିଜେ ପଦାର୍ପଣ କରିବା ମାତ୍ରେ ହୋଇଛନ୍ତି ଶୂନ୍ୟ ଦୁର୍ଗର ମଣିଷ, ଦୁର୍ଗାଧିକାରୀ। ନିର୍ବୋଧ ଚରିତ୍ରଟି ଜୀବନ ବ୍ୟାପି ଖୋଜିଛି ତା'ର ଶତ୍ରୁକୁ।

କବିତା ଏକ ମୁକ୍ତି ? କେଉଁ ପରି ? ଆଲୋକ ପରି ବା ପବନ ପରି ! କବିତା ନୁହେଁ, କାହା ଅଧୀନ ! କବିତା ସବୁବେଳେ ଖାଲି ଭାଷାର ଅଧୀନ। କବିତା ପବନ ପରି ସୁଖକର କିନ୍ତୁ ନୁହେଁ ପବନ ପରି ମୁକ୍ତ। ମୁକ୍ତ କେବଳ ମଣିଷର ସ୍ୱପ୍ନ। ମଣିଷର ଭାବନା ମୁକ୍ତ। କବିତା ପାଇଁ ରହିଛି କିଛି ଅନିର୍ଦ୍ଦିଷ୍ଟ ନୀତି। ଜୁଆରପରି ସେ ନୀତିଗୁଡିକ ବଦଳନ୍ତି। କବିତା ନିଜେ ଏକ ସଂସ୍କୃତି। ସଂସ୍କୃତିର ବାହକ ଭାଷା। ଭାଷା ବ୍ୟତୀତ କବିତା ଅ-ଲେଖା। କବିତା ତ ନୁହେଁ ନିରଂଜନ। ବରଂ ନିରଂଜନର ଅଭିବ୍ୟକ୍ତି କବିତା। ସଂସ୍କୃତି ଜଗନ୍ନାଥ, ପଖାଳ ବା ପୁଚିଖେଳ ନୁହେଁ; ଏହା ନେପଥ୍ୟରେ ଥିବା ଜୀବନ୍ତ ପ୍ରବାହ ବା ଚଳଣିଟି ଅଟେ ସଂସ୍କୃତି। କବିତାପରି ଏମାନଙ୍କୁ ମଧ୍ୟ କେହି ସୃଷ୍ଟି କରିଛି।

ସୀମିତତା ଭିତରେ ଅସୀମତ୍ୱର ଅନ୍ୱେଷା ଅଟେ ଅଭୀପ୍ସା। ଅଭୀପ୍ସା ସ୍ପର୍ଦ୍ଧା ନୁହେଁ, ଏକ ଆଧ୍ୟାତ୍ମିକ ଅବସ୍ଥା। ଏହାର ଅନ୍ୟ ଶବ୍ଦ ତପସ୍ୟା। ତପସ୍ୟା ଜୀବନ୍ତ। ଏହା ବୈଷୟିକତା ନୁହେଁ, ସାଧନା। ଯୋଗ ସାଧନା ଓ ଶବ୍ଦ ସାଧନା ଏକ କାମ। ଶବ୍ଦ ନିଃଶବ୍ଦର ବେଦନାକୁ କରେ ଉଦ୍‌ଘାଟିତ। ଶବ୍ଦରେ ନିଃଶବ୍ଦ ହୁଏ ସଂଜୀବୀତ। ବାଲିଘର ଶିପ, ପଖାଳ ଓ କୁଆଁର ପୂନେଇ ଏଗୁଡିକ ଗୋଟିଏ ଗୋଟିଏ ବିମ୍ବ। ବିମ୍ବକୁ ବାଦ ଦେଇ କବିତା ହେବ। କିନ୍ତୁ ଆଧୁନିକ କବିତା ହେବ ନାହିଁ।

ଆଧୁନିକ କବିତାର ଯୁଗ ସମାପ୍ତ। ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ସହିତ ଦ୍ୱାପରର ସମାପ୍ତି ପରି ଇଲିୟଟଙ୍କ ପରେ ଆଧୁନିକ ରଚନାକାଳ ତିରୋହିତ। ଅତି ପ୍ରବଳ ସଂଖ୍ୟା ଗରିଷ୍ଠ ଗୌଣ ବ୍ୟକ୍ତିଗତ ଅନୁଭୂତିକୁ ଯଥାର୍ଥ ଭାବେ ୧୯୬୦ ମସିହା ପରେ Brian Patten ଓ Douglas Dunn ପ୍ରଭୃତି କବିତା କରିଛନ୍ତି। ସାଧାରଣ ଓ ସୁସ୍ଥ ନୂତନ କବିତାର ସଂକଳନ ମ୍ୟାକ୍‌ମିଲନ୍, ଇଂଲଣ୍ଡ, ପ୍ରକାଶ କରିଛନ୍ତି, 'New Lines'। ଶେଷ ବିଂଶର ନଅଟି କାବ୍ୟିକ ପ୍ରତିଭାକୁ ଏକତ୍ର ସଂକଳିତ କରିଥିଲେ ରବର୍ଟ କନ୍‌କ୍ୱେଷ୍ଟ। ଏମାନଙ୍କ ଆଦର୍ଶ ଓ ଲକ୍ଷ୍ୟ ଥିଲା, ଏପରି ଶବ୍ଦ ସଂଯୋଜନା ହେବ ଯେ, କାରଣ ଉର୍ଦ୍ଧ୍ୱରେ ଥିବ କାବ୍ୟିକ ଦୃଷ୍ଟି। ବାସ୍ତବତା ନେପଥ୍ୟରେ ରହସ୍ୟମୟ ଏକ ଅର୍ଥ ପ୍ରକାଶ କରୁଥିବ ସେମାନଙ୍କ ଶବ୍ଦ। ସାଧରଣ ଦୈନନ୍ଦିନ ଜୀବନ ରହସ୍ୟମୟ କାବ୍ୟିକ ଦୃଷ୍ଟାରେ ହୋଇଥିବ ପରିବର୍ତ୍ତିତ। ଅତ୍ୟଧିକ ଭାବାବେଗଠୁ ଦୂରେଇ ରହିବାକୁ ପଡ଼ିବ। ମାତ୍ର ଆଧୁନିକ କବି ଭାବାବେଗ ସ୍ଥାନରେ କାଟି ଦେଇଥିଲେ ଛକି। ପ୍ରତୀକ ମାଧ୍ୟମରେ

ଭାବାବେଗ ପରିବର୍ତ୍ତିତ ହୋଇ ହେବ ଅଭିବ୍ୟକ୍ତ। ଯାହା କବିତାର ଆଙ୍ଗିକକୁ କରିଥିଲା ଜଟିଳ ଓ ଧୂମ୍ରାଚ୍ଛନ୍ନ ଶୈଳୀକୁ ସେମାନେ କଲେ ତ୍ୟାଗ। କବିତା ଏବେ ସରଳ, ତରଳ ଓ ସ୍ୱଚ୍ଛ। ଝିଅ ପିଲାପରି ସୁନ୍ଦର। ପୂର୍ବରୁ ନିର୍ଦ୍ଧାରିତ ବାକେନୀତି ପରିହାର କଲେ ଆଧୁନିକକାଳ ପରବର୍ତ୍ତୀ ସମୟର କବି। ସେମାନେ ହେଲେ ୧- ଏଲିଜାବେଥ୍ ଜେନିଂସ୍, ୨- ଜନ୍ ହୋଲୋୱେ, ୩- ଫିଲିପ୍ ଲାର୍କିନ୍, ୪- ଥମ୍ ଗୁନ୍, ୫- କିଙ୍ଗସ୍‌ଲେ ଅମିଶ, ୬- ଡି.ଜେ. ଏନ୍‌ରାଇଟ୍, ୭- ଡୋନାଲଡ଼ ଡ଼ାଭୀ, ୮- ରବର୍ଟ କନ୍‌କ୍ୱେଷ୍ଟ ଓ ୯- ଜନ୍ ୱାଇନ୍ ପ୍ରଭୃତି। ଯେଉଁମାନଙ୍କ କାବ୍ୟିକ କୃତିତ୍ୱ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରିବର୍ତ୍ତୀ ସାହିତ୍ୟକୁ କରିଛି ସମୃଦ୍ଧ। ଇଂଲିଶ ସାହିତ୍ୟରେ ଏଇମାନେ ପ୍ରକୃତ ଉତ୍ତର ଆଧୁନିକ ଓ ଏହିଠାରୁ ହିଁ ଘଟିଛି ଉତ୍ତର ଆଧୁନିକତା ସ୍ରୋତର ବିକାଶ।  ପାବ୍‌ଲୋ ପିକାଶୋ କହୁଥିଲେ ଜଣେ ସୁନ୍ଦରୀ ସ୍ତ୍ରୀ ଓ ଗୋଟିଏ ବେଙ୍ଗ ମଧ୍ୟରେ ତଫାତ୍ ନଥାଏ କିଛି। କବି ପାଇଁ ସୁନ୍ଦର ଓ ଅସୁନ୍ଦର ମଧ୍ୟରେ ତଫାତ୍ ନଥାଏ କିଛି। ଅସୁନ୍ଦରକୁ ସୁନ୍ଦର କରିପାରେ ନାହିଁ କବିତା। ସୁନ୍ଦର ଓ ଅସୁନ୍ଦର ଦୃଷ୍ଟି ମଣିଷ ଚେତନାରୁ ସୃଷ୍ଟି 'ରୁଚି'ର ଗୋଟିଏ ଅବସ୍ଥା। ଅସୁନ୍ଦରକୁ ଅଭିବ୍ୟକ୍ତ କରିବାକୁ ଆବଶ୍ୟକ ଯେଉଁ ନିଷ୍ଠା (ତପସ୍ୟା), ସୁନ୍ଦରକୁ ଅଭିବ୍ୟକ୍ତ କରିବାକୁ ଆବଶ୍ୟକ ମଧ୍ୟ ହୋଇଥାଏ ସେହି ପରିମାଣ ନିଷ୍ଠା ଓ ଏକାଗ୍ରତା। ନିଷ୍ଠା, ଏକାଗ୍ରତା ଓ ଶବ୍ଦ ସାଧନା ଏକାଠି ହେଲେ ସୃଷ୍ଟି ହୁଏ 'ପ୍ରତିଭା'। ପ୍ରତିଭା କାବ୍ୟିକତାର ଜନନୀ। ସଂସ୍କୃତ କବି ସ୍ୱୀକାର କରିଛନ୍ତି ବିଶୁଦ୍ଧ କାବ୍ୟାଲୋଚନା ଦ୍ୱାରା ମଧ୍ୟ ପ୍ରତିଭାସଂପନ୍ନ ହୁଏ ବ୍ୟକ୍ତି। କବିତାର ସରସ୍ୱତୀ ତାଙ୍କ ଉପରେ କରୁଣାର କଳସ ଅଜାଡ଼ି ଥାଆନ୍ତି। ତା' ନ ହେଲେ ପ୍ରତିଭା ମଣିଷର ସହଜାତ। ଇଂଜିନିୟର ବା ଡାକ୍ତରପରି କବି ତିଆରି ହୋଇ ନଥା'ନ୍ତି; ଜନ୍ମ ନେଇ ଥାଆନ୍ତି।

୧୯୫୬ରେ ଆଧୁନିକ ପରବର୍ତ୍ତୀ ଯେଉଁ ଗୋଷ୍ଠୀ ସର୍ଜନା କଲେ 'New Lines' ସେମାନଙ୍କ ଆଦର୍ଶ ଓ ଆଭିମୁଖ୍ୟକୁ ବିରୋଧ କରି ୧୯୫୭ରେ ସଂଗଠିତ ହୋଇ ସାମନାକୁ ଆସିଲେ 'Maveriks' ଶୀର୍ଷକ ସଂକଳନ ମାଧ୍ୟମରେ ଆଉ ଏକ ଗୋଷ୍ଠୀ। ସେମାନେ ସ୍ପଷ୍ଟ ଉଚାରିତ କଲେ, ଅସ୍ୱଚ୍ଛତା ଏକ ପ୍ରକୃତି ଯାହା କବିତାର ଥେମ୍‌ରୁ ଅବିଚ୍ଛେଦ୍ୟ। ଭାବାବେଗକୁ କଲେ ବିରୋଧ। ଇଏଟସ୍‌ଙ୍କ ମିଥ୍ ତିଆରିକୁ ସ୍ୱୀକାର କରି ତାଙ୍କ କାର୍ଯ୍ୟକ୍ରମରେ ଗୁରୁତ୍ୱପ୍ରାପ୍ତ ହେଲା ଜୀବନର ଉତ୍କଣ୍ଠାପୂର୍ଣ୍ଣ ହର୍ଷ ଓ ଶୋକର ସାଧାରଣତଃ ଉପସ୍ଥାପନ। କାବ୍ୟିକ ସ୍ୱଚ୍ଛ ଆତ୍ମ ଅଭିବ୍ୟକ୍ତି ଥିଲା ସେମାନଙ୍କ ନୀତି। ସେମାନେ ହେଲେ ୧-ଡି. ଆବ୍‌ସେ, ୨- ଜନ୍

ସିଲ୍‌କିନ୍, ୩- ଭେରନନ୍ ସ୍କାନିଲଟ୍, ୪- ଏଚ.ସର୍ଜେଣ୍ଟ, ୫- ଜେ.ସି ହଲ୍, ୬- ଡାଭିଡ ରାଇଟ, ୭- ମାଇକେଲ ହାମବର୍‌ଜେର ଓ ୮- ଡବ୍ଲ୍ୟୁ. ପି. ଟର୍ଣ୍ଣର ପ୍ରଭୃତି। ମୋଟ କଥା, ଆଧୁନିକ କବିଙ୍କ ପରବର୍ତ୍ତୀ କାବ୍ୟିକ ପୃଥିବୀ ଚଟାଚଟ ବଦ୍‌ଲୁଛି। ଏଇ ବଦଳିବା ପାଇଁ ଦାୟୀ ବିଜ୍ଞାନ ଓ ଟେକ୍‌ନୋଲୋଜୀର ଅଗ୍ରଗତି। ମଣିଷ ସଭ୍ୟତା ଓ ଜୀବନ ବଦ୍‌ଲୁଛି। ତେଣୁ କବିତା ବଦଳିବାକୁ ବାଧ୍ୟ ହେଉଅଛି। ଶବ୍ଦ ଓ ମଣିଷର ରୁଚି ବଦ୍‌ଲୁଛି। ପରିବର୍ତ୍ତନ ପୃଥିବୀର ଧର୍ମ ହୋଇ ଯାଇଛି। ଯୋଶୋଫ୍ ହେଲେର୍ ତାଙ୍କ ଉପନ୍ୟାସ 'ପିକ୍‌ଚର ଦିସ୍'ରେ ଉଲ୍ଲେଖ କରିଛନ୍ତି, 'Today in America there are no longer any capitalists: They are industrialists, small businessmen, developers, financiers, promoters, and philanthropists', ଅର୍ଥାତ୍, ବୁର୍ଜୁଆ ବା ପୁଂଜିପତି ଏବେ ଆଉ ଆମେରିକାରେ ନାହାନ୍ତି। ସେମାନେ ଶିଳ୍ପପତି, କ୍ଷୁଦ୍ରବ୍ୟବସାୟୀ, ଅର୍ଥ ଲଗାଣକାରୀ ଓ ବିକାଶବାଦୀ ଆଜି ନୂତନ ଶବ୍ଦରେ ବଦଳି ଯାଇଛନ୍ତି। ସଂସ୍କୃତି ବଦ୍‌ଲୁଛି। କବିତା ଓ ଶବ୍ଦ ବଦ୍‌ଲୁଛି। ତଦନୁଯାୟୀ ଅର୍ଥବୋଧ ମଧ୍ୟ ନୂଆ ରୁଚିକୁ ବରଣ କରିଛି।

ଏହି ପରିବର୍ତ୍ତିତ ଅର୍ଥବୋଧ ଓ ମୂଲ୍ୟବୋଧକୁ ଶବ୍ଦଶିଳ୍ପୀ ଗ୍ରହଣ କରିଛନ୍ତି। ପ୍ରଗତି ଭିତରେ ଶୂନ୍ୟତା ମନ ଭିତରେ ସାଇତା ଆଦର୍ଶବୋଧର ଭିତ୍ତିକୁ ଦୋହଲାଇଛି। ରୁକ୍ଷ ହୋଇ ଯାଉଛି ଚଲା ପଥର ପଥରେ ପଡ଼ିବାକୁ ସହନ କରିକରି କବିର ନିରୁତା ହୃଦୟ। ଆରିଷ୍ଟଟଲ ଲେଖିଛନ୍ତି, ପ୍ଲାଟୋ ପ୍ରମାଣିତ କଲେ, 'good man was the happy man' ଯେତେବେଳେ ସିଏ ନିଜେ ନଥିଲେ ଜଣେ ସୁଖୀ ମଣିଷ ! କବି ନୁହେଁ ଯାହା, ତାହା ସିଏ ଲେଖି ନାହାନ୍ତି; ଏହା ସୂର୍ଯ୍ୟମିଶ୍ରଙ୍କ 'ଏକାଏକା ସହବାସ' ଓ 'ଶୂନ୍ୟବାସ' ବହି ଦୁଇଟିରୁ ସାମନାକୁ ଆସିଛି। ନୂତନ ମୂଲ୍ୟବୋଧକୁ ସୂର୍ଯ୍ୟମିଶ୍ର ତାଙ୍କ କାବ୍ୟିକତାରେ ଗ୍ରହଣ କରିଛନ୍ତି। ସୂର୍ଯ୍ୟମିଶ୍ରଙ୍କ ଶୀର୍ଷକ କବିତା ଥିଲା 'ଏକାଏକା ସହବାସ' ପାଞ୍ଚୋଟି ଏପିସୋଡ଼ରେ ତାଙ୍କ କାବ୍ୟିକ ପୃଥିବୀର କାଳପୁରୁଷ ବିଭକ୍ତ ଏବଂ ସମାପ୍ତ। 'ପଞ୍ଚାନି ସପ୍ତାନି କୁଶଳାନି'ର ପାରଂପାରିକତା କେତେଦୂର ତାଙ୍କୁ ସ୍ପର୍ଶ କରିଛି କହି ହୁଏନା। କିନ୍ତୁ ନିଜ ରଂଗ ଢ଼ଙ୍ଗର ବୈଶିଷ୍ଟ୍ୟ ସବୁ ଏପିସୋଡ଼ରେ ପର୍ଯ୍ୟାପ୍ତ। କବିତାର ପ୍ରାଚୁର୍ଯ୍ୟକୁ ଉପଲବ୍ଧି କରାଇବାକୁ ସ୍ମରଣ କରୁଛି ତାଙ୍କ ପ୍ରଥମ କବିତାର ଆରମ୍ଭକୁ; 'ଚୌହଦୀ କାନ୍ଥ ଭିତରେ ଝର୍କା ଆର କଡ଼ରେ ବିଦାୟ ନେଇଚି ସଶବ୍ଦ ସାଂସାରିକ କୋହ / ମୁଁ ଏକ ସଂକଟର ମାଟିବିନ୍ଦୁ/ ମୁଁ ଗୋଟେ ନିଃସୀମ ସ୍ୱପ୍ନାକାଶରେ ଶୂନ୍ୟତାର ଇନ୍ଦୁ।'

ପ୍ରଥମ ପୁରୁଷ ଏକ ବଚନ 'ମୁଁ'। ସେଇ ମୁଁ (କାବ୍ୟପୁରୁଷ ନିଜେ ?) ଗୋଟେ ନିଃସୀମ ସ୍ୱପ୍ନାକାଶରେ ଶୂନ୍ୟତାର ଇନ୍ଦୁ। ବଡ଼ ବିରୋଧାତ୍ମକ ! 'ନିଃସୀମ'ରେ ଶୂନ୍ୟତାର 'ଇନ୍ଦୁ', ଇନ୍ଦୁ ରୋମାଣ୍ଟିକ୍ ! ଅନସ୍ତିତ୍ୱରେ ଅହଂର ଆତୁର ଭାବଟିଏ ! ତାହା ତାର ବାସନା। ପ୍ରତିଟି ଭାବନାରେ ଯାହା ସଂକ୍ରମିତ।

ମଣିଷ ଅସଂଖ୍ୟ ଓ ଅସୀମ ଭାବନାମାଳାର ଏକ କଳାପୂର୍ଣ୍ଣ ମୂର୍ତ୍ତି। ଅଶାନ୍ତ ସମୁଦ୍ର ପରି ମଣିଷ ପ୍ରତି ମୁହୂର୍ତ୍ତରେ ଭାବନାରେ ଗର୍ଜନ କରୁଛି। କାବ୍ୟ ପୁରୁଷ ଏକ ମୁହୂର୍ତ୍ତର ମଣିଷ। ମଣିଷ ଖାଲି ନୁହେଁ, ବରଂ ଜଣେ ପାଶବିକ ଜୈବିକ ସତ୍ତା ସଂପନ୍ନ। 'ସଂଗମ ମୋର ଏକ ସ୍ୱପ୍ନିଳ କର୍ତ୍ତବ୍ୟ/ ଜାଣୁଛି, / +++ ଏକାଏକା ସହବାସେ ପ୍ରେମିକ ମୁଁ / ଆଘ୍ରାଣ କରେ ପିପାସା ଓ ନୀନିଷାର କେବଳ ସୁରଭି।'

ଦ୍ୱିତୀୟ ଏପିସୋଡ଼ ବେଳକୁ କାବ୍ୟପୁରୁଷର 'ମୁଁ'ତ୍ୱ ଏକ ସମାଜ ବିରୋଧୀ ଶବ୍ଦ। ତୃତୀୟ ଏପିସୋଡର ପ୍ରାରମ୍ଭରେ ମଧ୍ୟ ଥିଲା ସେଇ - 'ମୁଁ ତ ଗୋଟେ ସମାଜ ବିରୋଧୀ' ଶବ୍ଦ ବୋଲି। ନିଜେ ଏକ ଦ୍ୱିଧା ! ଏଇ ଦ୍ୱିଧାର ପ୍ରାରମ୍ଭ ଅପ୍ରାପ୍ତିରୁ, ତୃଷ୍ଣାରୁ ଏବଂ ସମାଜରେ ବଢ଼ି ବଢ଼ି ଚାଲିଥିବା ଚରିତ୍ରହୀନତା ନୈତିକ ମଣିଷଟିର ଉପଲବ୍ଧିରୁ। ନୈତିକ ମଣିଷ କବି ବ୍ୟକ୍ତିତ୍ୱ। ଅନ୍ଧକାରର କସ୍ତା ପିନ୍ଧା ଦୁର୍ବଳ ମଣିଷ (ନାରୀ)ଙ୍କୁ ନିଜର ବ୍ୟକ୍ତିଗତ ଜୀବନର ପୃଥିବୀରେ ଭେଟିଚି କାବ୍ୟପୁରୁଷ। ଦେଖିଚି, 'In the room women come and go' ! ସେମାନଙ୍କୁ ଖାଲି ବହିର ମଲାଟ ପରି ଦେଖିନାହିଁ, ବରଂ ଜାଣିଛି ଅନ୍ଧାରର କସ୍ତା ଭିତରେ ସେମାନଙ୍କ ସବୁ ପ୍ରକାର ଦୈହିକ, ଚାରିତ୍ରିକ ମାନସିକ ଅବସ୍ଥାମାନଙ୍କୁ, I have known them all already, known them all / Have known the evenings mornings, afternoons' ବୋଲି ଇଲିୟଟ କରିଛନ୍ତି ସୂଚିତ। 'ଜାଣେ / ଏକାଏକା ସହବାସ ଖୁବ୍ ଭଲ / ଅନେକାନେକ ଅପମିଶ୍ରିତ ସତୀତ୍ୱ ଓ ଭେଜାଲ ଭାନୁମତୀ ଠୁଁ / ଅଧିକ ଖୁବ୍ ଆରାମ ଦାୟକ ମୋର ସ୍ୱପ୍ନର ସଙ୍ଗମ', ସୂର୍ଯ୍ୟମିଶ୍ରଙ୍କ ଥିଲା ଗୁରୁ ଉଚାରଣ। 'ଏକା ଏକା ସହବାସ'ର ନାୟକ 'ମୁଁ'। 'ମୁଁ' ଏକ ସମାଜବିରୋଧୀ ଶବ୍ଦ, ତାଙ୍କ କାବ୍ୟ ଶୀର୍ଷକ ହେତୁ ଭାବୁଥିଲେ ସୂର୍ଯ୍ୟମିଶ୍ର। କିନ୍ତୁ ଇଲିୟଟଙ୍କ ପ୍ରୁଫ୍ରକ୍ ଏକଶତ ବର୍ଷ ତଳେ ଘୋଷଣା କରିଛି ତା' 'ମୁଁ'ର ଅର୍ଥ; 'It is impossible to say just what I mean, 'I grow old' ଅନୁଭୂତିର ଭାରରେ ବୁଢ଼ା ହୋଇ ଯାଉଥିବା ମଣିଷଟି ଆମନ୍ତ୍ରଣ କରିଛି, 'ଚାଲ ଯିବା, ତୁମେ ଓ ମୁଁ। 'Let us go then, you and I / When the evening is spread out against the sky'।

ଅନ୍ଧାରର କସ୍ତା ଭିତରୁ ଇଲିୟଟ ଦେଖି ପାରି ନଥିଲେ ନାରୀଙ୍କ ନୈତିକ-ଅବସ୍ଥା। ତେଣୁ ସିଏ ସନ୍ଧ୍ୟାଟିଏ ବାଛିଥିଲେ। 'ଟ୍ରପିକ୍ ଅଫ୍ କ୍ୟାନସର'ରେ ହେନ୍‌ରି ମିଲରଙ୍କ ଚରିତ୍ର କହୁଛି ସିଏ ଏକ ବାଦୁଡ଼ି। ଜନ୍ ଅପ୍‌ଡାଇକ୍‌ଙ୍କ 'ମିୟୁଜିୟମ୍ ଏଣ୍ଡ ଓ୍ୱମ୍ୟାନ୍'ରେ ଗୋଟିଏ ଗଳ୍ପର ଚରିତ୍ର କହୁଛି ସିଏ ଏକ ପେଚା। ଅର୍ଥାତ୍ ବିଶ୍ୱ ସଂସ୍କୃତିକୁ ଗ୍ରାସିଛି ଭୀଷଣ ଅନ୍ଧକାର। ମାନବ ସଂସ୍କୃତି ଅପସଂସ୍କୃତି ଦ୍ୱାରା ସଂକଟାପନ୍ନ। ତାହା ସିଏ ଦେଖି ପାରୁଛି ! ସଭ୍ୟ ମଣିଷ ଦୋମୁହାଁ ! ତା'ରି ପ୍ରତୀକ ସିଏ ବାଦୁଡ଼ି। ଯିଏକି ମୁଖବାଟେ କରେ ଆହାର ଏବଂ ସେଇ ମୁଖବାଟେ କରେ ମଳ ବର୍ଜନ।

ଅନୈତିକମାନଙ୍କୁ ବା ଦୂଷିତମାନଙ୍କୁ 'Like a patient etherised upon a table' ଉପଲବ୍ଧି କରିଛି ଆଧୁନିକ କାବ୍ୟିକ ଆଙ୍ଗିକରେ ପ୍ରାଚୀନ କାବ୍ୟପୁରୁଷର ମନ। ଦିଆସିଲ୍ କାଠିର ଘର୍ଷଣ ପରି ଛିଣ୍ଡାଳୀ ପ୍ରେମଠୁ ତୁଟାଇ ଦେଇଛି ସବୁ ଅଭିମାନ। ଏବେଠାରୁ ଆରମ୍ଭିଚି ଏକାଏକା ସହବାସ। ଥୁ ଥୁ କରି ଫିଙ୍ଗି ଦେଇଛି ନିଃସଙ୍ଗତା ଜନିତ ଦାରିଦ୍ର୍ୟକୁ। 'ଅପମିଶ୍ରିତ ସତୀତ୍ୱ' ଓ 'ଭେଜାଲ ଭାନୁମତୀ' ବିମ୍ବ ଦୁଇଟି ସ୍ୱତଃ ସ୍ମୃତିକୁ ଆଣେ ଇଲିୟଟଙ୍କ ନିମ୍ନ ପଂକ୍ତି, 'My house is a decayed house/ And the Jew squats on the window sill, the owner...' ବଡ଼ ରକ୍ଷଣଶୀଳ ମଣିଷର ମନ। ଅଳଂଧୁର କମକୁଟରେ ଆଚ୍ଛନ୍ନ। ଶରୀର ତତ୍ତ୍ୱବିଦ୍ କହିଲେଣି କୁମାରୀଛଦ ବା ସତୀଛଦ ଏକ କଳ୍ପନା। ସତୀତ୍ୱ ଏକ ମାନସିକ ନିଷ୍ଠା।

'ନିୟୁଲମ୍ବଉ ଲେଟର'ରେ ଆଡେନ୍ ଲେଖିଛନ୍ତି, 'Time makes old formulas look strange / Our properties and symbols changes'। ସମୟ ଅନୁଯାୟୀ ପୁରୁଣା ଦୃଷ୍ଟି ବିସ୍ମିତ କରାଏ ଏବଂ ସମୟ ସବୁ କିଛିକୁ ବଦଳାଇ ଥାଏ। କବି ବ୍ୟକ୍ତିତ୍ୱ ହୀରାପରି ଚକ୍‌ମକ ଓ ନିଷ୍କଳଙ୍କିତ। କବି ସମାଜ ସଂସ୍କାରକ। ଏଇ ମାନସିକତା ସୂର୍ଯ୍ୟମିଶ୍ରଙ୍କ କବି ପ୍ରାଣରେ ଜୀବନ୍ତ ଏବଂ ମଧୁକୈଟଭପରି ଦୂଷିତ ସମାଜ ସହିତ ସଂଘର୍ଷରତ। କବିତା ତ ନୁହେଁ ଅସ୍ତ୍ର। କବି ଅନନ୍ୟୋପାୟ କରାଇଛନ୍ତି ତାଙ୍କ 'ମୁଁ'କୁ। ଯେଣୁ- 'ମୁଁ ସଦର୍ପେ ଶାୟିତ ଏକାଏକା ସହବାସ ଖୁବ୍ ଭଲ / +++ ଏବେ ଠାରୁ ଆରମ୍ଭିଚି।' ନିଜଠୁ ନିଜର ପ୍ରତିଶୋଧ ? 'Odyssey' ରେ ହୋମର ଲେଖିଛନ୍ତି: Mad at hand as her campanion a ministrel Agamemnon left attending her charged with her care, when he took ship for troy' (Odeyssey, 3, 265)

ଆଗମେନନ୍ ଟ୍ରୟ ଧ୍ୱଂସ ପାଇଁ ଗଲାବେଳେ ତାଙ୍କ ସୁନ୍ଦରୀ ଯୁବା ପତ୍ନୀକୁ କବି Clytemnestraଙ୍କ ଜିମାରେ ଛାଡ଼ି ଦେଇ ଯାଇଥିଲେ। ରାମାୟଣରେ ସୀତାଙ୍କୁ

କବି ବାଲ୍ମୀକି ଆଶ୍ରମରେ ମହାରାଜା ରାମଚନ୍ଦ୍ର ଛାଡି ଦେଇଥିଲେ। ଏଇଥିରୁ କବି ଚରିତ୍ରର ଆଦର୍ଶ- ଏବଂ କବି ବ୍ୟକ୍ତିତ୍ୱର ଉଜ୍ଜ୍ୱଳତା କରିହେବ ଉପଲବ୍ଧି।

କବି ଚେତନା ଆଦର୍ଶବାଦୀ। କିନ୍ତୁ କବିର ସମୟ ଅନାଦର୍ଶବାଦୀ। ପ୍ରଦୂଷିତ ତା' ସମାଜ। ନିରାମୟକାମୀ ଅନନ୍ୟୋପାୟ ମଣିଷ। ତେଣୁ ସିଏ ବରି ନେଉଛି ଏକା ଏକା ସହବାସ। ଫୁଟନ୍ତା ତପ୍ତ କ୍ଷୀର ତ ଢାଙ୍କୁଣି ଟପି ଉତୁରିବ! ତାକୁ ଉତୁରାଇ ଦେଇଛି କାବ୍ୟଚେତନା। ଲେଖିଛନ୍ତି ମାଇକେଲ୍ ରବର୍ଟସ।

'His love are uncritical and deep/His anger innocent and sudden like a minnow." (The child / Michael Roberts)

ହୃଦୟପରି ସୂର୍ଯ୍ୟମିଶ୍ରଙ୍କ ତୃଷ୍ଣା ସରଳ। ଜଣେ ସୈନିକର ଆଚରଣପରି ସୂର୍ଯ୍ୟ ମିଶ୍ରଙ୍କ କାବ୍ୟାଙ୍ଗିକ ସଂଯମପୂର୍ଣ୍ଣ। ଗୋଟିଏ ପୁରୁଣା ଛବିବହି ପରି ତାଙ୍କ କାବ୍ୟାତ୍ମିକ ପବିତ୍ର ଓ ଚିତ୍ରିତ।

'Dialogue'.ରେ ଲେଖିଛନ୍ତି ଇଏଟସ୍, 'A living man is blind' । ମଣିଷ ଅନ୍ଧ। ପ୍ରକୃତରେ ସାମାଜିକ ମଣିଷମାନେ ଅନ୍ଧ ଅଟନ୍ତି। ସାମାଜିକ ନିୟମ ସେମାନଙ୍କ ଚକ୍ଷୁରେ ବାନ୍ଧି ଦେଇଥାଏ ଅନ୍ଧ ପୁଟୁଳି। ଦୀର୍ଘାୟୁ ଓ ଶୃଙ୍ଖଳିତ ସମାଜ ପାଇଁ ମଣିଷ ହୁଏ ବଳି। କବି ଜଣେ ଧର୍ମପଦ। ସାମାଜିକ ବଳି। କୈଶୋର ସରି ଆସିଥାଏ ଯୌବନ ଡାଳ ମେଲୁଥାଏ। ଦେହର ଦେଉଳରେ ବାସନାର ଧୂପ ଓ କାମନା ହାତ ଘଣ୍ଟିର ଟିଣ୍‌ଟିଣ୍ ଶବ୍ଦ ମଣିଷକୁ କରାଉଥାଏ ଉତଲା, କରାଉ ଥାଏ ଅସ୍ତବ୍ୟସ୍ତ। ଦେହର ମହୁକୁ ଚୋଷିବାକୁ ଚାହୁଁ ଥାଏ ମନର ଭୃଙ୍ଗ। ମାତ୍ର ତା' ଭୋଗ ପାଇଁ ଦେହ କାହିଁ? ସାମାଜିକ ସ୍ୱୀକୃତି ବିନା ଦେହ ଭୋଗ ପାପ। ସେଥିପାଇଁ ସାମାଜିକ ଅନୁକୂଳ ବ୍ୟବସ୍ଥାଟିଏ ଆସେ। ସେ ଅବସ୍ଥା ଆସିବା ପୂର୍ବରୁ ଅନୁଭୂତିର ଦୃଷ୍ଟିରେ ଯଦି ପୋକଲଗା ପୁଷ୍ପମାନ ବାରମ୍ବାର ସାମ୍ନାକୁ ଆସେ, ଭାଙ୍ଗିପଡେ ଭୋଗ ଈପ୍ସିତ ମନ। ଦେହର ଦାବୀ ପାଖରେ ହାର ମାନେ ଦୃଷ୍ଟି। ଅନୁଭବର ନୂଆ ଘଟଣାଟିଏ ବା ଦୁର୍ଘଟଣାଟିଏ ଯୌବନ ପୀଡ଼ିତ ଦେହକୁ ଦିଏ ଶାନ୍ତି। ଉଦ୍ଦେଶ୍ୟ ମୂଳକ ସେହି ବ୍ୟକ୍ତିଗତ ଅନୁଭୂତି ସୂର୍ଯ୍ୟମିଶ୍ରଙ୍କ ହୋଇଛି ବିଶ୍ୱଗତ। ଯାହାକୁ ଇଲିୟଟ 'କବିତା' ବୋଲି କରିଛନ୍ତି ନାମିତ, 'Of private experience at its greatest intensity/Becoming universal, which call 'Poetry', / May be affrmed in verse' (Complete poems and plays, page 202)

ଭାରତୀୟ ସଂସ୍କୃତିରେ ଯାହା ଚାରିତ୍ରିକ ସ୍ଖଳନ ୟୁରୋପୀୟ ବା ପାଶ୍ଚାତ୍ୟ ସଂସ୍କୃତିରେ ତାହା ସ୍ୱାଭାବିକ ଜୀବନ। ଏହି ପ୍ରସଙ୍ଗରେ ସ୍ମରଣ କରାଯାଇପାରେ

ଏଜ୍‌ରା ପାଉଣ୍ଡଙ୍କ 'ଦି ଥ୍ରୀ ପୋଏଟସ୍'ର ପଂକ୍ତି କେତୋଟି -

'Candidia has taken a new lover
And three poets are gone in to morning.
The first has written a long elegy to 'Chloris'
To 'Chloris cheste and cold', his only chloris'
The second has written a sonnet
upon the mutability of woman.
And the third writes an epigram to Candidia."

ଚରିତ୍ର କ୍ୟାଣ୍ଡିଡିଆ ଗ୍ରହଣ କରିଛି ଜଣେ ନୂଆ ପ୍ରେମିକ। ସକାଳେ ତା' ସହିତ ସୁଖର ଖେଳ ଖେଳିଥିଲେ ତିନୋଟି ପୁରୁଷ ଏବଂ ସେ ତିନିହେଁ ଯାକ କବି। ପ୍ରଥମ ଜଣକ ଲେଖିଚି ଏକ ଦୀର୍ଘ ବିଳାପ। କ୍ଲୋରିସ୍ ପାଇଁ ଓ ତା' ସତୀତ୍ୱ ଏବଂ ଶୀଥିଳତାର କରିଛି ପ୍ରଶଂସା। ଦ୍ୱିତୀୟ ଜଣକ ଲେଖିଛି ସନେଟ। କେମିତି ପାଗପରି ବା ପୋଷାକ ପରି ବଦଳିଯାଏ ନାରୀ, ତା'ରି ଉପରେ ଏବଂ ତୃତୀୟ କବି ରଚନା କରିଛି ଏକ 'ଇପିଗ୍ରାମ୍' କ୍ୟାଣ୍ଡିଡ଼ିଆ ପାଇଁ। ଏକ ପରିଷ୍କାର ରସମୟ କବିତା। ଏହାର ଥିମ୍‌ରେ ପାଶ୍ଚାତ୍ୟ ସଂସ୍କୃତିର ଶୁଦ୍ଧମୂର୍ତ୍ତି କରି ହୁଏ ଉପଲବ୍ଧି। ଏପରି ସଂସ୍କୃତି ଆର୍ଯ୍ୟାବର୍ତ୍ତରେ ଅନାଦୃତ। ଅନାର୍ଯ୍ୟ ଜୀବନ ବିମ୍ବ ଏହା। 'ସଂସ୍କୃତ' ଶବ୍ଦରୁ 'ସଂସ୍କୃତି'ର ଜନ୍ମ। ଯାହା ସଂସ୍କୃତ ତାହା ସଂସ୍କୃତି। 'ସଂସ୍କୃତି' ଅର୍ଥ ଶୁଦ୍ଧ, ବିମଳ ବା ଅନୁପମ।

ଫରାସୀ ଲେଖକ ରେମିଂଟନ କହୁଥିଲେ, 'ରାଇଟିଂ ଇଜ୍ ଏ ସାକ୍ରିଡ଼ ଥିଙ୍ଗ୍'। ଲେଖିବା ଏକ ପୁଣ୍ୟ କାମ। ଲେଖିବା ଯଦି ହୁଏ ଏକ ପବିତ୍ର କର୍ମ, କବିତା ରଚନା ଅଟେ ପବିତ୍ରତମ କର୍ମ। ବୈଦିକ ସଂସ୍କୃତିରେ କବି ଥିଲେ ଋଷି। ପୁରାଣ ଯୁଗରେ ପୁରାଣ ପ୍ରବକ୍ତାମାନେ ଜଣେ ଜଣେ ମୁନି। କାବ୍ୟ ଯୁଗରେ ସେମାନେ ଜଣେ ଜଣେ କବି। ଯୁଗ ବଦଳୁଛି। ଯୁଗ ରୁଚି ବଦଳୁଛି। ଶବ୍ଦ ସାଧନାର ଗୁରୁ ଭାର ବହନ କରିବାକୁ ସମକାଳୀନ କବି କୁଣ୍ଠିତ। ତେଣୁ ଏମାନେ ରଚନା କରୁଛନ୍ତି କ୍ଷୁଦ୍ର କବିତା। କ୍ଷୁଦ୍ର ପରିସରର ଅସୀମକୁ ସାଇତିବାକୁ ଏମାନେ ସହାୟତା ଗ୍ରହଣ କରିଛନ୍ତି ଟେକ୍‌ନୋଲୋଜୀର। ଆଜିର କବିତା ରଚନା ଏକ ଟେକ୍‌ନିକ୍। ସାହିତ୍ୟ ଆଉ ଆର୍ଟ ହୋଇ ନାହିଁ। ଏହା ଏବେ ବୈଷୟିକ। ବୈଷୟିକ ସଂସ୍କୃତି ବାସନା ମଧ୍ୟ ଯାନ୍ତ୍ରିକ। କୃତ୍ରିମ ପୂରଣ କରୁଛି ଅଭାବ। ସାଥୀଟିଏ ପ୍ରାପ୍ତି ନ ହେଲେ ଏକାଏକା ସଂପନ୍ନ ହୋଇ ପାରୁଛି ସହବାସ। ସୂର୍ଯ୍ୟମିଶ୍ରଙ୍କ 'ଏକା ଏକା ସହବାସ' କରିଛି ତାହାରି ପ୍ରତିନିଧିତ୍ୱ।



# ଶବ୍ଦର ନଈ ଓ ଅବବୋଧର ଆତ୍ମା

ଇଲିୟଟ ଲେଖିଛନ୍ତି 'To do the useful thing, to say the courageous thing, to contemplate the beautiful thing: that is enough for one man's life" ଜଣେ ବ୍ୟକ୍ତି ଜୀବନର ସାର୍ଥକତା ତହିଁରେ ରହିଛି।

ମାନବ ଆବଶ୍ୟକ କାର୍ଯ୍ୟ କରିବ, ଉତ୍ସାହପ୍ରଦ କଥା କହିବ, ସୁନ୍ଦର ଜିନିଷମାନ ଚିନ୍ତାକରିବ, ଏହାଠୁ ଶ୍ରେଷ୍ଠ ସମୟୋଚିତ ପାର୍ଥିବ ଅବଦାନ ତାହାଠୁ ଅନ୍ୟ କଣ ସମ୍ଭବ? ତାଙ୍କର ବାକ୍ୟ, 'What poetry is, and does, and is for', ଏହାରି ଉତ୍ତର। ତିନୋଟି ପ୍ରଶ୍ନର ଗୋଟିଏ ସାମାଜିକ ସମାଧାନ ତାଙ୍କ ବାକ୍ୟରୁ ହୁଏ ପ୍ରତୀୟମାନ।

ପୁନଶ୍ଚ ଯେଉଁ ବ୍ୟକ୍ତି ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ସାହିତ୍ୟ ସଂପଦର ନିଏନାହିଁ ଯତ୍ନ, ସିଏ ହୋଇଥାଏ ଅସଭ୍ୟ। ସାହିତ୍ୟ ସୃଷ୍ଟି ଯେତେବେଳେ ହୋଇଯାଏ ସ୍ଥିର, ମାନବର ଭାବନା ଓ ଚେତନା ପାଲଟି ଯାଇଥାଏ ଜଡ଼। ଲୋକଙ୍କ ବ୍ୟବହୃତ କଥା ଭାଷାରୁ ସାହିତ୍ୟ ପ୍ରାପ୍ତ ହୋଇଥାଏ ପ୍ରାଣ ଏବଂ ସାହିତ୍ୟ ଦ୍ୱାରା ହିଁ ବ୍ୟବହୃତ ଭାଷା ହୋଇଥାଏ ଏବଂ ରହିଥାଏ ଜୀବନ୍ତ। ଚେତନାର ଶୀର୍ଷତମ ବିନ୍ଦୁର ପ୍ରତିନିଧିତ୍ୱ କରେ କବିତା। କବିତାର ଶ୍ରେଷ୍ଠତମ ଶକ୍ତି ଚେତନାକୁ କରିଥାଏ ଉଲ୍ଲସିତ। ଏହି ଦୃଷ୍ଟିରୁ ଚିନ୍ତା କରିଥିଲେ ଇଲିୟଟ୍, କବିତା 'what it does or ought to do' କବିତାଟିଏ ପଢ଼ିଲେ ବା ଉଚ୍ଚାରିତ କଲେ କିଛି ଚେତନା ବା ଅବଚେତନାର ହୁଏ (assumption) ଧାରଣା। କିଛି ଅବବୋଧ, କିଛି ସନ୍ତୁଷ୍ଟ ବା ଅସନ୍ତୋଷକୁ କରିଥାଏ ପ୍ରଶମିତ। ବିସ୍ମୟକର ସୁଖର ଠିକଣାଟିଏ ଚେତନାରେ ହୋଇଥାଏ ସ୍ୱୀକୃତ। ଖୁବ୍ ବେଶୀ ଯଥାଯଥ ଭାବେ ଉପଲବ୍ଧି କରି ହୋଇଯାଏ ମାନବ ଚେତନାର ଭଗ୍ନାଂଶ। କବିତା ଏକ ସମାଧାନ ନୁହେଁ, କବିତା ଏକ ସମୀକରଣ। କବିତା ଏକ ସୁନ୍ଦରତମ ଚିନ୍ମୟ ଚେତନାର ଗଣିତ। କବିତା କଳାତ୍ମକ ସୌନ୍ଦର୍ଯ୍ୟ। ଭାବନା, କଳ୍ପନା ଓ ବିଚାରର ବାସ୍ନା ଯଥାଯଥ ଭାବେ ଶବ୍ଦକୁ ସଜାଇ ନିଜ ମୁହଁମାନ ମୁକୁରରେ ଦେଖାଇ ହେବା। ପୃଥକ ଅବସ୍ଥାରୁ ବିଶ୍ୱାସର ମୁକ୍ତ ହେବା, ମୁକ୍ତିର ତୃପ୍ତିକୁ ପ୍ରାଣକୁ ଅନୁଭବ କରାଇବା ଅଟେ କବିତା। କବିତା ଗୋଟେ ଝରଣା, ଦୁର୍ବୋଧ୍ୟ ଚେତନାର ଗିରିଚୂଡ଼ା ଚିରି ଝରି ଆସିଥିବା କିଛି ଅଚିନ୍ତ୍ୟ ଶୋଷର ଶବ୍ଦରୂପ। କବିତା ଦୃଶ୍ୟ ଓ ଅଦୃଶ୍ୟର ଶବ୍ଦମୟ ଚିତ୍ର।

ସମୟର ପୃଷ୍ଠଭୂମିରେ ପଲ୍ଲବିତ ହୋଇଥାଏ କବିତା ଲତା । ବିଂଶ ଶତକ ଗୋଟିଏ ଆଶାଭଗ୍ନ ଅବିଶ୍ୱସ୍ତ ଶତାବ୍ଦୀର ନାମ । ହତାଶାର କୁଠାର ଛେଦିଥାଏ ବିଶ୍ୱାସର ଡାଳ । ଭୟ, ହିଂସା, ବେଇମାନୀ, ଚୋରପ୍ରଭୃତି, ପରଶ୍ରୀକାତରତା ଓ ଅସଭ୍ୟ ସ୍ୱଭାବ ମଣିଷର ପ୍ରିୟ ଭାବ ହୋଇଛି ତା ସାଙ୍ଗ । ମାନବିକତାକୁ ପଛରୁ ଚୋଟ ମାରୁଛି ଶତାବ୍ଦୀର ସୁଖ ତୃଷିତ ଅର୍ଥଖୋରୀ ପ୍ରବୃତ୍ତି । ତ୍ୟାଗ ଓ ସହନଶୀଳତା ଲୋଭର ଯୂପରେ ବଳି ଚଢ଼ିଛି । କେଉଁଠି ଭାବ ନାହିଁ କି ଠାବ ନାହିଁ, ଚାରିଆଡ଼ ଅଭାବ । ଅଭାବର ଜତୁଗୃହରୁ ତାରିବାକୁ ମାନବ ପାଖରେ ନାହାନ୍ତି କେହି ଶ୍ରୀକୃଷ୍ଣ ବା ବିଦୁର । ସୀମାହୀନ ଅସହାୟତା ମଝିରେ ଛିଡା ହୋଇଛି ଅନନ୍ୟୋପାୟ ମାନବ । ତା ସ୍ଥିତି ଓ ଶୂନ୍ୟତାର ବ୍ୟାଖ୍ୟା ଯେତେ ଯାହା କଲେ ବି ସମସ୍ୟାର ଯୂପରୁ ତା ଅସ୍ତିତ୍ୱ କି ମୁକୁଳି ପାରୁଛି ?

ସେଇ ସ୍ଥିତିଟିକୁ ଉଦ୍‌ଭଟ ବା ଅବସର୍ଡ ବୋଲି ଦାର୍ଶନିକ ସାର୍‌ତ୍ରେ ଚିହ୍ନାଇ ଦେଇଛନ୍ତି । ଗାଧୁଆ କୁଣ୍ଡରୁ ମାଛ ନ ମିଳିଲେ ବି ବ୍ୟକ୍ତି ଚରିତ୍ର ତହିଁରେ ଖେଳାଇବ ବନ୍‌ଶୀ । ପକାଇବ ଥୋପ । କାଳେ ପଟେ ମାଛ କେଉଁଠୁ ଆସି ଲାଗିଯିବ । ଏଇ ଅନିଶ୍ଚିତ ଓ ଅନନ୍ୟୋପାୟ ଅବସ୍ଥା ଦେଇଥିଲା ଗତ ଶତକ । କବି ଆତ୍ମାରେ କଣ୍ଟା ପିଟିଥିଲା ସେଇ ଅବସ୍ଥାର ବଡ଼ପଣ୍ଡା । ଯେଉଁ ରକ୍ତ ଝରିଥିଲା ତାହା ରୂପାନ୍ତରିତ ହୋଇ ହୋଇଥିଲା ଧଳାଧଳା କାଗଜର ଫର୍ଦ୍ଦରେ ନୀଳନୀଳ କବିତା । କବିତା ଉଚ୍ଚାରିତ କରିଥିଲା ସତ୍ୟକୁ, କବିତା ଉଚ୍ଚାରିତ କରିଥିଲା ଅସତ୍ୟକୁ, କବିତା ଉଚ୍ଚାରିତ କରିଥିଲା ଅନୁଭବକୁ, କବିତା ଉଚ୍ଚାରିତ କରିଥିଲା ଅତୀନ୍ଦ୍ରିୟକୁ । ସମୟର ଚୁଲିରେ କବିତା ଜଳିଥିଲା ଓ ରାନ୍ଧିଥିଲା ଜୀବନକୁ । ସେଇ ଦରସିଝା ଜୀବନ ଥିଲା ଅଲଣା ! ସେଇ ଦରସିଝା ଜୀବନ ଥିଲା ସୁଧୁ ପିତା । ତାହାରି ପ୍ରତିଫଳନ ତଥା ତାହାରି ଉପସ୍ଥାପନ କରିଥିଲା କବିତା ।

'ଏବଂ ପୁନରପି' କାବ୍ୟଗ୍ରନ୍ଥର ଉନ୍ମେଷରେ ଥିଲା, 'ଆଉ ଥରେ ଯଦି ମତେ ଦିଅ ଜୀବନ ମଦିରା/ପ୍ରଭୋ, ମତେ କର ଗଛଟିଏ ତମ ପୃଥିବୀର ।' ଦୁର୍ଲ୍ଲଭ ମାନବ ଜୀବନ ପ୍ରତି ଆଉ ପ୍ରଲୋଭନ ନାହିଁ, ଏବେ ରହିଛି ସାଂଘାତିକ ବିତୃଷ୍ଣା । ଦେହୀ ପାଇଁ ରକ୍ତମାଂସର ଦେହ ଆଉ ମାଗୁ ନାହାନ୍ତି କବି । ସବୁଜ ଗଛ ଜନ୍ମ ତାଙ୍କ ଅଭୀପ୍ସାରେ ଉଦ୍‌ଜୀବନ୍ତ ହୋଇଛି । Henry Treece ତାଙ୍କ ପୁସ୍ତକ 'ଦି ହଣ୍ଟେଡ୍ ଗାର୍ଡେନ'ରେ ଗୋଟିଏ କବିତାରେ ଲେଖିଛନ୍ତି 'It is my destine that tree, who is my god / should raise his arms....'

ଏହା ପୂର୍ବରୁ ତାଙ୍କର ଅନ୍ୟ ଦୁଇଟି ପଂକ୍ତି : 'The small bird whistled in my tree/ knows no black hate or enemy'। ପକ୍ଷୀଟି ଗୋଟିଏ ପାରମ୍ପରିକ ପ୍ରତୀକ। ଏହା ମାନବର ପ୍ରାଣ ପକ୍ଷୀ। ସିଏ ଟ୍ରେଡ୍‌ଟାୱାର୍ ପତନ ସମ୍ବନ୍ଧରେ ଅଜ୍ଞ ବା ଅସଚେତନ। ପରିବ୍ୟାପ୍ତ ଅସଭ୍ୟତା ଓ ଆର୍ଥିକ ସଂକଟର ଅନ୍ଧକାର ସମ୍ବନ୍ଧରେ ନଥାଏ ତାର ଧାରଣା। ସିଏ କିନ୍ତୁ ଶୁଦ୍ଧ ଭାବେ ଲକ୍ଷ୍ୟ ରଖିଥାଏ କଢ଼ମାନଙ୍କ ମୁକୁଳିତ ହେବା ସ୍ଥିତିକୁ। ରୂପା ନଦୀର ବହନ୍ତା ଗତିକୁ। ସକାଳର ଲୋହିତ ସୂର୍ଯ୍ୟଙ୍କ ଫେରନ୍ତା ପଥକୁ ଏବଂ ଜହ୍ନ ଆଲୁଅରେ ପଇତାପରି ଲମ୍ବିଥିବା ଗାଁକୁ ଲେଉଟିଥିବା ହିଡ଼ ରାସ୍ତାକୁ। ହିଡର କଅଁଳ ଘାସ ଉପରେ ଅରୁଆ ଖୁଦପରି ବିଞ୍ଚି ହୋଇଯାଉଥିବା ଶିଶିରମାନଙ୍କୁ।

କବିତା କବିଙ୍କ ଆତ୍ମକଥା ଯେମିତି! ହେନ୍‌ରୀ ଟ୍ରୀସ୍ ନିଜ ସ୍ଥିତିକୁ ଦର୍ଶାଇଛନ୍ତି :have moved far from the image of another / who once walked with me having one shadow' ଏବେ ଛାଇ କବଳରୁ ସିଏ ମୁକ୍ତ ? ବରଂ ଜୀବନ ତାଙ୍କର ଜୀବନ ନୁହେଁ, ଏବେ ପୁନର୍ଜୀବନ। ବଞ୍ଚିବା ମୃତ ବା ଅତୀତ ଭିତରେ ସଂରକ୍ଷିତ। ଏବେ ସିଏ ଯେଉଁ ଜୀବନଟି ଜୀଉଛନ୍ତି ତାହା ତାଙ୍କର ପୁନର୍ଜୀବନ। ଏଇଥିପାଇଁ ବୋଧେ ସ୍ପେଣ୍ଡର୍ 'ସ୍ପିରିଚୁଆଲ୍ ଏକ୍ସପ୍ଲୋରେସନ୍' କବିତାରେ ଉଚ୍ଚାରଣ କରିଥିଲେ 'Our selves, our breath, our death, our love' । 'ପ୍ରେୟାର ବିଫୋର ବାର୍ଥ' କବିତାରେ Mac Neice ସୂଚାଇ ଥିଲେ, 'I am not yet born console me.'।

'କଫିନ୍ ଭିତରୁ କହୁଚି : ମୁଁ ଦିନେ / ବଞ୍ଚିଥିଲି / ମରିଗଲି।/ ମୋ ଫୁଲଟି ମରିବା ଆଗରୁ/ ମୁଁ / ସରିଗଲି।/କିନ୍ତୁ / ମୋ କଥାଟି / ସରିଲାନି। ('ଏପିଟାଫ୍'/ 'ଏବଂ ପୁନରପି' / ନକୁଳ ଚନ୍ଦ୍ର ସାହୁ)। ହେନ୍‌ରୀଙ୍କ ପକ୍ଷୀଟି ସ୍ଥାନ ପରିବର୍ତ୍ତନ କରିଚି ଏକ ଅଲଗା ପରିସରକୁ ତାଙ୍କ 'Epilogue କବିତାଟିରେ। ଠିକ୍ ସେହିପରି 'I a hollowed capacious'। 'I' (ଆଇ) ଦିନେ ବଞ୍ଚିଥିଲା, ମରିଗଲା। ଏବେ ସିଏ ପୁନର୍ଜାତ, କଫିନ୍ ଭିତରୁ କହୁଚି ତା ଅସରା କଥା। 'ବୁଟସ୍ ଅର୍ଚାଡ' ଶୀର୍ଷକ କବିତା ଗ୍ରନ୍ଥରେ Roy Fuller ଲେଖିଛନ୍ତି, ମୁଁ ଜାଣେ, ଜୀବନ ସାଂଘାତିକ। ନିରୀହ ଦୃଶ୍ୟ କିନ୍ତୁ ଚାରିଆଡେ କାନ୍ଥ। ଆଲୋକ ରହିଛି କିନ୍ତୁ ଘେରିଚି ପର୍ବତ। ବନ୍ଦୀମଣିଷ ! ଅହରହ ଅଲ୍‌ସର ପୀଡ଼ିତ ! ନିଦ୍ରାହୀନତା (insomnia), କବିତା, ଅଫିସ୍ ବ୍ୟଚ୍ ଓ ତା ଅସ୍ୱାଦପୂର୍ଣ୍ଣ ଉତ୍ତେଜନା ! ତାରି ଭିତରୁ ଗୋଟିଏ ନୂଆ ପରିସରକୁ ବିଶ୍ରାମପୂର୍ଣ୍ଣ ଦୃଷ୍ଟି ଖୋଜୁଛି। ତାହା ଗୋଟିଏ ଅସ୍ତ୍ରୋପଚାର କିମ୍ବା ଏକ ସ୍ୱପ୍ନ।

ପ୍ରକୃତରେ ତାହା ତାର ସ୍ୱପ୍ନ ନୁହେଁ, ସର୍ଜରୀ ପରର ପୁନର୍ଜୀବନ। 'ଇଲିମେଣ୍ଟାରି ଫିଲୋସଫି, କବିତାରେ Fuller ଲେଖିଛନ୍ତି : I go back to the flowers / The house's love and hours, / But still I see the spring / That buds with final wars'। ସିଏ ମହାଯୁଦ୍ଧକାଳର କବି। ବସନ୍ତକୁ ଦେଖୁଛନ୍ତି, ଦେଖୁଛନ୍ତି ବସନ୍ତର ମୁକୁଳିତ କଢ଼କୁ ଏବଂ କଢ଼ ସହିତ ଭୟାନକ ଯୁଦ୍ଧକୁ ବି! ଯାହାର ଅନ୍ତହୋଇ ଆସୁଛି। ରାତ୍ରି ଶେଷର ଅନ୍ଧକାର ପରି କଢ଼ର କମ୍ର ସୌନ୍ଦର୍ଯ୍ୟ ସହିତ ତାହା ରହିଛି।

ମହୁମାଛି କେବଳ ପୁଷ୍ପରେ ବସେ, ପୁଷ୍ପରୁ ମଧୁ ଶୋଷେ। କିନ୍ତୁ ମାଛି ସବୁଠି। ଠିକ୍ ସେମିତି କବିଙ୍କ ଦୃଷ୍ଟି କେବଳ ସୌନ୍ଦର୍ଯ୍ୟଠି ନୁହେଁ, ଘୃଣାଠି ବି, ବର୍ଜ୍ୟଠି ବି! ସବୁଠି ଘୁରି ବୁଲୁଥାଏ। କୁତ୍ସିତକୁ, କୁବ୍‌ଜାକୁ, କବିତାର ସୌନ୍ଦର୍ଯ୍ୟରେ କରି ଦେଇଥାଏ କମନୀୟ। କବିର କଲମରୁ ବି ସିଏ ପ୍ରାପ୍ତ ହୁଏ ବଞ୍ଚିବାର ନୂତନ ରାଗିଣୀ। ଅଶ୍ରୁ ଭିତରେ ପ୍ରାପ୍ତ ହୁଏ ବଞ୍ଚିବାର ବେପଥୁ। ତା ଫୁଲଟି ସହଜରେ ମଉଳେ ନାହିଁ। ଯାହା ମଉଳେ ତାହା ତାର ଅତୀତ ଓ ସ୍ମୃତି, ତାହା କବିତା ହୋଇ ପୁନଃଫୁଟି ଉଠିଥାଏ। ହୋଇଥାଏ ପୁନଃଜୀବିତ।

ଇଲିୟଟ ଲେଖିଛନ୍ତି, କବି ସୌନ୍ଦର୍ଯ୍ୟପୂର୍ଣ୍ଣ ଗୋଟିଏ ଜଗତ ସହିତ ତାହାଙ୍କ କାରବାର ଜାରିରଖିବେ, ଏହା କଦାପି ନୁହେଁ। ଫୁଲରଙ୍କ ପରି ଫୁଲ ଭିତରକୁ, ମିଳନକୁ ଓ ମିଳନ-ବେଳାକୁ ଖାଲି ଭେଟିବେ, ଏହା କଦାପି ନୁହେଁ। 'I know, by beauty. But the essential advantage for a poet is not to have a beautiful world with which to deal : it is to be able to see beneath both beauty and ugliness; to see the boredom, and the horror, and the glory.' (The use of poetry and the use of criticism, page 106)। କବି ଯେ ନ ଦେଖିବେ କ'ଣ, ତାଙ୍କ ଦୃଷ୍ଟି (vision) ଆକାଶପରି ଅସୀମ। ସମସ୍ତ ବସ୍ତୁ, ଭାବ ଓ ଜଗତ ତହିଁରେ ହୋଇଥାଏ ନୂତନ। କବିତା ସେହି ନବୀନର ଚିତ୍ର। ସମୟର ସ୍ରୋତରେ ଭାସମାନ କବିତା ତାହାରି ଆଙ୍ଗିକର ବହିତ୍ର। ସମୟ ଫେରିଥାଏ ପ୍ରେମିକାଟିଏପରି ତା'ର ନିଜ ସଂସାରକୁ,ପାଦଚିହ୍ନପରି କବିତା କିନ୍ତୁ ପଛରେ ରହିଯାଇଥାଏ ସତେଜ। କବିତା ଶବ୍ଦର ଗୋଲାପ। ସମୟର ସୁବାସିତ ଆବେଗକୁ ଶବ୍ଦର ବୋତଲରେ ଅତରପରି ରଖିଥାଏ ସଂଜୀବିତ।

ଅଡେନ୍ ତାଙ୍କ 'ଆନାଦର ଟାଇମ୍' କବିତା ଗ୍ରନ୍ଥରେ ଲେଖିଛନ୍ତି, 'ମାଇଁଲଭ୍, ତୁମର ନିଦ୍ରାଗତ ମୁଣ୍ଡଟି ମୋ ବିଶ୍ୱାସହୀନ ବାହୁ ଉପରେ ଥାପିଦିଅ। ସମୟ ଓ ଜ୍ୱର

ଜାଳିଦିଏ ବ୍ୟକ୍ତିଗତ ସୌନ୍ଦର୍ଯ୍ୟର ଆଙ୍ଗିକ। ଭାବ ବିଦ୍ରୋହ ପିଲାଏ ଏବଂ ସମାଧି ପ୍ରମାଣିତ କରେ ଜୀବନର ପ୍ରତୀକ 'ପିଲା' ଅସ୍ଥାୟୀ।.... 'Let the living creature lie. / Mortal, guilty, but to me / The entirely beautiful'. । ଅଳୀକ ଭିତରେ ସୌନ୍ଦର୍ଯ୍ୟର ଗୋଲାପ ! ପଙ୍କ ଭିତରେ ପଦ୍ମର ସଂଚରି ଯାଉଥିବା ସୁବାସ ରାଜହଂସପରି ପହଁରି ଆସିଛି କାବ୍ୟିକ ସଂଜୀବିତ ସୃଜନ ସବୁଜ ଦୃଷ୍ଟିର ଅସୀମ ପରିସରକୁ। 'ଦି ୱେ ସାଇଡ୍ ଷ୍ଟେସନ୍' କବିତାଟିରେ Edwin Muir ସ୍ଥିତିଟିକୁ ବର୍ଣ୍ଣନା କରିଛନ୍ତି, 'An inaccesible land' ବୋଲି। ପୁନଶ୍ଚ ସିଏ ଗୋଟିଏ ଚିତ୍ରକଳ୍ପ ପ୍ରୟୋଗ କରିଛନ୍ତି, 'Dark silver' ପ୍ରତ୍ୟେକ ଡାଳରେ, ତଳେ ତାର ପ୍ରବାହିତ ହେଉଛି ନିଃସଙ୍ଗତାର ସ୍ରୋତ। ଠିକ୍ ସେମିତି: କବର / ଚନ୍ଦନ କାଠର / ଶବାଧାର/ ତା ଭିତରେ / ସବୁଦିନ ପାଇଁ ଓଠରେ ଥୁକୁଲ ପକାଇଥିବା / ଶୁଆଟିଏ / ମୃତ ସ୍ୱପ୍ନ ମୋର। (ଏବଂ ପୁନରପି, ପୃଷ୍ଠା - ୭)

କବିତା ଯେମିତି ପ୍ରେମିକାର ଚିଠି! ଯେତେ ଥର ପଢ଼ିଲେ ବି ପରିପୂର୍ଣ୍ଣ ହୁଏ ନାହିଁ ତୃପ୍ତି। ଗଦ୍ୟ ପଢ଼ା ସରିଲେ କାମ ଶେଷ। କିନ୍ତୁ କବିତା ପଢ଼ା ସରିଲେ ଆରମ୍ଭ ହୁଏ ଭାବନାର କାମ। ଯେମିତି ମୃତ ଶୁଆକୁ ଦେଖିଲେ ଜୀବନ୍ତ ଶୁଆଟିର କଥାମାନ ମନ ଭିତରକୁ ସ୍ୱତଃ ପଶି ଆସେ। ଚନ୍ଦନ କାଠର ଶବାଧାର ଭିତରେ ପ୍ରକୃତରେ କ'ଣ ମୃତ ସ୍ୱପ୍ନ ରହିପାରେ? ବରଂ ମୃତ୍ୟୁ ଲଭିବାକୁ ଜନ୍ମ ହୋଇଥିବା ସ୍ୱପ୍ନମାନେ ଆସି ଭିଡ଼ ଜମାନ୍ତି। ପୁନର୍ନବା ହୁଏ କବିତା। ଗମନରୁ ପ୍ରତ୍ୟାଗମନର ଶୁଭ ଯାତ୍ରାଟିଏ ହୁଏ ଆରମ୍ଭ। 'ସଙ୍ଗ ଫର୍ ଦ ଲାଷ୍ଟ ଆକ୍ଟ' କବିତାରେ ଲେଖିଛନ୍ତି Louise Bogan, 'On the strange beach, under a broken sky / O not departure, but a voyage done', ଗୋଟିଏ ସମୟ ସମୁଦ୍ରର ବିସ୍ମୟକର ଉପକୂଳ, ଭଙ୍ଗା ଆକାଶ ତଳୁ ଏହା ପଳାୟନ ନୁହେଁ, ଗୋଟିଏ ଯାତ୍ରାର ଆରମ୍ଭ। ଭଙ୍ଗା ଆକାଶ, ମୃତ ସ୍ୱପ୍ନ ଏକ ପ୍ରକାର ବିଂବ। ତା'ରି ଭିତରେ କବିତା ହେଉଛି ପୁନର୍ନବ, ଜୀବନର ଲାଜାରସ୍ ହେଉଛି ପୁନର୍ଜୀବିତ, କବିତା ଏକ ପ୍ରକାର ପୁର୍ନଜୀବିତ କରିବା ପ୍ରକ୍ରିୟାର ନାମ। ଏହି କାବ୍ୟିକ କଳାକୁ ସରରିଆଲିଷ୍ଟ କବି ଲୁଇ ଆରାଗଁ 'ଦି ପୋଏଟିକ୍ ଆର୍ଟ', ଶୀର୍ଷକ କବିତାରେ କରିଛନ୍ତି ପ୍ରତୀକିତ : 'And let every living thing / That changes with the changing wind / sharpen in their deathless name / xxx Married words words crucified / Rhymes instead crime decried / coupled to a coupled though....'

ଶିଶୁଟିଏ ଲୋକଟିଏରେ ବଦଳି ଯାଉଛି । ହାତରେ, ମୁଠାରେ ପଡୁଥିବା ପେଣ୍ଡୁଟିର ଧ୍ୱନି ଗୀତ ହୋଇ ଶୁଭୁଚି । ଛାଇଟି ମଣିଷ । ଆକୃତିରୁ ତାକୁ ଚିହ୍ନି ଯାଇଛନ୍ତି କବି କୀଥ୍ ଡ୍ୟୁଗ୍ଲାମ୍ । ଶବ୍ଦଟିଏ କବିତା ହେବା ସାଧାରଣ କଥା । ଶବ୍ଦଟିଏ କବିତା ହେବା ଏକ ସାଧାରଣ ଘଟଣା । ଅତି ଅସାଧାରଣ ଭାବରେ ତାକୁ ସିଲ୍‌ଭିଆ ପ୍ଲାଥ୍ କରି ଦେଇଥାନ୍ତି କବିତା । 'ଲେଡୀଲାଜାରସ୍' କବିତାରେ ତତ୍ତ୍ୱଟିକୁ ମୃତ୍ୟୁର ପ୍ରତୀକରେ ସିଏ କରିଛନ୍ତି ଉପସ୍ଥାପିତ: Dying / is an art, like every thing else / I do it exceptionally well.' । ଶବ୍ଦ ଭିତରେ ପ୍ରବାହିତ ହେଉଥାଏ ବିଦ୍ୟୁତ୍ ପରି ଏକ ଶକ୍ତି ସ୍ରୋତ । ନାଟକୀୟ ଭାବେ ତାହା ହୁଏ ଉଚ୍ଚାରିତ । କବିଙ୍କ ତାହା କରିଥାଏ ବିସ୍ମୟୋଦ୍ଦୀପକ ଓ ଉତ୍ତେଜିତ । ଭୀମର ରଡିପରି ତାହା ମାନସରୋବର ଭିତରୁ ବାହାରକୁ ଟାଣି ଆଣିଥାଏ କବିଙ୍କୁ ଓ କବିତାକୁ । ସିଲ୍‌ଭିଆ ଲେଖିଛନ୍ତି, 'Out of the ash / I rise with my read hair'... ପୁଣି 'And there is a charge, a very large charge / For a word or a touch'. । ରାତ୍ରି ସିନା ନ ଥାଏ,ସ୍ମୃତି କିନ୍ତୁ କରୁଥାଏ ଯନ୍ତ୍ରଣାରେ ଦହଗଂଜ ।

ଇଲିୟଟ ଲେଖିଛନ୍ତି, I am Lazarus, come from the dead / Comeback to tell you all, I shall tell you all; କିନ୍ତୁ ଦ୍ୱଂଦ୍ୱ ଓ ଅନ୍ତର୍ଦ୍ୱନ୍ଦ୍ୱରୁ ସିଏ ନୁହନ୍ତି ବିମୁକ୍ତ : 'And how should I begin?' । ଫୁଙ୍କେ ନିଜ/ ସ୍ମୃତିର ଲିଭିଲା ଚୁଲି/ରୁଦ୍ରଅପା: ସିଫଲିସ୍‌ର ଜ୍ୱାଳା/ ଆସେ ପୁଣି ଫେରି (କ୍ରଶସ୍ଥରତୁ ଓ ଗୋଟିଏ ମିନତି, ପୃଷ୍ଠା ୫୮/ ନକୁଳ ଚନ୍ଦ୍ର ସାହୁ ।) ନିଃସଙ୍ଗ ବ୍ୟକ୍ତିତ୍ୱ, ଖଣ୍ଡେ ହାତକଟା ସାର୍ଟ, ଆଖିରେ ଚଷମା, ଝରକା ଦେଇ ପଡୁଚି ବାହାରେ ନିଜର ସନ୍ଧ୍ୟା ଭ୍ରମଣ ! ! ସମୟର ଗଳିରେ ଅସନା ଜୀବନର ଅର୍ଗଳୀ । ପଲ୍ଲବିତ ପୌରୁଷ ତା ପାର୍ଶ୍ୱଚରିତ୍ର । ସକାଳ ତା' ସକାଳ ନୁହେଁ, ପୂବେଇ ଆକାଶର ସୂର୍ଯ୍ୟ ଉଠିବା ତା ଗତାନୁଗତିକ । ଯୁଆଡକୁ ଅନେଇଲେ ଚାରିଆଡ଼ ଚେସ୍‌ର କୋଠିକଟା ପାହାଚ । କେବଳ ଯିବାକୁ ପଡିବ ଏବଂ ସିଏ ଯାଏ ମଧ୍ୟ । ପାଦ ପକାଇ ଚାଲିଥିବ । କଦମରେ କଦମ ମିଳାଇ ଯେମିତି ଜଣେ ଦରମାଖିଆ ସୈନ୍ୟ !

କବିତା ପରାମର୍ଶରେ ବଦଳିଛି, ଇଲିୟଟ ସୂଚାଇ ଦେଇଛନ୍ତି, 'Oh, do not ask, 'What is it? / Let us go and make our visit' ଆସ, କେବଳ ବୁଲି ଚାଲି ଯାଅ । ପଚାରନା ଏହା କ'ଣ ? ଯେମିତି ଏହା ଏକ ସାଂଧ୍ୟଭ୍ରମଣ : 'ଡେଙ୍ଗା ଗୀର୍ଜା ସାମ୍ନାରେ/ ବୟସ୍କା ଲଂଡ଼ନ ସେତୁ ତା ଦେହରେ / ଅନେକ ଯୋତାର ଚିହ୍ନ / ଓ ଟ୍ରମ୍ୱନର ଛକ / ଲାଲ ଲାଲ ତ୍ରିକୋଣ କେତେ/ ଲଂବ ଫୁଟପାଥ୍ ! John Betjeman ତାଙ୍କ 'Pot pourri from a surrey Garden' କବିତାରେ କହନ୍ତି, 'Over your boundary, now, I

wash my face in a bird-bath, / Then which path shall I take ? That over there by the pram? ପରିଚ୍ଛିନ୍ନ ଭାବେ ଶବ୍ଦ ଦ୍ୱିଭାଗରେ ହୁଏ ବିଭକ୍ତ। ଶବ୍ଦ ଓ ଅର୍ଥ, ଶବ୍ଦ ଓ ତା'ର ଭାବ। ଯେମିତି ଯିଏ ଚାହିଁବ ଯେଉଁ ପ୍ରକାର ସମ୍ବନ୍ଧ। ମଣିଷ ଆଶାଶୂନ୍ୟ। ଲଫାପା ଭିତରେ ତା ଏକ୍ସରେ ଫଟୋ। ସମସ୍ୟା ଭାଷାର ନୁହେଁ, ମଣିଷ ଚରିତ୍ରର ଭୋକିଲା ବୁନିଆଦି ଓ ଅସୁସ୍ଥ ସଂସ୍କୃତିର। 'ଦି ସୁଇସାଇଡ୍' କବିତାରେ ଲେଖିଛନ୍ତି ଲୁଇସ୍ ମ୍ୟାକ୍‌ନିସ୍, 'This man you never heard of, there are the billls'.

'କଲିକତା ଯିବ ସିଏ/ ଦେଲ ଟଙ୍କା ତିରିଶଟି/ ତମରି ହାତରେ ମୋ' / ସମ୍ମାନ ଡିବିରି, ଆଜି ସୁଦ୍ଧା / ରାଜୁ ପଟ୍ଟନାୟକଙ୍କ ବାକି/ସୁଝି ପାରିଲିନି। (କୁଶସ୍ଥରତୁ ଓ ଗୋଟିଏ ମିନତି, ପୃଷ୍ଠା ୭୧)। Who's who କବିତାରେ ଲେଖିଛନ୍ତି ଅଡେନ୍ : A shilling life will give you all the facts :/ How father beat him, how he can away / What wear the stanggles of his youth, what acts / Made him the greatest figure of his day'। ଗପର ଚରିତ୍ର ହୋଇ ଯାଇଛି ସିଏ। ଆର୍ଥିକ ବିକାଶ ଜୀବନର ଉତ୍ତରଣ ନୁହେଁ। ସେଇଥି ପାଇଁ ଅଷ୍ଟ୍ରେଲିଆ ଜନ୍ମିତ, ଇଂଲଣ୍ଡରେ ଜୀଇ ଆସିଥିବା କବି Peter Porter, ଚିତ୍କାର କରିଥିଲେ, "I am not a Jew"। ସଂସାରର ସବୁ ଆର୍ଥିକ ସମୃଦ୍ଧିକୁ ସଫା କରିଦେବ ସାବୁନ ପରି ଛୋଟ ଗୋଟେ ପରମାଣୁ ବୋମା। ଆକାଶରେ ପକ୍ଷୀପରି ଉଡୁଚି ନିୟୁକ୍ଲିୟର ରକେଟ। କିଏ କହିବ, କେତେ ବେଳେ ଯେ ସବୁ ସମୃଦ୍ଧିକୁ ନକରି ଦେବ ୱେଷ୍ଟଲ୍ୟାଣ୍ଡ। ସରକାରୀ ସୌଧମାନ ସୂର୍ଯ୍ୟାଲୋକପରି ଜଳୁଛନ୍ତି। ମୃତ୍ୟୁର ଅନ୍ଧାରକୁ ଆଉ ଭୟ ନାହିଁ। ଈଶ୍ୱର ହିଁ ଏକମାତ୍ର ଭରସା ଅସହାୟ ମଣିଷଙ୍କ ପାଇଁ; ତାଙ୍କର ଅଧିକାଂଶ କବିତାରେ କରିଛନ୍ତି ଘୋଷଣା। 'ବି ଉଇଟନେସ୍' କବିତାରେ ଅଡ଼େନ୍ କହିଛନ୍ତି, 'ଉଇ ଅଲ୍ ୱାଚିଂ ୟୁ'। କୁହ ତୁମ ମାଛଧରା ଗପ। ଆଲୋକିତ ପାନ୍ଥଶାଳାରେ ଅନ୍ୟର ସ୍ତ୍ରୀକୁ ଶୁଣାଅ ତୁମ ଅମାନିଆ କାହାଣୀ। ଦିବସ ଓ ରାତି, ଆମେ ଅଭିଭାବକ ତୁମକୁ ଦ୍ୱାର ମୁହଁରେ ଜଗିଛୁ। ପରିଷ୍କାର ହୁଅ, ପରିଚ୍ଛନ୍ନ ରୁହ। ତାଲାରେ ତେଲ ଦିଅ। ଆମେ ଜାଣିଛୁ, ଆକାଶରୁ ପଡିବ କିଛି, ଯାହା ବର୍ଷା ନୁହେଁ ଏବଂ ତାହା ପୁଷ୍ପ ନୁହେଁ। ବିଶ୍ୱାସ କରି ଭୁଲ କରନା ଯେ ଆମେ ମୃତ। ବରଂ "We're afraid is that case you'll have a fall" ।

ସଂସାରରୁ ଉତ୍‌ଥାନ ଓ ପତନର ଗତି କ'ଣ ବଦଳି ଯିବ? ଉଚ୍ଚର ବିପରୀତ ଶବ୍ଦ ନୀଚକୁ କେଉଁ ପ୍ରତିଶବ୍ଦ ବଦଳାଇବ ?



# ଯୁଦ୍ଧଧୂଆଁରେ ତିଆରି ସମକାଳୀନ ଆନ୍ତର୍ଜାତିକ ସାହିତ୍ୟ

ଆଭ୍ୟନ୍ତରୀଣ ଓ ବାହ୍ୟ ଦୁଇଟି ଜାଲ ଭିତରେ ଛଟପଟ ହେଉଥିଲେ ଇରାକୀୟ। ବାହ୍ୟ ପ୍ରଭାବ ଅତି ବାଜେ। ଏହା ଦୈନନ୍ଦିନ ଜୀବନର ସମସ୍ତ ବିଭାବକୁ ଆକ୍ରାନ୍ତ କରିଥିଲା। ବିଦ୍ୟୁତ୍, ପାନୀୟ, ଜଳ, କାର୍ ମରାମତି ସରଞ୍ଜାମ, ପାଠ୍ୟପୁସ୍ତକ, ଔଷଧ ସବୁକିଛି। ଏହାର କିଛି ସୀମା ନଥିଲା। କହନ୍ତି ଅବଦୁଲ୍ ରଜାକ୍, ଜଣେ ଆମେରିକାଶିକ୍ଷିତ ଅବସରପ୍ରାପ୍ତ ବାଗ୍‌ଦାଦ୍‌ସ୍ଥ ଅଧ୍ୟାପକ।

'ବାଗ୍‌ଦାଦ୍'ର ଅର୍ଥ ଈଶ୍ୱରଙ୍କ ଦାନ। ମେସୋପଟାମିଆର ହୃଦୟ। ୟୁଫ୍ରେଟିସ୍ ଓ ଟାଇଗ୍ରିସ୍ ମଧ୍ୟରେ ଥିବା ସମୃଦ୍ଧ ଅବବାହିକାର ସହର। 'ପ୍ରାଚୀନ ଆରବ୍ୟ ଏକ ସହସ୍ର ରାତ୍ରିର କାହାଣୀ'ର କେନ୍ଦ୍ରସ୍ଥଳ। ସେଇଠି ଶାହା-ଇନ୍-ଶାହା ଥିଲେ ହାରୁନ୍-ଅଲ୍-ରସିଦ୍ ଏବଂ ସେଇଠୁ ଆରମ୍ଭ ହୋଇଥିଲା ବିଶ୍ୱପ୍ରସିଦ୍ଧ ନାବିକ ସିନ୍ଦବାଦ୍‌ର କାହାଣୀ। ଗୋଟିଏ ପ୍ରାଚୀନ ସମୃଦ୍ଧ ସଭ୍ୟତାର ସୁବର୍ଣ୍ଣ ଭୂମି। ଧର୍ମ, ନୈତିକତା ଓ ଶିକ୍ଷାର ରାଜଧାନୀ।

ମନସ୍ତାତ୍ତ୍ୱିକ କ୍ଷୟକ୍ଷତିରେ ଏହି ବାଗ୍‌ଦାଦ୍ ଦିନେ ଆହତ ହେଲା। ୧୯୯୧ ଓ ୧୯୯୨ - ଦୁଇ ଦୁଇଥର ଆମେରିକାର ବୋମାମାଡ଼: ପୁଣି ୧୯୯୬ ଓ ୧୯୯୮ରେ ଆକ୍ରମଣ। ଚାରିଆଡେ ଧ୍ୱଂସର ତାଣ୍ଡବ ଓ ବାରୁଦର ଗନ୍ଧ। ସ୍କୁଲ ଯାଉଥିବା କୋମଳମତି ଶିଶୁ ଆତଙ୍କିତ ଯେ ସ୍କୁଲରୁ ଫେରିଲା ବେଳକୁ ତାର ଘରନଥିବ! ନଥିବେ ପିତାମାତା! ଆମେରିକୀୟ ବୋମା ବଦଳାଇ ଦେଇଥିବ ସଭ୍ୟତାର ତର୍ଜମା! ତେଣୁ ବଢ଼ିଉଠୁଥିବା ଦାୟାଦମାନଙ୍କ ମନ ଭିତରେ ଜମାଟ ବାନ୍ଧୁଥିଲା ସ୍ତୂପ ସ୍ତୂପ ଘୃଣା। 'Schools are in a bad way' ଏବଂ 'most parents find note books, pencils and pens too expensive to purchase'। 'ଇରାକ୍ : ଏ ରିପୋର୍ଟ ଫ୍ରମ୍ ଇନ୍‌ସାଇଡ୍' ବହିରେ ଉଲ୍ଲେଖ କରିଛନ୍ତି ସାମ୍ବାଦିକ ଦିଲୀପ ହିରୋ। ଇରାକ୍‌ରେ ପାଠପଢ଼ା ଯାଉଥିଲା ମୁହଁରେ ତ କେତେବେଳେ ଅଡିଓ-ଭିଡିଓ କ୍ୟାସେଟ୍‌ରେ। କାରଣ- 'The UN has withheld permission for producing paper in Iraq'। 'ବାଗଦାଦ୍ ଡାଏରିଜ୍'ରେ ଲେଖିକା ନୁହା ଅଲ୍ ରଦି ଉଲ୍ଲେଖ କରିଛନ୍ତି ଯେ- ତାଙ୍କର ବିଶ୍ୱବିଦ୍ୟାଳୟରେ ଷାଠିଏ ଜଣ ଛାତ୍ର ଥିଲେ ମାତ୍ର କାହାରି କାଗଜ ଓ

ପେନ୍‌ସିଲ୍ ନଥିଲା । 'They write on the back of receipt, pharmacy bills, account books, anything that has a blank side to it'

ୟୁଏନ୍ ସାଙ୍କସନ୍ କମିଟୀ ଇରାକ୍ ପାଇଁ କେବଳ ଖାଦ୍ୟ ଓ ଔଷଧ ନୁହେଁ, ବୃତ୍ତିଗତ ପତ୍ରିକା, ଆନ୍ତର୍ଜାତିକ ଖବରକାଗଜ, ବହି, ଲେଖା ସରଂଜାମ ଓ କମ୍ପ୍ୟୁଟର ମଧ୍ୟ ଅପରିହାର୍ଯ୍ୟ ନୁହେଁ ବୋଲି ଉପଲବ୍ଧି କରିଛି । ଏକଥା Middle East International ରିପୋର୍ଟରେ ଉଲ୍ଲେଖ କରାଯାଇଛି । ୟୁଏନ୍ ମଂଜୁରୀ କମିଟୀର ଏହି କ୍ରୁର ନିର୍ଦ୍ଧାରଣ ପାଇଁ More than 500,000 Iraqi children are already dead' ବୋଲି ସ୍ୱୀକାର କରିଛନ୍ତି ମିଳିତ ଜାତିସଂଘର ସେକ୍ରେଟାରୀ ଅଫ୍ ଷ୍ଟେଟ୍ ମାଡେଲିନୀ କାର୍‌ବୋଲ୍ ଅଲ୍‌ବ୍ରାଇଟ ।

ଧଳା ଗୋଲାପପରି ସତେଜ ଛୋଟ ଛୋଟ ପାଞ୍ଚଲକ୍ଷ ଶିଶୁ ଖାଦ୍ୟ, ଔଷଧ ଓ ପାନୀୟ ବିନା ଅକାଳରେ ଗୋଟିଏ ଶତାବ୍ଦୀର ବିଦାୟ ଦଶନ୍ଧିରେ ଝାଉଁଳି ପଡିଲେ ! ବିଶ୍ୱ ଇତିହାସରେ ଏହି ବର୍ବରତାର ସମାନ ଉଦାହରଣ କେବଳ ନାଗାସାକି ଓ ହିରୋସିମା ହୋଇପାରେ ! ସଭ୍ୟତା ସମୃଦ୍ଧି ଓ ବୈଷୟିକ ବିକାଶର ଅଲଗା ପାର୍ଶ୍ୱ କେତେ ଅନ୍ଧକାରପୂର୍ଣ୍ଣ ସତରେ ! କେତେ ଭୟଙ୍କର ! ! ଉଇଲିୟମ୍ ଆର୍ ଥ୍ରୋଟେର୍ ଲେଖିଛନ୍ତି - 'ଦି ଉଇଣ୍ଟର ୱାର୍ : ଦି ରଷୋ-ଫିନିସ୍ ୱାର୍ ଅଫ୍ ୧୯୩୯/୪୦ । ଏହା ୨୯୮ ପୃଷ୍ଠା ସମ୍ବଳିତ ଏକ ଯୁଦ୍ଧଗପ । ଟମ୍ ପୁକକ୍ ଲେଖିଛନ୍ତି- 'ଦି ଟେରର୍ ବିଫୋର୍ ଟ୍ରାଫଲଗାର' । ଇରାକ୍ ଯୁଦ୍ଧପରି ମାନବ ସମ୍ବଳର ଏତେ ଭୟାନକ ସଙ୍କଟ କେଉଁଠି ଘଟିନାହିଁ । ଅନ୍ୟ କେଉଁଠି ଦେଖାଯାଇନାହିଁ ମାନବିକତାର ଏତେ ସାଂଘାତିକ ଅସୁସ୍ଥତା ।

ମ୍ୟାକ୍‌ମିଲନ୍ ପ୍ରକାଶନ ସଂସ୍ଥା ଏବେ ବଜାରକୁ ଛାଡିଛନ୍ତି ବହି, 'ସଦ୍ଦାମ: ଦି ସିକ୍ରେଟ୍ ଲାଇଫ୍' । ରଚୟିତା : ଜନ୍ କଫଲିନ୍ । ଅନ୍ୟ ଖଣ୍ଡିଏ ବହି ରଚନା କରିଛନ୍ତି ଯୁଗ୍ମ ଲେଖକ ଆନ୍‌ଡ୍ର୍ୟୁ କକ୍‌ବର୍ଣ୍ଣ ଓ ପ୍ୟାଟ୍ରିକ୍ କକ୍‌ବର୍ଣ୍ଣ । ଶୀର୍ଷକ : 'ସଦ୍ଦାମ ହୋସେନ୍' ।

'ସୁନୀ' ମୁସଲମାନ ସଂଖ୍ୟାଲଘୁ ଓ 'ସିହା'ଙ୍କ ସଂଖ୍ୟାଗରିଷ୍ଠ ଦେଶ ଇରାକ୍ । ନୀତି ଭଙ୍ଗ ଓ କ୍ଷମତା କନ୍ଦଳରତ । ମଧ୍ୟ ପ୍ରାଚ୍ୟରେ ଶାନ୍ତି ଭଙ୍ଗ ହେତୁ ଏମାନଙ୍କୁ କାଳେ କେତେବେଳେ ଋଷିଆ ମାଡ଼ିବସିବ ! ଇସଲାମିକ୍ ଉଗ୍ରବାଦୀ ପ୍ରଶାସନ ଇରାନ୍, କୁଏତ୍ ଇସ୍ରାଇଲ୍ ଓ ପାଲେଷ୍ଟାଇନ୍ ଆଦିରେ ମୁଣ୍ଡ ଟେକୁଅଛି । ଏହାର କାରଣ ସେମାନଙ୍କ ହସ୍ତରେ ଅଛି ତୈଳ ସଂପଦ । ସେମାନେ ଏତେ ନୃଶଂସ ଯେ ଜଣେ ମଣିଷକୁ ଏସିଡ଼ରେ ବୁଡାଇ ମାରି ଦେଉଛନ୍ତି ! ସେମାନେ ଧର୍ଷଣ କରନ୍ତି ଲୋକଟି

ସାମ୍ନାରେ ତାର ଯୁବତୀ ପତ୍ନୀଙ୍କୁ ଏବଂ ପିଲାମାନଙ୍କୁ ହତ୍ୟା କରନ୍ତି । ସଦ୍ଦାମଙ୍କ ସମ୍ବନ୍ଧରେ କୁହାଯାଇଛି ଯେ, 'He has had his first cousin killed, and also his two sons -in-law and several of their relations in a very public shoot-out' । କଫଲିନ୍ ଲେଖିଛନ୍ତି - ସଦ୍ଦାମ ସୁନୀ ସଂପ୍ରଦାୟର । ହୁଏତ ସିଏ ଚିହ୍ନି ନଥିଲେ ନିଜ ପିତାଙ୍କୁ । ସର୍ବଦା ଜିଦିଆ । ଶିକ୍ଷା ତାଙ୍କର ମାତ୍ର ଗିରିଜନ ସଂସ୍କୃତି ସଂପନ୍ନ । ହିଂସା ତାଙ୍କର କ୍ୟାରିଅରର ପ୍ରାକୃତିକ ଉପକରଣ । କିନ୍ତୁ କକ୍ ବର୍ଣ୍ଣ ଲେଖିଛନ୍ତି- ସଦ୍ଦାମଙ୍କ ଦୃଷ୍ଟିରେ ଏହା ଥିଲା ଷଡ଼ଯନ୍ତ୍ର । ତେଣୁ ସଦ୍ଦାମ ବର୍ଣ୍ଣନା କରିଛନ୍ତି - 'We must kill those who conspire against us' । କେଣ୍ଟରବରୀ ଆର୍କବିଶପ ରୋଓ୍ୱନ୍ ୱିଲିୟମ୍ସ୍ ଲେଖିଛନ୍ତି- We need God knows, ways of pressurising Iraq towards justice for its own citizens'. । ଇରାକୀୟ ତ କେଉଁଠି ଫେରାଦି ହୋଇନାହାନ୍ତି ନିଜ ଭିତରେ ଲାଗିଥିବା କନ୍ଦଳ ପାଇଁ ? ତେବେ ପର ଘରେ ପଶି ଆମେରିକୀୟ ପ୍ରଶାସନ ମଙ୍ଗଳବାର କରିବା ପରି ଏହା ହୋଇଛି ।

ଆମେରିକାର ନୂତନ ସିଜର୍ ଘୋଷଣା କଲେ ସବୁ ଜାତି ଓ ଦେଶଙ୍କୁ ଗୋଟିଏ ନିର୍ଣ୍ଣୟ ନେବାର ସମୟ ଆସିଛି - 'Either you are with us, or you are with the terrorists' ତୁମେ ଆମ ସହିତ ନା, ଉଗ୍ରପନ୍ଥୀମାନଙ୍କ ସହିତ ? ପ୍ରତିରକ୍ଷା ସଚିବ ଡୋନାଲଡ଼ ରମସ୍‌ଫିଲଡ଼ ଯୁଦ୍ଧର ଚାରିତ୍ରିକ ନିର୍ଣ୍ଣୟ କଲେ ଯେ ଏହା 'humane' । ଯୁଦ୍ଧ 'ମାନବିକ' । ପ୍ରତିରକ୍ଷା ନୀତି ପରିଷଦ ଅଧ୍ୟକ୍ଷ ରିଚାର୍ଡ ପେରୀ 'ଗାର୍ଡିଆନ୍'ରେ ଲେଖିଲେ ପ୍ରବନ୍ଧ :'ଥ୍ୟାଙ୍କ୍ ଗଡ଼୍ ଫର୍ ଦି ଡେଥ୍ ଅଫ୍ ୟୁ.ଏନ୍.' କାରଣ ମିଳିତ ଜାତିସଂଘ ଶାନ୍ତିର ଗ୍ୟାରେଣ୍ଟି ଦେବାକୁ ଏବେ ଅକ୍ଷମ । ଅତ୍ୟାଚାରିତ, ନିର୍ଯ୍ୟାତିତ ମଣିଷ ଏବେ ହେବେ ଯାତନାମୁକ୍ତ ।... imperial America is the only viable guarantor of world order! ପ୍ରକୃତରେ କ'ଣ ଆମେରିକା ବିଶ୍ୱଶାନ୍ତି ଓ ଶୃଙ୍ଖଳା ପାଇଁ ଏକ ମାତ୍ର ମାଧ୍ୟମ ?

ଯୋଶେଫ୍ ବ୍ରାଉଦିଙ୍କ ପୁସ୍ତକ 'ଦି ନ୍ୟୁ ଇରାକ୍: ରିବିଲ୍ଡିଂ ଦି କଣ୍ଟ୍ରି ଫର୍ ଇଟ୍‌ସ ପିୟୁପ୍ଲ ଦି ମିଡିଲ୍ ଇଷ୍ଟ ଏଣ୍ଡ୍ ଦି ୱାର୍‌ଲଡ୍' ବେଶ୍ ବହୁଚର୍ଚ୍ଚିତ । ବ୍ରାଉଦିଙ୍କ ଆତ୍ମୀୟ ତିରିଶ ଦଶକର ଇରାକ୍‌ରେ ଜଣେ ଆଇନ୍ ପଣ୍ଡିତ ଥିଲେ । ତାଙ୍କ ନାମ ହଖମ୍ ଆବ୍ରାହମ୍ ଅସଲାନ୍ ଓ ତାଙ୍କ ମାତା ମଧ ସେହି ଜାଗାର । ଲେଖକ ବ୍ରାଉଦି ଆରବୀୟ, ହେବ୍ରୁ ଓ ପାର୍ଶୀ ଭାଷାରେ ଅଭିଜ୍ଞ । ସିଏ ତେହେରାନ୍, ଦୁବାଇ ଓ

କାଇରୋରେ ରୁହନ୍ତି। ସିଏ ଇରାକୀୟ ଶାସନ, ସାହିତ୍ୟ ଓ ସଂସ୍କୃତିର ଇତିହାସ ପଢ଼ିଛନ୍ତି। ବ୍ରାଉଦି ତାଙ୍କ ପୁସ୍ତକରେ ଠାଏ କହିଛନ୍ତି- 'ଯାହା ସତ୍ୟ, ଆପଣମାନେ ଯାହା ଜାଣିବାକୁ ଚାହାନ୍ତି, ଇରାକ ବିଷୟରେ ମୁଁ କହିପାରୁନାହିଁ। ଏହାର ଭବିଷ୍ୟତ ଅତୀତପରି ଦାସତ୍ୱରେ ନିର୍ମିତ। ଭବିଷ୍ୟତ- ଦଳେ ପିଲାଙ୍କ ସେମାନଙ୍କ ଅଭିଭାବକଙ୍କ ସହିତ କଳି ଏବଂ ସେମାନଙ୍କୁ ଘେରି ରହିଥିବା ସଂସାର ସହିତ ଯେମିତି ଗୋଟାଏ କନ୍ଦଳ'।

୨୦୦୩ ମାର୍ଚ୍ଚ ୮ ତାରିଖ। ଲଣ୍ଡନ୍ ଟେଲିଗ୍ରାଫ୍‌ରେ ମାର୍କ ଷ୍ଟେନ୍ ଲେଖିଲେ ଗୋଟିଏ ସ୍ତମ୍ଭ: How long for the bombs to start falling' ଷ୍ଟେନ୍ ଥରେ ଦେଖିଲେ ବାଲିକୁଦ ଆରପଟେ ସକାଳେ ବା ସନ୍ଧ୍ୟାରେ ନିଆଁପୋଉଁଥିବା ବେଳେ ଦଳେ ଲୋକ ଟଳିପଡିଛନ୍ତି। ସିଏ ବର୍ଣ୍ଣନା କରିଛନ୍ତି – 'I join the circle of dead. The men's boots are cooked to thier feet. The man to my right had no head. I want to ask the deadmen their names and identification numbers and tell them this will soon end'. ତୁମେ ଯେଉଁଠି ଯେପରି ଥାଅ, ମୃତ ମଣିଷମାନଙ୍କ ପାଟିପରି ମୃତ୍ୟୁର ପାଟି ମେଳା ହୋଇରହିଛି। ତୁମେ ଶୁଣିପାରୁ ନାହଁ ମୃତ୍ୟୁର ଚିତ୍କାର? ତୁମେ ଶୁଣିପାରୁଛ ତ?

ଯୁଦ୍ଧର ବାରୁଦ ଗନ୍ଧ ଓ ଧୁଆଁରେ ଅଣନିଃଶ୍ୱାସୀ ମାନବିକତା ଓ ଶଙ୍କିତ ମଣିଷର ସ୍ୱାଧୀନତା। କିନ୍ତୁ ସାହିତ୍ୟ ଯୁଦ୍ଧତୋପର ମୁହଁପରି ମୁକ୍ତ ଓ ସତ୍ୟର ସାଂଘାତିକ ବାରୁଦରେ ରୁଦ୍ଧ। ନ୍ୟାୟ ଓ ସତ୍ୟର ସମ୍ମାନ ପାଇଁ ସବୁବେଳେ ଡନ୍‌କ୍ୟୁଜୋଟ୍ ପରି ଲଢ଼ି ଆସିଛି ସାହିତ୍ୟ। ପରାସ୍ତ ଇରାକ୍। ସଦାମ କାରାରୁଦ୍ଧ। ହାରୁନ୍-ଅଲ୍-ରସିଦ୍ ଏକ ସହସ୍ର ଆରବ୍ୟ ରଜନୀ କାହାଣୀର ବାଦଶାହଙ୍କ ରାଜଧାନୀ କମାଣ ମାଡ଼ ଓ ଟ୍ୟାଙ୍କର ଶକ୍ତ ପ୍ଲେଟ ତଳ ଧୂଳିରେ ଧୂସରିତ। କଳା-ସ୍ଥାପତ୍ୟ ଧୂଳିସାତ ଏବଂ କିଛି ଚାଲାଣ ହୋଇଗଲାଣି ବ୍ରିଟିଶ୍ ମ୍ୟୁଜିୟମ। ପ୍ରାଚୀନ ସଂସ୍କୃତି ସେଠି ଏବେ ପୋଡାଭୂମି! ବ୍ୟକ୍ତିଗତ ଜୀବନରେ ମଦ୍ୟପାନ କରୁନଥିବା ବୁଶ୍ ଏବେ ଶକ୍ତ ନିଶାଡ଼ି! ନିରୀହ ପରି ଦେଖାଯାଉଥିବା ଲୋକଟି ଜଣେ ଯୁଦ୍ଧ ଆସାମୀ! ଲୋଭ, ଜିଦ୍ ଓ ଈର୍ଷା ସମଗ୍ର ବିଶ୍ୱକୁ ଖାତିର କଲା ନାହିଁ! ସାହିତ୍ୟ ଚାଲିଛି ତା' ରାସ୍ତାରେ ଏବଂ ସାମ୍ରାଜ୍ୟବାଦୀ ନିଶା ବଢ଼ିଚାଲିଛି ତାକୁ ଦେଖାଯିବାରାସ୍ତାରେ। ସାମ୍ରାଜ୍ୟବାଦୀ ନିଶା ଦିନେ ସମାପ୍ତ ହେବ ଗୋଟିଏ ସୀମାରେ କିନ୍ତୁ ସାହିତ୍ୟ ସେହି ସୀମାକୁ ସବୁବେଳେ ଅତିକ୍ରମି ଆସିଛି।

ଘଟଣାକୁ ଇତିହାସ କରେ ସମୟ। ସମୟକୁ ସାହିତ୍ୟ କରେ ଲେଖକ। ଆମେରିକୀୟ ସୈନ୍ୟଙ୍କ ଦ୍ୱାରା ତାଲିବାନ୍ ପତନ ପରେ ଯେଉଁ ହୈ ଚୈ ସମୟର ଉତ୍ତରଣ ଘଟିଥିଲା ତାକୁ ଧରିଛି ଗିଲ୍‌ସ୍ ହେପେଲ୍‌ଙ୍କ ପୁସ୍ତକ: 'ଜିହାଦ୍', ଅହମ୍ମଦ ରସ୍‌ଦିଙ୍କ 'ତାଲିବାନ୍, ମିଲିଟାଣ୍ଟ ଇସ୍‌ଲାମ୍, ଅଏଲ୍ ଏଣ୍ଡ୍ ଫଣ୍ଡାମେଣ୍ଟାଲିଜିମ୍'। ଲିଲା ଅହମ୍ମଦ୍‌ଙ୍କ 'ଏ ବର୍ଡର ପ୍ୟାସେଜ୍' 'ଏବଂ ଅମିତାଭ୍ ଘୋଷଙ୍କ' 'ଇନ୍ ଆନ୍ ଆଣ୍ଟିକ୍ ଲ୍ୟାଣ୍ଡ୍' ଭଳି ବହି।

୨୦୦୨ରେ କରାଚିସ୍ଥିତ ଅକ୍ସଫୋର୍ଡ ପ୍ରେସ୍ ପ୍ରକାଶ କରିଛନ୍ତି ମେଜର ଜେନେରାଲ୍ ହାକୀମ୍ ଅର୍ସଦ କ୍ୟୁରେସିଙ୍କ ପୁସ୍ତକ 'ଦି ୧୯୭୧ ଇଣ୍ଡୋ-ପାକ୍ ଓ୍ୱାର: ଏ ସୋଲଜର୍ସ ନ୍ୟାରେଟିଭ'। ସେହିଭଳି 'ମୁସାରଫ୍‌ସ ଓ୍ୱାର୍' ଶୀର୍ଷକ ପୁସ୍ତକ ଗତବର୍ଷ ମେଜର ଜେନେରାଲ ରଜିନ୍ଦର ନାଥଙ୍କ ଦ୍ୱାରା ସଂପାଦିତ ହୋଇ ଲାନ୍‌ସେର ବୁକ୍ସ ସଂସ୍ଥା ଦ୍ୱାରା ପ୍ରକାଶ ପାଇଛି। ମୁସାରଫଙ୍କ ଯୁଦ୍ଧ ପଛରେ ଥିବା ରାଜନୀତିର ଗୁରୁତ୍ୱ ରହିଛି ଏବଂ ସେହି ରାଜନୀତି ପରାସ୍ତ ହୋଇଛି। କାର୍ଗିଲରେ ପାକିସ୍ଥାନୀ ସୈନ୍ୟଙ୍କ ଉଗ୍ରପନ୍ଥୀ ଭାବେ ଅନୁପ୍ରବେଶ ହେଲା ଓ ସେମାନଙ୍କୁ ତଡିବାକୁ ଭାରତୀୟ ସୈନ୍ୟମାନେ ଆପ୍ରାଣ ଉଦ୍ୟମ କଲେ। ତତ୍‌କାଳୀନ ସମୟ ଥିଲା ବିଶ୍ୱକପ୍ କ୍ରିକେଟ୍‌ର ବେଳ। ଦେଶ ଯୁଦ୍ଧ ଲଢୁଥିବାବେଳେ ଭାରତୀୟମାନେ କ୍ରିକେଟ୍ ଖେଳ ଦୃଶ୍ୟରେ ମସଗୁଲ। ଦେଶ_ବରଂ ଯୁଦ୍ଧରେ ହାରୁ କିନ୍ତୁ କ୍ରିକେଟ୍ ଯୁଦ୍ଧରେ ପାକିସ୍ଥାନକୁ ଜିଣୁ - ବୋଧହୁଏ ଉଦ୍ଦେଶ୍ୟ ଥିଲା ଭାରତୀୟଙ୍କର ! ବିଲକୁ ମୁଲିଆ ପଠାଇ ଘରେ ଶୋଇ ଦୂରଦର୍ଶନପରଦାକୁ ଆଖିତରାଟି ଅନାଇ ରହିବା କଥା। ଭାରତୀୟମାନେ ଯୁଦ୍ଧର ଭୟଙ୍କର ପ୍ରଭାବଜନିତ ଆଶଙ୍କାରେ ଆଦୌ ଆତଙ୍କିତ ନୁହଁନ୍ତି। ମେଜର ଜେନେରାଲ୍ ପ୍ରେମ୍ କେ. ଖାନ୍ନା ଓ ପୁଷ୍ପିନ୍ଦର ସିଂ ଚୋପ୍ରା ଲେଖିଛନ୍ତି ଖଣ୍ଡିଏ ପୁସ୍ତକ 'ପୋର୍ଟ୍ରେଟ୍ ଅଫ୍ କରେଜ୍' ଏହାର ଶୀର୍ଷକ। ଏଥିରେ ସେମାନେ ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି - ଗୋଟିଏ ଭାରତୀୟ ସୈନ୍ୟ ଦଳ ମାର୍ଚ୍ଚ ୧୯୧୭ରେ କେମିତି ଦଖଲ କରିନେଲେ ବାଗଦାଦ୍।ଭାରତ ଥିଲା ବ୍ରିଟିଶ୍ ସାମ୍ରାଜ୍ୟର ଗୋଟିଏ ଅଂଶ। ନଭେମ୍ବର ୧୯୧୪ରେ ଗୋଟିଏ ଆଂଗ୍ଲୋଇଣ୍ଡିଆନ୍ ସୈନ୍ୟଦଳ ମାଡ଼ିଯାଇ ଦଖଲ କଲେ ବସ୍ରା ଓ କୁତ୍ ଅଲ୍ ଅମ୍‌ରାହ ୧୯୧୫ ପର୍ଯ୍ୟନ୍ତ। ତୁର୍କୀ ସୈନ୍ୟ ପୁନଃ ଦଖଲ କରିନେଲେ ୧୯୧୬ ଅପ୍ରେଲ୍ ମାସରେ ! କେତେଥର ଭୟାନକ ଆକ୍ରମଣ ପରେ ମାର୍ଚ୍ଚ ୧୯୧୭ରେ ଭାରତୀୟ ସୈନ୍ୟ ଦଖଲ କରିନେଲେ ବାଗ୍‌ଦାଦ୍। ୧୯୩୨ ମସିହା ଅକ୍ଟୋବର

ମାସରେ ଇରାକ ଲିଗ୍ ଅଫ୍ ନ୍ୟାସନ୍‌ସ୍‌ରେ ଗୋଟିଏ ସ୍ୱାଧୀନ ରାଷ୍ଟ୍ର ରୂପେ ସ୍ୱୀକୃତ ହେଲା ଓ ବ୍ରିଟିଶ୍ ଅଧ୍ୟାଦେଶର ସମାପ୍ତ ହେଲା ।

ଅଲ୍ଲି ଅବ୍‌ଦୁଲ୍ ଅମୀର ଜଣେ ଇରାକୀ ଲେଖକ ଗତବର୍ଷ ଜୁନ୍‌ରେ ସେ ରଏଟର୍ ସମ୍ବାଦ ସଂସ୍ଥା ଆଗରେ ପ୍ରକାଶ କରିଛନ୍ତି- ସଦ୍ଦାମ ହୁସେନ୍‌ଙ୍କ ଶାସନ ସହିତ ସାହିତ୍ୟ ସର୍ଜନା ମଧ୍ୟ ଆମେରିକୀୟ ଓ ବ୍ରିଟିଶ୍ ସୈନ୍ୟଙ୍କ ଆକ୍ରମଣ ଫଳରେ ଧ୍ୱଂସ ହୋଇଯାଇଛି । ସଦ୍ଦାମ ହୁସେନ୍ ରଚନା କରିଛନ୍ତି ମୋଟ୍ ଚାରୋଟି ଉପନ୍ୟାସ । ସେଗୁଡ଼ିକ ଇରାକ୍‌ର ସୂଚନା ଓ ସଂସ୍କୃତି ମନ୍ତ୍ରଣାଳୟ ପ୍ରକାଶ କରିଛି । ସଦ୍ଦାମଙ୍କ ଶେଷ ଉପନ୍ୟାସ- 'ଗେଟ୍ ଆଉଟ୍ ଅଫ୍ ହିଅର୍, କର୍ସ ୟୁ'- ବହିଟି ବଜାରକୁ ଆସିବା ପୂର୍ବରୁ ଇରାକ୍ ଯୁଦ୍ଧର ସମ୍ମୁଖୀନ ହେଲା । ଏହି ପୁସ୍ତକର କେତେକ କପି ଆମେରିକାର ବୋମାମାଡ ଓ ଇରାକୀ ଲୁଟେରାଙ୍କ କବଳରୁ ବଂଚି ଯାଇଛି ବୋଲି କୁହାଯାଉଛି । ସଦ୍ଦାମଙ୍କ ପ୍ରଥମ ଉପନ୍ୟାସର ଶୀର୍ଷକ ଥିଲା - 'ଜାବିବା ଆଣ୍ଡ୍ ଦି କିଙ୍ଗ' ।

ସଦ୍ଦାମଙ୍କ ଶେଷ ଉପନ୍ୟାସ 'ଗେଟ୍ ଆଉଟ୍ ଅଫ୍ ହିଅର୍, କର୍ସ ୟୁ' ରେ ଜଣେ ଜନଜାତିର ବ୍ୟକ୍ତି 'ସଲିମ୍'କୁ ଆରବ ଜାତୀୟବାଦୀର ସ୍ଥାନ ଦିଆଯାଇ ତାହାରି କାହାଣୀ ଉପରେ ଉପନ୍ୟାସର ପଟ୍ଟଭୂମି ସ୍ଥାପିତ ହୋଇଛି । ସଲିମ୍ ଜଣେ ଉନ୍ନତ ଚରିତ୍ର ସମ୍ପନ୍ନ ବ୍ୟକ୍ତି । ସେ ତା'ର ଶତ୍ରୁ ଆମେରିକୀୟ ଓ ୟୁହୁଦୀମାନଙ୍କୁ କିପରି ପରାସ୍ତ କରୁଛି ତାହା ଉପନ୍ୟାସଟିରେ ବର୍ଣ୍ଣିତ ହୋଇଛି ।

ଆମେରିକାର କୌଣସି ଏକ ଅଜ୍ଞାତ କାରାକକ୍ଷରେ ସଦ୍ଦାମ ହୁସେନ୍ ଏବେ ଯୁଦ୍ଧବନ୍ଦୀ । ଗଣମାଧ୍ୟମ ଲେଖୁଛି - ନିଜ ହାତରେ ସେହି ଏକଛତ୍ରବାଦୀ ବ୍ୟକ୍ତିତ୍ୱ ନିଜ ପାଇଖାନା ସଫା କରୁଛି ! ଲୋକଟି ନିଜର ପ୍ରାୟଶ୍ଚିତ କରୁଛି ? ଆକ୍ରମଣକାରୀ ବୁଶ୍ ପ୍ରଶାସନ କ'ଣ ଏହା ବୁଝିଛି !



# ଏକବିଂଶ ଶତକ ପ୍ରଥମ ଦଶନ୍ଧି
# ଆନ୍ତର୍ଜାତିକ ସାହିତ୍ୟର ଗତି ଓ ସ୍ଥିତି

।। ଏକ ।।

ଜନ୍ ଅପ୍‌ଡାଇକ୍ : 'ମିୟୁଜିୟମ୍ ଏଣ୍ଡ୍ ଓ୍ୱମ୍ୟାନ୍' ତାଙ୍କ ଗଳ୍ପ ବହି। ବାସ୍ତରୀ ବର୍ଷ ବୟସ୍କ ଆମେରିକୀୟ ଏହି ଲେଖକ ବିଶ୍ୱସାହିତ୍ୟିକଙ୍କ ଆକର୍ଷଣର ବିଂଦୁ ଅଦ୍ୟାବଧି ! ଅଣଚାଳିଶଟି ଅଛି ବହି ଦୋକାନ। ସ୍ଥାନଟି ଇଂଲଣ୍ଡ ଓ ଓ୍ୱାଲେସ୍ ସୀମାନ୍ତ- 'ହେ-ଅନ୍-ୟେ'। ବ୍ରେକନ୍ ବିକେନ୍‌ସ୍ ନ୍ୟାସନାଲ୍ ପାର୍କରେ ଆୟୋଜିତ ହୋଇଥିଲା 'ପିଟର ଫ୍ଲୋରେନ୍ସ' ପର୍ବ। ସେହି ପର୍ବରେ ଚଳିତ ବର୍ଷ (୨୦୦୪) ଲୋକାର୍ପିତ ହେଲା ଅପ୍‌ଡାଇକ୍‌ଙ୍କ ରଚିତ ଉପନ୍ୟାସ 'ଦି ଡଷ୍ଟ୍ ଡାଇରୀଜ୍'। ଅତ୍ୟାଧୁନିକ ସାହିତ୍ୟର ମହତ ପୁରୁଷ ଅପ୍‌ଡାଇକ୍ ସନ୍ଥ ଜର୍ମାନ୍ କବି ପାସ୍କେଲ୍‌ଙ୍କ ରଚିତ 'Pensees' ରୁ ସଂଗ୍ରହ କରିଛନ୍ତି ତାଙ୍କ ବିରାଟ କାହାଣୀର ପ୍ଲଟ।

ସେହି ବହିରେ ଅପ୍‌ଡାଇକ୍ ଲେଖିଛନ୍ତି, 'ଦରକାରୀ ଠାରୁ ଆମେ ଅଧିକ ନିଷ୍ଠୁର ହୋଇଯାଇଛୁ। ଆମେ ଆମ କର୍ତ୍ତବ୍ୟ ପ୍ରତି ପୂର୍ଣ୍ଣ ସଚେତନ ନୋହୁଁ। ଆମ ଆବଶ୍ୟକତା ପାଖରେ ଅନ୍ୟର ଜରୁରୀକୁ ବଳି ଚଢ଼ାଇ ଦେଉଅଛୁ।'

ଅପ୍‌ଡାଇକ୍ କେଉଁ ଆଡକୁ ନିର୍ଦ୍ଦେଶ କରିଛନ୍ତି ତାଙ୍କ ଆଙ୍ଗୁଠି, ଟିକିଏ ଚତୁର ହେଲେ ପାଠକ ବୁଝିଯିବେ ତାଙ୍କ ଇଚ୍ଛାଟି ! ଆମେରିକାର ଇରାକ୍ ଆକ୍ରମଣ ପ୍ରତି ତାଙ୍କ ଆକ୍ଷେପର ବୀଜଟି ଅସନ୍ତୋଷ ପ୍ରକଟ କରିଛି ପ୍ରକୃତରେ ନୁହେଁ; ସିଏ ବୁଶ୍‌ଙ୍କ ଇଚ୍ଛା ଓ କର୍ମର ନିଂଦା କରିଛନ୍ତି। ଆବଶ୍ୟକଠୁ କ'ଣ ଅଧିକ ଆମେରିକୀୟ ସୈନ୍ୟମାନଙ୍କ ହୃଦୟ ନିଷ୍ଠୁର ହୋଇଯାଇ ନାହିଁକି ?

ଗତ ଜୁନ୍ ମାସରେ ଏହି ବହିର ଲୋକାର୍ପଣ ପୂର୍ବରୁ ମଇ ମାସରେ 'ସିସିଲ୍ ଉଲଫ' ପ୍ରକାଶନ ସଂସ୍ଥା Jean Moorcraft Wilson ଙ୍କ ସଂପାଦିତ ଖଣ୍ଡିଏ ପୁସ୍ତକକୁ ଦେଇଛନ୍ତି ମାର୍କେଟ। ବହିଟିର ଶୀର୍ଷକ ହେଲା 'Authors Take sides on Iraq and the Gulf War'।

ଏହି ବହିରେ ପ୍ରଶ୍ନ ଥିଲା, ଶାନ୍ତି ଓ ସ୍ଥିରତା ପାଇଁ, Are you for or against the American led action against Saddam Hussein's regime in March

2003' ? ମୋଟ ଏକସ୍ତରୀ ଜଣ ଲେଖକ ଦେଇଥିଲେ ଉତ୍ତର ଏବଂ ସେମାନଙ୍କ ମଧ୍ୟରୁ ପଚାଶ ଜଣ କହିଥିଲେ ଯୁଦ୍ଧ ବିରୁଦ୍ଧରେ। 'ଫୋର୍ ହର୍ସମେନ୍ ଅଫ୍ ଦି ଆପୋକାଲୀପ୍ସ' ଲେଖିଥିବା ହେଲେନ୍ ବ୍ରିୟାନ୍ ଦୃଢ଼ ଭାବରେ କହିଥିଲେ 'ସୁନ୍ଦର ଲୋକ ଶାନ୍ତି ପାଇଁ ଉତ୍ତୋଳିତ କରନ୍ତି ପ୍ଲାକାର୍ଡ'। ଲେଖକ John Keegan ଉପସ୍ଥାପିତ କରିଥିଲେ ତାଙ୍କ ଯୁକ୍ତି ସଭ୍ୟତାର ମୁଲ୍ୟବୋଧକୁ ଅଳଙ୍କୃତ କରୁଥିବା ଉତ୍ତମ ସଂପାଦନା ପାଇଁ ଶକ୍ତି ଓ ସୈନ୍ୟଙ୍କ ବ୍ୟବହାର ଯଥାର୍ଥ ବୋଲି ମୁଁ ମନେ କରୁଛି। ଅନେକ ପ୍ରାବଂଧିକ H.G. Wellsଙ୍କ ବିଶ୍ୱ ନିରସ୍ତ୍ରୀକରଣ ଯୁକ୍ତିର ତୋଳିଥିଲେ ପ୍ରତିଧ୍ୱନି। ଲେଖକ Tony Benn କହିଲେ, ବିଶ୍ୱ ଜାଣିଛି, ଆମେରିକା ବୃହତ୍ତମ ଗୋଟିଏ ସାମ୍ରାଜ୍ୟ ଗଠନରେ ଲାଗିଛି ! Horald Pinter କହିଲେ, 'ଆମେରିକୀୟ ଶକ୍ତିର ଦୃଢ଼ଯୁକ୍ତି – Bush and Blair are guilty of war crime'। ସପକ୍ଷବାଦୀମାନଙ୍କ ମତ ବି ଥିଲା ବଳିଷ୍ଠ। ବୁଶ୍‌ଙ୍କ ଏହା ଜାତିବାଦୀମାନଙ୍କ ପ୍ରତି ପ୍ରତିଶୋଧ ଓ ଅଲ୍-କାଏଦା ଆତଙ୍କବାଦୀଙ୍କ ଉଦୟ ପାଇଁ ଦାୟୀ ସଦ୍ଦାମ-ପ୍ରଭୃତି।

ଜୁନ୍ ମାସରେ ତିନିଶତ ଅଣାଅଶୀ ପୃଷ୍ଠାର ଖଣ୍ଡିଏ ବହି ପ୍ରକାଶନ କରିଛନ୍ତି ହଫ୍‌ଟନ ମିଫ୍‌ଲିନ୍ ପ୍ରକାଶନ ସଂସ୍ଥା। ବହିଟି ଲେଖିଛନ୍ତି Paul Roberts। ଏହାର ଶୀର୍ଷକ : 'The End of Oil : On the Edge of A Perilous New World Order'। ବର୍ତ୍ତମାନ ପେଟ୍ରୋଲର ଯୁଗ ! ତୈଳ ଇନ୍ଧନ ବ୍ୟତୀତ ଖାଦ୍ୟ, ପାନୀୟ, ବସ୍ତ୍ର, ଔଷଧ, ଅକ୍ସିଜେନ୍ ଆଦିର ପରିବହନ ଅସମ୍ଭବ। ଯଦି ରାତାରାତି ତୈଳ ବ୍ୟବସାୟ ବଂଦ ହୋଇଯାଏ ତେବେ ବିଶ୍ୱ ଜନଜୀବନ ପ୍ରବାହ ହଠାତ୍ ହୋଇଯିବ ସ୍ଥିର।

ସାଉଦି ଆରବର କେନ୍ଦ୍ରସ୍ଥଳରେ ଯେଉଁଦିନ ପାଶ୍ଚାତ୍ୟ ତୈଳ କାର୍ଯ୍ୟନିର୍ବାହୀ ଅଧିକାରୀଙ୍କୁ ଆତଙ୍କବାଦୀ କଲେ ହତ୍ୟା, ସେଇ ଦିନଟି ଥିଲା ତୈଳ ସାମ୍ରାଜ୍ୟର ସ୍ମୃତି ଦିବସ। ସେହି ସପ୍ତାହ ଶେଷକୁ ତୈଳ ଦର ବ୍ୟାରେଲ୍ ପିଛା ବଢ଼ି ହୋଇଥିଲା ବୟାଳିଶ ଡଲାର୍। ତୈଳଦର ଇତିହାସରେ ସର୍ବୋଚ୍ଚ ବୃଦ୍ଧି ମୂଲ୍ୟ ! 'ଦି ଏଣ୍ଡ ଅଫ୍ ଅଏଲ୍' ଅର୍ଥ ନୁହେଁ ତେଲର ସମାପ୍ତି, ଏହାର ଅର୍ଥ ତୈଳ ବିତରଣ ସମାପ୍ତି। ସିଏ ସାଉଦି ଆରବ ଆଜାର ବୈଜାନ ପ୍ରଭୃତି ଗ୍ରସ୍ତକରି ଅନୁସନ୍ଧାନ କରିଛନ୍ତି ପାଞ୍ଚଶତ ବର୍ଷ ପର୍ଯ୍ୟନ୍ତ ତୈଳ-ସଭ୍ୟତାର ନାହିଁଅନ୍ତ। ମରୁଡ଼ି, ଗଣକ୍ଷୁଧା ଓ ନ୍ୟୁକ୍ଲିୟର ଯୁଦ୍ଧ ୨୦୨୦ ସୁଦ୍ଧା ବିଶ୍ୱ ସଭ୍ୟତାକୁ ବଦଳାଇ ଦେବ। ରବର୍ଟସ୍‌ଙ୍କ ଭବିଷ୍ୟତବାଣୀ ହେଲା, ମଧ୍ୟପ୍ରାଚ୍ୟରେ ଯିଏ ଶାସନ କରୁନା କାହିଁକି, ସିଏ ଇରାନ ହେଉ କି ହେଉ

ଇରାକ୍ ସିଏ ହେବ ସାଉଦି ଆରବୀୟ, ତା' ହାତରେ ରହିବ ବିଶ୍ୱ ତୈଳ ବିତରଣର ଉତ୍ଥାନ ଓ ପତନ।

ପୁନଶ୍ଚ ବିଂଶ ଶତକରେ ପରିବେଶ ପରିବର୍ତ୍ତନ ହେତୁ ସମୁଦ୍ର ସ୍ତର ଦଶଇଞ୍ଚ ଉତ୍ଥିତ ହୋଇନାହିଁ। କିନ୍ତୁ ଏକ ବିଂଶ ଶତକରେ ଏହା ଘଟିବ।

ସେହି ଜୁନ୍ ମାସରେ 'ଲିଟିଲ୍ ବ୍ରାଉନ୍' ପ୍ରକାଶନ ସଂସ୍ଥା ଚାରିଶତ ଚାଳିଶ ପୃଷ୍ଠାର ପ୍ରକାଶ କରିଛନ୍ତି ପୁସ୍ତକ 'କାଫ୍‌କା' Nichosas Murray ଏହାର ଲେଖକ, ବିଦଗ୍ଧ ପ୍ରେମିକ କାଫ୍‌କା ପ୍ରେମିକା ଫେଲିସୀ, ମିଲେନା ଓ ଡୋରା ପ୍ରଭୃତିଙ୍କ ନିକଟକୁ ଲେଖିଛନ୍ତି ଅସଂଖ୍ୟ ହୃଦୟ ଜଳା ଚିଠି। ଥରେ ସିଏ ବଂଧୁ Max Brod ଙ୍କୁ ପଚାରିଥିଲେ, ଝିଅଙ୍କ ସହିତ ମୋ ସଂପର୍କ କ'ଣ ପ୍ରକୃତରେ ମୋ ଲେଖାରେ ଲିଖିତ ହୋଇଛି ?

'ଦି ଟ୍ରାଏଲ୍', 'ଦି କାଷ୍ଟେଲ୍' ଓ 'ଆମେରିକା' ପ୍ରଭୃତି ତାଙ୍କ ଉପନ୍ୟାସ ପ୍ରକାଶ ପାଇଛି। ନିଜ ଲେଖା ସମ୍ବନ୍ଧରେ ସେହି କାଳଜୟୀ ସ୍ରଷ୍ଟା ଉଲ୍ଲେଖ କରିଛନ୍ତି, What I have written was written in a lukewarm bath. I have not experienced the eternal hell of real writer'। କାଫ୍‌କାଙ୍କ ବିସ୍ମୟକର ଚରିତ୍ର ସଂପର୍କରେ Murray ଲେଖିଛନ୍ତି 'Kafka hated to be happy, much preferring gloom, cosmic and antological' କୀୟର୍କୀଗାଡ୍‌ଙ୍କ ପରି ଖ୍ରୀଷ୍ଟିଆନ୍ ଧାର୍ମିକ ଧାରଣା ହାତରେ ମୁଁ ପଡିନାହିଁ, ମୁଁ ସଂଦେହରେ ଝୁଲୁଛି: I am an end or a beginning. କାଫ୍‌କାଙ୍କ ମତମାନଙ୍କ ସୁନ୍ଦର ତର୍ଜମା ହୋଇଛି।

୨୦୦୩ ମସିହା ଜୁନ୍ ମାସରେ ଆମେରିକାର 'ସିମନ ଏଣ୍ଡ୍ ଶୁଷ୍ଟର' ପ୍ରକାଶନ ସଂସ୍ଥା ପାଞ୍ଚଶତ ବାଷଠୀ ପୃଷ୍ଠାର ଖଣ୍ଡିଏ ପୁସ୍ତକ ପ୍ରକାଶ କରି ପୁସ୍ତକ ବିକ୍ରୟର ସମସ୍ତ ଇତିହାସ ବା ରେକର୍ଡ଼ କଲେ ଭଙ୍ଗ। ଏକ ନିୟୁତ ଖଣ୍ଡ ହୋଇଥିଲା ମୁଦ୍ରିତ ଏବଂ ପ୍ରକାଶନର ପ୍ରଥମ ଦିନ ଦୁଇ ଲକ୍ଷ ଖଣ୍ଡ ହୋଇଥିଲା ବିକ୍ରୀତ। ବହିଟିର ଶୀର୍ଷକ 'Living History' (ଜୀବନ୍ତ ଇତିହାସ)। ହିଲାରୀ ରୋଧମ କ୍ଲିଣ୍ଟନଙ୍କ ସ୍ମୃତିଲିପି। ଏହାର ପ୍ରଥମ ଏକଶତ ପୃଷ୍ଠା ତାଙ୍କ ଅଭିଭାବକ, ସ୍କୁଲ ଜୀବନ, ପ୍ରଣୟ ଓ ବିବାହ: Yaleର ଆଇନ୍ ବିଦ୍ୟାଳୟରେ ତାଙ୍କ ଉତ୍ତର ପ୍ରଗତିଶୀଳ ମନର ମଣିଷ ବିଲ୍‌ଙ୍କ ସହିତ ସାକ୍ଷାତ ପ୍ରଭୃତି ହୋଇଛି ବର୍ଣ୍ଣିତ। ୧୯୭୫ରେ ବିଲ୍‌ଙ୍କ ସହିତ ବିବାହ ଓ ଏହା ପାଂଚ ବର୍ଷ ପରେ ଏକମାତ୍ର କନ୍ୟା ଚେଲ୍‌ସା ଭିକ୍ଟୋରିଆ କ୍ଲିଣ୍ଟନ୍‌ର ଜନ୍ମ (୧୯୮୦) ଘଟିଛି। ହିଲାରୀଙ୍କ ବ୍ୟକ୍ତିତ୍ୱ ନାରୀ ଅଧିକାର, ମାନବିକ ଅଧିକାର ଓ

ବିଶ୍ୱମହିଳା ସମସ୍ୟା ଉପରେ କାର୍ଯ୍ୟକରିବା ହେତୁ ହୋଇଛି ଅଧିକ ବିକଶିତ। ଏହା ଥିଲା ହିଲାରୀଙ୍କ ମତ। କିନ୍ତୁ ପ୍ରକୃତ କଥା, ସିଏ ଆମେରିକା ରାଷ୍ଟ୍ରପତିଙ୍କ ପତ୍ନୀ ଓ ବିଲ୍‌ଙ୍କ ଅସଂଜତ ଯୌନ ଜୀବନ ସମ୍ବନ୍ଧରେ କ'ଣ ଲେଖିଛନ୍ତି ? ଏହି ଦୁଇ ଦୃଷ୍ଟି ବହି ପ୍ରସାରର ହେତୁ ହୋଇଛି।

ହିଲାରୀ ଲେଖିଛନ୍ତି, ବିଲ୍‌ଙ୍କ ଦ୍ୱାରା ଆମେରିକାର ଅର୍ଥନୈତିକ ଉନ୍ନତି, ଦଶନିୟୁତ ଚାକିରୀ ସୃଷ୍ଟି, ଟିକସ୍ ହ୍ରାସ, ସ୍ୱାସ୍ଥ୍ୟପାଇଁ ଆର୍ଥିକ ସହାୟତା ଏବଂ ଆହୁରି ଅନେକ ହିତକାରୀ ଯୋଜନା ପାଇଁ ସିଏ ହୋଇଛନ୍ତି ବହୁଜନପ୍ରିୟ। ଲିଟିଲ୍‌ରକ୍‌ର ଗୋଟିଏ ହୋଟେଲରେ ଜନୈକ ପାଉଲା ଜୋନ୍‌ସ୍‌କୁ ସିଏ ଦେଇଥିଲେ ଯୌନଯାତନା ବୋଲି ମହିଳା ଜଣକ ସାତଲକ୍ଷ ଡଲାର ଦାବୀକରି ଏକ ସିଭିଲ୍ ସୁଟ କରିଥିଲେ। ବିଲ୍‌ଙ୍କ ଓକିଲ ଦ୍ୱାରା ମୋକଦ୍ଦମାଟି ଖାରଜ ହୋଇ ଗଲାବେଳେ ସୁପ୍ରିମ୍‌କୋର୍ଟ ଏହା ଚାଲୁ ରଖିବାକୁ ଦେଲେ ନିର୍ଦ୍ଦେଶ। ଠିକ୍ ଏହାର ଚାରିଦିନ ପରେ ଗୋଟିଏ ନୂଆ ହୋହଲା ହେଲା ଆରମ୍ଭ, ମୋନିକା ଲୁଇନ୍‌ସ୍କି ସହିତ ବିଲ୍‌ଙ୍କ ଅନୈତିକ ସଂପର୍କ !

ସେଦିନ ୧୫ ଅଗଷ୍ଟ, ୧୯୯୮ ମସିହା। ହିଲାରୀଙ୍କ ଉପରେ ଯେମିତି ବୋମାଟିଏ ପଡିଲା ! ବିଲ୍ ତାଙ୍କୁ ଡାକି ସ୍ୱୀକାର କଲେ Monica Lewinskyଙ୍କ ସହିତ ରହିଛି ତାଙ୍କର 'inappropriate intimate relationship'।

ଏହି ବହିଟିରେ ଗୋଟିଏ ଅଧ୍ୟାୟ ରହିଛି 'silence is not spoken here'। ଅନୁସୂୟା ସେନ୍‌ଗୁପ୍ତ ନାମକ ଜଣେ କୃତୀ ଛାତ୍ରୀ କବିତାଟିଏ ଦେଇଥିଲା ଉପହାର। ସେଇ ଭାରତୀୟ ଯୁବତୀର ଅମ୍ଳାନ ଶବ୍ଦ ସ୍ମୃତିକୁ ମୁକ୍ତ ସ୍ୱରରେ ହିଲାରୀ ଉଚ୍ଚରଣ କରିଛନ୍ତି: 'Too many women/In too many countries / Speak the same Language / of silence.

ବିଶ୍ୱର ସର୍ବବୃହତ୍ ଧନୀରାଷ୍ଟ୍ରର ଫାଷ୍ଟ-ଲେଡ଼ୀ ହିଲାରୀ ପ୍ରକୃତରେ କେତେ ସ୍ପଷ୍ଟବାଦିନୀ ! ଆମ ନେତାଙ୍କୁ ବହିଖଣ୍ଡେ ଉପହାର ଦେଲେ ମଧ୍ୟ ପରବର୍ତ୍ତୀ ଥର ଭେଟ ବେଳେ ଚିହ୍ନିପାରନ୍ତିନି। ବହିର ଧାଡି କଥା କିଏ ପଚାରୁଛି ! ବହିଟି ନାଁ' କହିଲେ ସେମିତି ବହିଖଣ୍ଡେ ସିଏ ଦେଖିଛନ୍ତି  ବୋଲି ମନେପଡିବନି ! ହିଲାରୀ ବିଶ୍ୱର ଫାଷ୍ଟଲେଡୀ, ରୂପରେ ଖାଲି ନୁହନ୍ତି; ଶବ୍ଦବସାଣ କାରିଗରୀରେ ମଧ୍ୟ କୁଶଳୀ ! ତାଙ୍କର ଅସହାୟତାକୁ ସିଏ ଭବିଷ୍ୟତ ହାତରେ ଦେଇଛନ୍ତି ଟେକି 'What future has in store for her - or for anyone, for that matter - God knows.

'ଲିଭିଂ ହିଷ୍ଟ୍ରୀ' ପ୍ରକାଶିତ ହେବାର ଠିକ ଏକ ବର୍ଷ ପରେ, ଅର୍ଥାତ୍ ଜୁନ୍ ୨୨ ତାରିଖ ଦୁଇ ହଜାର ଚାରି ମସିହା, ପ୍ରକାଶିତ ହେଲା 'ହୁଚିନ୍‌ସନ୍' ପ୍ରକାଶକଙ୍କ ଦ୍ୱାରା 'ମାଇଁ ଲାଇଫ୍' ବିଲ୍ କ୍ଲିଣ୍ଟନ୍‌ଙ୍କ ଆତ୍ମଜୀବନୀ, ଏକ ହଜାର ଚବିଶ ପୃଷ୍ଠା। ପଚିଶ ଡଲାର ବହିଟା ! ଦେଢ଼ ନିୟୁତ ଖଣ୍ଡ ଛପା। ବହିଟି ପ୍ରକାଶିତ ହେବା ପୂର୍ବରୁ ସିନେମା ଟିକେଟ ପରି ବିକ୍ରୟ ହୋଇ ସାରିଥିଲା କେତେ ଲକ୍ଷ !

ପ୍ରକୃତରେ କ୍ଲିଣ୍ଟନ୍ ଦଂପତି ରାତାରାତି ହୋଇ ଯାଇଛନ୍ତି ବିଶ୍ୱର ସର୍ବାଧିକ ବିକ୍ରୀତ ପୁସ୍ତକର ଲେଖକ। କ୍ଲିଣ୍ଟନ୍‌ଙ୍କ ସ୍ମୃତି, ଅନୁଭବ ଓ ମୋନିକା ଉପରେ ପତ୍ର ପତ୍ରିକାଠୁ ଆରମ୍ଭ କରି ଟେଲିଭିଜନ୍ ପର୍ଯ୍ୟନ୍ତ ଗଣ ମାଧ୍ୟମ ପ୍ରସାର କଲାଣି ଅନେକ ତଥ୍ୟ। 'ଦି ହଣ୍ଟିଂ ଅଫ୍ ଦି ପ୍ରେସିଡେଣ୍ଟ' ଶୀର୍ଷକ ହଲିଉଡ୍ ଆରମ୍ଭ କଲାଣି ଗୋଟିଏ ଚଳଚିତ୍ର। କ୍ଲିଣ୍ଟନ୍‌ଙ୍କ ଜୀବନର କୃଷ୍ଣ ଅଧ୍ୟାୟ (dark chapters) ଉପରେ ଆଧାରିତ ଏବଂ 'ମାଇଁ ଲାଇଫ'ରୁ ସଂଗୃହୀତ ତଥ୍ୟ। ଏହା ଏକ ବିରାଟ ଆତ୍ମଜୀବନୀ। ଏହାର ପ୍ରଥମ ଦୁଇଶତ ପୃଷ୍ଠା ପଢ଼ି ଲେଖିଛନ୍ତି ଆନ୍ଥୋନୀ ହାୱାର୍ଡୀ ... 'the former president of the United State has always known how to tell a story; and in spining the tale of his own upbringing as a poor boy in the poor state of Arkansas he has found a rich seam.' ବୋଲି କରିଛନ୍ତି ଉଲ୍ଲେଖ। ବିଲ୍ କିଣ୍ଟନ୍ ଭଲ ବକ୍ତା ଓ ନେତା। ଏକାଧାରରେ ହୋଇଗଲେ ଗାଳ୍ପିକ। ଗପ କେମିତି କହିବାକୁ ହୁଏ ବା କେମିତି କହିଲେ କଥା ସୁଂଦର ହୁଏ, ତାଙ୍କ ସେହି ମନ ଓ ମର୍ମ ସ୍ପର୍ଶ କଲା ଭଳି କଥା କହିବାର ଦଲିଲ 'ମାଇଁ ଲାଇଫ୍'। 'ମୋ ଜୀବନ' ! ସାଧାରଣରୁ ଅସାଧାରଣ ହେବାର କୃତିତ୍ୱ ସିଏ ଉପସ୍ଥାପିତ କରିଛନ୍ତି।

ଆମେରିକାର ଖୁବ୍ ଲୋକପ୍ରିୟ ପୂର୍ବତନ ରାଷ୍ଟ୍ରପତି ହେତୁ ବିଲ୍‌ଙ୍କ ବହୁ ପ୍ରଶଂସକ ଏହି ବହିଟି କ୍ରୟ କରିଛନ୍ତି। ତେଣୁ ତା ବିକ୍ରୀ ବିଶ୍ୱର ସର୍ବାଧିକ ବିକ୍ରୀତ ପୁସ୍ତକ ବାଇବେଲ ତଳକୁ ରହିଛି। ଇଲୋକ୍‌ଟ୍ରୋନିକ୍ସ ମିଡିଆ ମନୋରଂଜନ ପ୍ରାବଲ୍ୟ ସତ୍ତ୍ୱେ ପୁସ୍ତକ ବିକ୍ରୟର ପ୍ରାଧାନ୍ୟ ବିଶ୍ୱ ବଜାରରେ ରହିଛି ଅତିବିସ୍ମୟକର। ପରିବର୍ତ୍ତିତ ସଂସ୍କୃତିଶୀଳ ତଥା ନୂଆ ବୁନିଆଦି ସଂପନ୍ନ ଲୋକେ ଏବେ ବି ପୁସ୍ତକ ସଂସ୍କୃତି ପ୍ରତି ଅଛନ୍ତି ଆକୃଷ୍ଟ। ପୁସ୍ତକ ବହୁ ଯାତନାରେ ରକ୍ତାକ୍ତ ସେମାନଙ୍କ ମନ ପାଇଁ ଯୋଗାଇ ପାରିଛି ଅନ୍ନ ! ସାହିତ୍ୟ ପାଇଁ ମଣିଷର ରହିଛି ଉତ୍କଣ୍ଠା ଓ ଆଶା। ମଣିଷ ସାହିତ୍ୟ ପାଇଁ ଅଭୀପ୍ସିତ ଓ ଅଭିଳଷିତ। କେବଳ ସାହିତ୍ୟ ହିଁ ଉଦିତ କରାଇପାରେ ତମସାଚ୍ଛନ୍ନ

ମନୁଷ୍ୟ ଭିତରେ ବିବେକ ସୂର୍ଯ୍ୟ ଏବଂ ଦୀପ୍ତ କରିପାରେ ଜ୍ଞାନ ଜ୍ୟୋତି। ଅମାନବିକତାର ମଇଳାକୁ କରି ଦେଇଥାଏ ସଫା। ଭଲ କ'ଣ ଓ ମଂଦ କ'ଣ ତାହା ବୁଝାଇ ଦେଇଥାଏ ପୁସ୍ତକ। ସେଇଥି ପାଇଁ 'ମାଇଁ ଲାଇଫ୍'ର ବହୁ ସୃଷ୍ଟି ହୋଇଛନ୍ତି ପାଠକ।

ଆନ୍ତର୍ଜାତିକ ସାହିତ୍ୟ ବଜାରରେ ଭାରତୀୟ ଲେଖକଙ୍କ ପତିଆରା ବହୁ ବର୍ଷ ତଳୁ ରହିଆସିଛି। ଭାରତୀୟ ନୋବେଲ୍ ପୁରସ୍କାର ବିଜେତା ରବୀନ୍ଦ୍ର ନାଥଙ୍କ ପରଠାରୁ ବିଶ୍ୱର ଦୃଷ୍ଟିକୋଣ ଭାରତୀୟ ସାହିତ୍ୟ ପ୍ରତି ଖୁବ୍ ସମ୍ମାନଜନକ ହୋଇ ବଦଳିଛି। ଭାରତୀୟ ବଂଶୋଦ୍‌ଭବ ତ୍ରିନିନାଦ ଜନ୍ମିତ ବିଦ୍ୟାସୁରଜ ନାଇପାଲ ସାହିତ୍ୟ ପାଇଁ ବିଶ୍ୱର ଶ୍ରେଷ୍ଠ ମର୍ଯ୍ୟାଦା ହାସଲ କରିଛନ୍ତି। ସଲମାନ୍ ରୁସିଦ, ଉପମନ୍ୟୁ ଚାଟାର୍ଜୀ, ଅମିତାଭ ଘୋଷ, ବିକ୍ରମ ସେଠ, ଅରୁନ୍ଧତୀ ରାୟ ପ୍ରଭୃତି ନୂତନ ପିଢ଼ିର ପ୍ରସିଦ୍ଧ ସାହିତ୍ୟ ଶିଳ୍ପୀ। ଏମାନଙ୍କ ପରବର୍ତ୍ତୀ ପ୍ରଜ୍ଞା ଓ ପ୍ରତିଭା ରୂପେ ସାମନାକୁ ଆସିଛନ୍ତି ଝୁଂପା ଲାହିରି, ଯାହାଙ୍କ ଗଳ୍ପ ସଂକଳନ 'Interpreter of maladies' କୁ ମିଳିଛି ବିଶ୍ୱର ସଂଭ୍ରାଂତ 'Pulitzer' ପ୍ରାଇଜ୍; ପଙ୍କଜ ମିଶ୍ର, ଯାହାଙ୍କ ବହୁ ବିଖ୍ୟାତ ରଚନା 'The Romantics', ରାଜକମଲ ଝା, ଯିଏ ଲେଖିଛନ୍ତି 'The Blue Bedspread' ଏବଂ ସମ୍ରାଟ ଉପାଧ୍ୟାୟ ଯାହାଙ୍କ ସର୍ଜନା 'Arresting God in Kathmandu' ପ୍ରଭୃତି। ଏମାନଙ୍କ ମଧ୍ୟରେ ଦୁଇ ହଜାର ଦୁଇ ମସିହାରେ ଜବରଦସ୍ତ ଆସନଟିଏ ଅଧିକାର କରିଛନ୍ତି ଅଖିଳ ଶର୍ମା ନାମକ ତିରିଶବର୍ଷୀୟ ଯୁବକ। ତାଙ୍କ ଉପନ୍ୟାସ 'An Obedient Father' କୁ ପ୍ରାପ୍ତ ହୋଇଛି ଆମେରିକାର 'Whiting writers Award, ଯାହାର ମୂଲ୍ୟ ୩୫ ହଜାର ଡଲାର; ହେମିଂୱେ ଫାଉଣ୍ଡେସନ୍ ପୁରସ୍କାର, PEN ସମ୍ମାନ ଏବଂ ଏସିଆନ୍ ଆମେରିକାନ ରାଇଟାର୍ସ ୱାର୍କସପ୍ ସମ୍ମାନ ପ୍ରଭୃତି। ଦି ନିୟୁର୍କ ଟାଇମ୍ସ ଘୋଷଣା କରିଛି ବର୍ଷର 'Notable Book' ଏହି ପୁସ୍ତକ ଏବଂ 'ୟୁ ଏସ ଏ ଟୁଡ଼େ'ର ଟପ୍ ଟେନ୍ ବହି ମଧ୍ୟରେ ବହିଟି ରହିଛି ବର୍ଷ (୨୦୦୨) ତମାମ।

'ଆନ୍ ଓବିଡ଼ିଏଣ୍ଟ ଫାଦର'ର ମୁଖ୍ୟ ଚରିତ୍ର' ରାମ କରନ୍' ଜଣେ ଦିଲ୍ଲୀ ସ୍ତରୀୟ ବିଦ୍ୟାଳୟର ନିରୀକ୍ଷକ। କଂଗ୍ରେସ ଓ ବିଜେପି ଉଭୟ ଶାସନ ସମୟରେ ସିଏ ଥିଲେ ଦୁର୍ନୀତିର ଗୋଟିଏ ଚେମିନୀ। ତାଙ୍କର ବାରବର୍ଷର ଥିଲା ଗୋଟିଏ ଝିଅ ଅନୀତା। ପ୍ରତିରାତି ମାନସିକ ବିଷାଦ ଗ୍ରସ୍ତ ନିଶାସକ୍ତ ସେହି ଲୋକଟି ପୁନଃ ପୁନଃ ନିଜ ବାର ବର୍ଷିୟା ବାଳିକା କନ୍ୟାଟିକୁ କରୁଥିଲା ଧର୍ଷଣ। ଉପନ୍ୟାସର ବକ୍ତା ଚରିତ୍ର ନିଜେ ରାମକରନ୍। ତାର ବିଷାଦ ଓ ଅସହାୟତାର କରିଛି ବିସ୍ତୃତ ବର୍ଣ୍ଣନା। ସମୟ ବଢ଼ିଛି। ଅନୀତା ବିବାହ କରିଛି। ଝିଅ

ଗୋଟିଏ ମଧ୍ୟ ଜନ୍ମ ଦେଇଛି। ତା ସୌଭାଗ୍ୟକୁ ଶିକାର କରିଛି ସମୟ। ଦିନେ ସିଏ ହୋଇଛି ବୈଧବ୍ୟପୀଡିତା। ତା କନ୍ୟାର ବୟସ ବଢ଼ିଛି। ପାରିବାରିକ କଳହ ହେତୁ ପଳାଇ ଆସିଛି ପିତା ରାମ କରନ୍ ଘରକୁ । ଗୋଟିଏ ରାତି, ରାମକରନ୍ ମାତାଲ ଅବସ୍ଥାରେ ଅଛି, ଅନୀତା ଆବିଷ୍କାର କରୁଛି ତା ଝିଅକୁ ରାମକରନ୍ ଠିକ୍ ସେଇଆ କରିବାକୁ ଆରମ୍ଭ କରିଛି, ଯାହା ତା' ପ୍ରତି ତା ସମଗ୍ର କିଶୋରୀ ଜୀବନ ଯାକ କରିଥିଲା ! ଅନିତା ହୋଇଛି ପ୍ରତିଶୋଧପରାୟଣା। ଡଷ୍ଟୟିଭସ୍କିଙ୍କ 'କ୍ରାଇମ୍ ଏଣ୍ଡ ପନିଶମେଣ୍ଟ' ଉପନ୍ୟାସପରି ଲୋକଟିକୁ ଛାଡି ଦିଆଯାଇଛି ଅନୁଶୋଚନାର ଅନ୍ଧକୂପ ମଧ୍ୟରେ। ମୋଟ କଥା- ସମାଜରେ ବଢ଼ି ଚାଲିଥିବା କୁତ୍ସିତ ଶିଶୁ ଯୌନ ନିର୍ଯ୍ୟାତନା ଉପରେ ହୋଇଛି ଉପନ୍ୟାସଟି ରଚିତ। ନିର୍ଯ୍ୟାତନାକାରୀର ବିଷାଦ, ହତାଶା ଓ ଅସହାୟତାର ସୁନ୍ଦର ମନୋସ୍ତାତ୍ତ୍ୱିକ ବିଶ୍ଳେଷଣ ସହିତ ତାକୁ କରାଯାଇଛି ଦଣ୍ଡିତ।

ସଲମାନ୍ ରୁସିଦ୍‌ଙ୍କ 'ଇମାଜିନାରୀ ହୋମ୍‌ଲ୍ୟାଣ୍ଡ' ଶୀର୍ଷକ ବହିଟିଏ ହୋଇଛି ପ୍ରକାଶିତ। ଲେଖକଙ୍କ ବାସଭୂମି ଓ ଉପୁଜିଥିବା ସମସ୍ୟାର ସମୀକରଣରେ ପୂର୍ଣ୍ଣ ବହିଟି ! ସଲମାନ ରୁସିଦ୍‌ଙ୍କ ଜଣେ ପ୍ରିୟ ପ୍ରଶଂସକ ହରି କୁଂଜ୍ରୁ ! ଲଣ୍ଡନ ନିବାସୀ ଏହି ଭାରତୀୟ ଯୁବଲେଖକ ତାଙ୍କ ପ୍ରଥମ ଉପନ୍ୟାସ 'The Impressionist' ପାଇଁ ପ୍ରାପ୍ତ ହୋଇଛନ୍ତି ଆନ୍ତର୍ଜାତିକ ବହୁ ପ୍ରସିଦ୍ଧି। ଲକ୍ଷ୍ୟହୀନ ଭ୍ରମଣ, କୌତୁହଳପୂର୍ଣ୍ଣ ଓ ଅତିରିକ୍ତ ବୋଧ ହେଉଥିବା ଏହି ଉପନ୍ୟାସର ବିଶୃଙ୍ଖଳିତ ଗଳ୍ପରେ ରହିଛି ଆଂଗ୍ଲୋ-ଭାରତୀୟଙ୍କ ପରିଚୟ ଅନ୍ୱେଷଣ ! ଏହାର ମୁଖ୍ୟ ଚରିତ୍ର ପ୍ରାଣନାଥ ଏବଂ କୁଂଜ୍ରୁଙ୍କ ସଦ୍ୟ ପ୍ରକାଶିତ 'Transmission' ର ପ୍ରଧାନ ଚରିତ୍ର ଅର୍ଜୁନ ମେହେଟା, ଦୁହେଁ ଅର୍ନ୍ତଦ୍ୱନ୍ଦ୍ୱରେ ସନ୍ତୁଳିତ। ଗୋଟିଏ ସାମାଜିକ ପରିବେଶ ମଧ୍ୟରେ ସେମାନେ ନାହାନ୍ତି ! ବହୁବିଧ ସଂସ୍କୃତିର ପରୀକ୍ଷିତ ସମସ୍ୟା ମଧ୍ୟରେ ସେମାନେ ଖଣ୍ଡବିଖଣ୍ଡିତ। ଜଗତିକରଣ ସଂସ୍କୃତି ଓ ସଭ୍ୟତାର ଶିକାର ହୋଇଛନ୍ତି ବିଶ୍ୱ-ମାନବ ବା ବିଶ୍ୱ ନାଗରିକ। ଚରିତ୍ରମାନେ ବୋଧ ହୋଇଛନ୍ତି ବର୍ଣ୍ଣନା ଚାତୁରୀ ଦ୍ୱାରା ଅଧିକ ବାସ୍ତବ। କଂପ୍ୟୁଟର ଓ ରୋମାନ୍ସ ପରସ୍ପର ବିରୋଧୀ ଦୁଇ ପ୍ରଥା ଭିତରେ ଚରିତ୍ର ଖୋଜୁଛି ଗୋଟିଏ ନୂଆ ରାସ୍ତା !

ନିଜେ କୁଂଜ୍ରୁ ଜଣେ ସଫ୍‌ଟଓ୍ୱୟାର ଇଂଜିନିୟର Silicon Valley ରେ କରୁଛନ୍ତି ଭ୍ରମଣ। ମନସ୍ତାତ୍ତ୍ୱିକ ବାସ୍ତବବାଦ ବିଭବରେ ତାଙ୍କ ଉପନ୍ୟାସ ସମୃଦ୍ଧ। ତାଙ୍କୁ Zadie Smith ଓ 'ଦି ବ୍ରିକ୍ ଲେନ୍'ର ଔପନ୍ୟାସିକା ମୋନିକା ଅଲ୍ଲୀଙ୍କ ସହିତ ସମୀକ୍ଷକ କରିଛନ୍ତି ତୁଳନା। ପ୍ରାଣନାଥ ଓ ଅର୍ଜୁନଙ୍କର ଗୋଟିଏ କୃତ୍ରିମ ଧାରଣା ଥିଲା ଭବିଷ୍ୟତ

ଜୀବନରେ ସେମାନେ ହେବେ କ'ଣ ! ସେମାନଙ୍କ ଧାରଣାକୁ ସେମାନେ ପରିବର୍ତ୍ତିତ କରୁଛନ୍ତି, ଆକୃତିହୀନ ସଂସାର ସହିତ ଖାପ ଖୁଆଇବାକୁ ଉଦ୍ୟମ ବଲାବେଳେ ସଂସାର ବଦଳି ଯାଉଛି ! ସେମାନଙ୍କ ପରିବର୍ତ୍ତିତ ଯଥାଯଥ ଧାରଣା ଆଉ ମେଳ ଖାଉନାହିଁ ! ଏଇଠି ସୃଷ୍ଟି ହୋଇଛି ସେମାନଙ୍କ ଅସୁବିଧା ! ନିଜ ଚରିତ୍ରକୁ ବୁଝାଇବାକୁ ଯାଇ କହନ୍ତି କୁଂଜୁ: What do you with the man who does bad things for good reason ? How do you approach such a character in fiction?

କୁଂଜୁ ଚେଷ୍ଟା କରିଛନ୍ତି କହିବାକୁ ଜଣେ ନିଜ ଭୃତ୍ୟକୁ ପିଟୁଥିବା ଓ ଜାତିପ୍ରଥା ନେଇ କହୁଥିବା ସାମ୍ରାଜ୍ୟବାଦୀ ବ୍ୟକ୍ତିର ବ୍ୟଙ୍ଗଚିତ୍ର ରଚନା ସହଜ। କିନ୍ତୁ ବହୁଜଟିଳ ଚରିତ୍ର ଅଛନ୍ତି, ସେମାନଙ୍କୁ ଉପସ୍ଥାପନ ଅସାଧ୍ୟ। ସେମାନଙ୍କ ମନସ୍ତତ୍ତ୍ୱ ଅଧ୍ୟୟନ ଜଟିଳ। ସେହିପରି ଚରିତ୍ର ମାମୁଲି ମଣିଷମାନଙ୍କ ଭିତରୁ ସିଏ ତାଙ୍କ ଉପନ୍ୟାସ ଫର୍ଦ୍ଦକୁ ଆଣିଛନ୍ତି। ସେହି ଜଟିଳ ଚରିତ୍ରମାନଙ୍କୁ ହୃଦୟଙ୍ଗମ କରାଇବାକୁ ସିଏ ଇତିହାସ ପୃଷ୍ଠାକୁ ଆଣିଛନ୍ତି ସାମ୍ନାକୁ : 'We know there were General Dyers, but what do you do with lady Mount Batten? What a Rajah who doesn't feed his people and spends all his money on jewels? ନୈତିକ ଜଟିଳ ପରିସ୍ଥିତି ସାନ୍ତ୍ୱନାରହିତ ବର୍ଣ୍ଣନା ହୋଇ ତାଙ୍କ ଉପନ୍ୟାସରେ ବ୍ୟାପିଛି। କଂପ୍ୟୁଟରରେ ଅରକ୍ଷିତ ଗୋଟିଏ ଫାଇଲ୍‌ପରି ତାଙ୍କ ଉପନ୍ୟାସଟି। ନେଟ୍‌ୱାର୍କରେ ବୋଝେଇ ସଂସାର ଦୃଷ୍ଟାନ୍ତ ରୂପେ ହଠାତ୍ କେମିତି ବଦଳି ଚାଲିଛି ! ତାକୁ ଗୋଟେ କଂପ୍ୟୁଟର ଧରି ରଖିବ କେମିତି ? ଯେଣୁ ସେହି ପରିବର୍ତ୍ତନର ଫାଇଲ୍‌ଟି ତହିଁରେ ଅନ୍‌ସେଭ୍ ହୋଇଛି !! ବା ଅରକ୍ଷିତ ଅଛି !

ନେଟ୍‌ୱାର୍କ ଓ ଇମୋସନ୍‌କୁ ଫେଣ୍ଟି ହରି କୁଂଜୁ ତାଙ୍କ ଉପନ୍ୟାସ କରିଛନ୍ତି ସୃଷ୍ଟି। ବିଶ୍ୱାୟନ ପରିଣାମ ତାଙ୍କ ଉପନ୍ୟାସରୁ ବାରି ହୋଇ ଉଠିଚି। ବିଜ୍ଞାନ, ବାଣିଜ୍ୟ ଓ କଳାର ନୂତନ ଏକ ସମିଶ୍ରଣ ରୂପ ତାଙ୍କ ସର୍ଜନା ଧାରଣ କରିଛି। ତେଣୁ ବହୁବିଧ ପାଠକଙ୍କ ଠାରୁ ଏହି ଯୁବ ଔପନ୍ୟାସିକ ଆଦୃତି ହାସଲ କରିଛନ୍ତି।

।। ଦୁଇ ।।

୧୯୧୫ମସିହା, ସେତେବେଳେ ତାଙ୍କର ବୟସ ୩୩। ସିଏ ଏବଂ ତାଙ୍କ ସ୍ୱାମୀ ଲିଓନାର୍ଡ୍ ସ୍ଥିର କଲେ କରିବେ ତିନୋଟି ଜିନିଷ। ଲଣ୍ଡନ ବାହାରେ ଲିଜ୍‌ରେ ନେବେ ଗୋଟିଏ ଘର, ଗୋଟିଏ ଛାପାଖାନା କରିବେ ଏବଂ ରଖିବେ ବା କିଣିବେ

ଗୋଟିଏ କୁକୁର (Bulldog)। ଛୋଟ ଛୋଟ ଲୋମ, ବଡ଼ ଚେପ୍‌ଟା ମୁହଁ, ମୋଟା ହନୁହାଡ଼ ଓ ଛୋଟଗୋଡ଼ ଥିବା ଟାଣୁଆ କୁକୁର।

ସେହି ଛୋଟ ଦଂପତି ଘରଟେ ପାଇଲେ, ଛାପାଖାନା ବସାଇଲେ କିନ୍ତୁ ଶେଷପର୍ଯ୍ୟନ୍ତ ସେମାନଙ୍କୁ ମିଳିନଥିଲା କୁକୁରଟି ! ତାଙ୍କ ଘର ନାମ Hogarth House ଏବଂ ଛାପାଖାନା ନାମ Hogarth Press। ଯେଉଁ ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା ଗତ ଶତକର ମହାନ କବି ଟି.ଏସ୍.ଇଲିୟଟ୍‌ଙ୍କ ବହି, ପ୍ରଖ୍ୟାତ ଗାଳ୍ପିକା କାଥେରିନ୍ ମାନ୍ସଫିଲ୍‌ଡଙ୍କ ପୁସ୍ତକ ଏବଂ ଉନବିଂଶ ଶତକର ଗଦ୍ୟ ସାହିତ୍ୟକୁ ନୂଆ ଚେହେରା ଦେଇଥିବା ଔପନ୍ୟାସିକା ଭର୍ଜିନା ଉଲ୍‌ଫ୍‌ଙ୍କ ବହିତକ।

'.... the two live in harmony together, spiritually co-oprating' ସୁଖୀ ଦମ୍ପତି ପବିତ୍ର ଭାବେ ବଂଚୁଥିଲେ ବୋଲି ଭର୍ଜିନା ଉଲ୍ଲେଖ କରିଛନ୍ତି। ସେହି ତେତିଶ ବର୍ଷିୟା ମହିଳା ଜଣକ ସାର୍ ଲେସ୍‌ଲୀ ଷ୍ଟିଫେନ୍‌ଙ୍କ କନ୍ୟା, ଯିଏ ୧୯୪୧ରେ ସଂସାରକୁ ପର କରିଛନ୍ତି। ସେହି ମହାନ ମହିଳା ଅନ୍ୟ କେହି ନୁହଁନ୍ତି, ନିଜେ ଔପନ୍ୟାସିକା ଶ୍ରୀମତୀ ଭର୍ଜିନା ଉଲ୍‌ଫ। ଯିଏ ଶୈଳୀର ଏକ୍ସପରିମେଣ୍ଟ ପାଇଁ ରଚନା କରିଥିଲେ 'The Waves', ନିଜର ଷ୍ଟାଇଲିଷ୍ଟ୍ ବହି। ଏହା ପରେ ବହୁ ଚର୍ଚ୍ଚିତ 'ଟୁ ଦ ଲାଇଟ୍ ହାଉସ୍' ଏବଂ 'ମିସ୍ରେସ୍ ଡାଲୋୱେ'।

ଅଗଷ୍ଟ ୧୯୧୨, ଭର୍ଜିନାଙ୍କ ବୟସ ୩୦। ଲେଖକ ଲିଓନାର୍ଡ଼କୁ ବିବାହ ହୋଇଥାନ୍ତି। ଲିଓନାର୍ଡ଼ ଉଜ୍ଜ୍ୱଳବର୍ଣ୍ଣର ବ୍ୟକ୍ତି। ଜାତିରେ ୟୁହିଦୀ ଏବଂ ବୃତ୍ତିରେ ରାଜନୀତି। ଖ୍ରୀଷ୍ଟିଆନ୍ ଭର୍ଜିନା ତାଙ୍କ ସହିତ ସୁନ୍ଦର ଭାବେ ଖଂଜି ହୋଇ ଯାଇଛନ୍ତି। ନିଜର ମଧୁଶଯ୍ୟା ରାତ୍ରିରେ ଜଣେ ବାନ୍ଧବୀକୁ ଲେଖିଛନ୍ତି ଖଣ୍ଡିଏ ଚିଠି: ତୁମେ କାହିଁକି ଭାବୁଚ, ଲୋକେ ବିବାହ ଓ ସହବାସ ବିଷୟରେ ଅନାବଶ୍ୟକ ଉଦ୍‌ବେଗ କରନ୍ତି ପ୍ରକାଶ ? ମୁଁ ଚରମ ତୃପ୍ତି ପାଇଛି। ଅସୀମ ମାତ୍ରାରେ ଅତିରଂଜିତ କରି ଲୋକେ କେବଳ ଗପିଥାନ୍ତି।

ପୁରୁଷକୁ ଆକ୍ସିଡେଣ୍ଟରେ ଲାଂଜ ଛିଡ଼ିଯାଇଥିବା ଗୋଟିଏ ବିଲେଇ ବୋଲି ଭାବନ୍ତି ଏବଂ ଭାବନ୍ତି ଏକ ବେଆଡ଼ା ଜୀବ: 'It is a queer animal, quaint rather than beautiful' ସୁନ୍ଦର ନୁହେଁ, ବଂର ଅଦ୍ଭୁତ। ଫିକ୍ସନ ବା ଉପନ୍ୟାସ ସମ୍ବନ୍ଧରେ ତାଙ୍କର ମତ ହେଲା: Fiction must stick to fact, and the truer the facts the better the fiction- so we are told' (A room of one's

own/ Verginia Woolf, page15) । ଜୀବନୀ ରଚନା ସଂପର୍କରେ ତାଙ୍କର ମଂତବ୍ୟ: 'People write what they call 'lives' of other people, that this they collect a number of events, and leave the person to whom it happened unknown' (Verginia Woolf: An Inner life / Julia Briggs) । ଗୁଡ଼ିଏ ଘଟଣା ସଂଗ୍ରହ କରାଯାଉଛି,ଲେଖାଯାଇଛି କିନ୍ତୁ ଯାହାଙ୍କ ଉପରେ ଲେଖାଯାଉଛି, ସିଏ ରହିଯାଉଛନ୍ତି ଅଜଣା।

୨୦୦୩ରେ ଗାବ୍ରିଏଲ୍ ଗର୍ସିଆ ମାର୍କ୍ୱେଜ ଏକ ଦୀର୍ଘତମ କ୍ଷୁଦ୍ରଗଳ୍ପ ପ୍ରକାଶିତ କଲେ 'Living to tell the tale'। ଖଣ୍ଡିଏ ଚିରକାଳୀନ ସଂସ୍କରଣ। ପ୍ରକୃତରେ ଜଣେ ଲେଖକ ବଂଚିଥାଏ କହିବାକୁ/ଲେଖିବାକୁ ଗପ। ଲେଖକ ଲେଖିବ ନାହିଁତ କ'ଣ ଆଉ କରିବ? ୧୯୮୮ରେ ଚମକାଇଲା ଭଳି ଖଣ୍ଡିଏ ବହି ଲେଖିଥିଲେ ମାର୍କ୍ୱେଜ୍, 'Love in the time of Cholera' । ଏହି ବହିର ସ୍ମୃତି ପାଠକଙ୍କ ମନଭୂମିରେ ଧୂଆଁଳିଆ ହେବା ବେଳେ ସିଏ ମାର୍କେଟକୁ ଦେଲେ ଅନ୍ୟଖଣ୍ଡିଏ ସ୍ମୃତି: Memories of my Melancholy Whores! ମୂଳ ଲେଖାକୁ ଇଂରାଜୀ ଭାଷାନ୍ତରିତ କରିଥିଲେ Edith Grossman ଏବଂ ଏହାକୁ ପ୍ରକାଶ କରିଥିଲେ ଆଲ୍‌ଫ୍ରେଡ଼୍ ଏ.ନୋଫ୍। ମାତ୍ର ଏକଶତ ପନ୍ଦର ପୃଷ୍ଠା କିନ୍ତୁ ବହିଟିରେ ଥିଲା ଚମକ। ନବେ ବର୍ଷ ବୟସ୍କ ପ୍ରଫେସର ଗ୍ଲିମି ହିଲ୍ସ, ରହୁଥାନ୍ତି ନିଜ ପିତା-ମାତାଙ୍କ ବା ପୂର୍ବପୁରୁଷଙ୍କ ବାସଗୃହରେ। ତାଙ୍କ ଉଦ୍ଦେଶ୍ୟ ଥିଲା, ଯେଉଁ ଘରେ ଯେଉଁ ଶଯ୍ୟାରେ ମୋ ଜନ୍ମ, ସେଇ ଘରେ ସେଇ ଶଯ୍ୟାରେ ମୁଁ ମରିବି। ସିଏ ଶିଖୁଥିଲେ ସ୍ପାନିସ୍ ଓ ଲାଟିନ୍ ଗ୍ରାମାର୍। ଯଦିଓ ଚାଳିଶ ବର୍ଷ ଧରି କେବ୍ଲ ସଂସ୍କରଣ 'El Diario La Paz' ରେ ଥିଲେ ସେବା ଯୁକ୍ତ। ଦେଶୀ ଗଦ୍ୟର କରୁଥିଲେ ନବଗଠନ।

ନବେ ବର୍ଷ ବୟସ ପାଳନ ଉତ୍ସବ କରିବେ ବୋଲି ସିଏ ସ୍ଥିର କଲେ। ଗୋଟିଏ ଚଉଦ ବର୍ଷ ବୟସ୍କା କୁମାରୀ ଗଣିକା ସହିତ ସିଏ ସହବାସ କରି ପାଳନ କରିବେ ତାଙ୍କର ଜନ୍ମଦିନ। ତାଙ୍କ ପ୍ରିୟ ଗଣିକାଳୟର ପରିଚାଳିକାକୁ ଦେଲେ ବରାଦ। ତାଙ୍କୁ ବରାଦ ମୁତାବକ ମିଳିଗଲା ଜଣେ ବାଳିକା। 'Delgadina' ତା ନାଁ। ତାର ଦୁଃଖ, ଭୁଲରାସ୍ତାରେ ଜୀବନ ତାକୁ ଚଲାଉଛି ପଥ।

ଏହି ନବେ ବର୍ଷ ଭିତରେ ତାଙ୍କର କେହି ଜଣେ ଘନିଷ୍ଠ ବଂଧୁ ନଥିଲେ। ସିଏ ପାଉଥିଲେ ପେନ୍‌ସନ୍ ଏବଂ ଗୋଟିଏ ସାପ୍ତାହିକ ସ୍ତମ୍ଭ ଲେଖି ଚଳିବାକୁ କିଛି ଅର୍ଥ।

ପୂର୍ବରୁ, ଯେତେବେଳେ ତାଙ୍କ ବୟସ କୋଡ଼ିଏ, ସିଏ ଗୋଟିଏ ଲିଷ୍ଟ୍ କରିଚାଲିଥିଲେ; ନାମ, ବୟସ, ସ୍ଥାନ, ସଂଖ୍ୟା, ପରିବେଶ ଏବଂ ଲଭ୍‌ମେକିଂ ଷ୍ଟାଇଲ୍, ତେପନ ବର୍ଷ ବୟସ୍କ ହେବା ପର୍ଯ୍ୟନ୍ତ, ମୋଟ୍ ୫୧୪ଜଣ ମହିଳାଙ୍କ ସହିତ।

ଯେତେବେଳେ ଜୀବନରେ ପ୍ରଥମ ଥର ପ୍ରଫେସର ଗ୍ଲୁମିହିଲସ୍ ଭେଟିଲେ ଡେଲ୍‌ଗାଡ଼ିନାକୁ ପଡ଼ିଗଲେ ପ୍ରେମରେ। ଶଯ୍ୟାରେ ପ୍ରଥମରାତ୍ରି, ଦ୍ୱିତୀୟରାତ୍ରି, କିମ୍ବା ତା'ପର କୌଣସି ରାତ୍ରୀ ସିଏ ତାକୁ ଛୁଇଁ ନାହାନ୍ତି। ଯାହା ଚାହିଁଥିଲେ ତାହା କରି ପାରିଥାନ୍ତେ। ମାତ୍ର ସିଏ କଳ୍ପନା/ ଭାବନାରେ ବୁଡ଼ି ରହିଥିଲେ। ତାଙ୍କୁ ଈର୍ଷାନ୍ୱିତ କରିଛି, ଧାରଣା ଦେଇଛି ଯେ ପୂର୍ବରୁ ଅନ୍ୟପୁରୁଷଙ୍କ ସହିତ ରହିଚି। ପ୍ଲଟର ବର୍ଣ୍ଣନାକାରୀ କଳ୍ପନା କରିଛି, ଡେଲ୍‌ଗାଡ଼ିନା ତାଙ୍କ ଘରକୁ ଯାଇଛି ଏବଂ ପ୍ରାତଃ ଜଳଖିଆ ପ୍ରସ୍ତୁତ କରିଛି। ସିଏ ତାକୁ ପୁଷ୍ପ ଓ ଉପହାରମାନ ଦେଇ ଫସାଇବାକୁ ଚେଷ୍ଟା କରିଛନ୍ତି ଏବଂ ସିଏ ନିଦ୍ରା ଯିବା ପର୍ଯ୍ୟନ୍ତ ପଢ଼ନ୍ତି The little prince, Perrault's Tales, Sacred History ଓ Aravian Nights ପ୍ରଭୃତି ଶିଶୁଙ୍କୁ ଭଲ ଲାଗିବା ଭଳି ସଂସ୍କରଣ।

ପ୍ରକୃତରେ ଗଢ଼ି ଉଠିଛି ସଂପର୍କଟି ଗ୍ଲିମି ଓ ଡେଲଗାଡ଼ିନା ମଧ୍ୟରେ ନୁହେଁ, ବର୍ଣ୍ଣନାକାରୀଙ୍କ ଖପୁରୀ ଭିତରେ। ନବେବର୍ଷ ବୟସରେ ଜଣେ କେହି ପ୍ରେମରେ ପଡ଼ିବ ଏବଂ ଚତୁର୍ଦ୍ଦଶ ବର୍ଷ ବୟସ୍କା ଯାହା ଦେହରେ କାମ ଉର୍ଜାର ପ୍ରଭାବ ପ୍ରଚଣ୍ଡ ତାକୁ ସହବାସ କରିବ ଜଣେ କାମଉର୍ଜା ଶୂନ୍ୟ ଶିଥିଳ ଚର୍ମ, ମାଂସ ? ?

ପୂର୍ବରୁ କୁହାଯାଇଛି, ମାର୍କ୍ୱେଜ ବଂଚିଛନ୍ତି 'ଲିଭିଂ ଟୁ ଟେଲ୍ ଦି ଟେଲ୍'। ଭର୍ଜିନା ଉଲ୍‌ଫ ଭାବୁଥିଲେ ମଣିଷ 'a queer animal'। ଏକ ବେଆଡ଼ା ଗୃହପାଳିତ ଜୀବ। ଫ୍ୟାକ୍ଟ ପିକ୍ସନ ପ୍ରତି ଦୃଢ଼ ଭାବେ ସଂଲଗ୍ନ ଏବଂ ବାସ୍ତବ ଘଟଣା ହୁଏ ଉତ୍ତମ ଉପନ୍ୟାସ, ଭର୍ଜିନା ଉଲ୍‌ଫଙ୍କ ବାକ୍ୟ ବଡ଼ ଯଥାଯଥ।

ବିଶ୍ୱର ଜଣେ କନିଷ୍ଠତମା ଲେଖିକା ପ୍ରବାସିନୀ ଝୁମ୍ପା ଲାହିରି (Jhumpa Lahiri)। 'ଇଣ୍ଟର ପ୍ରିଟର ଅଫ୍ ମାଲାଡ଼ିଜ୍' ତାଙ୍କର ପ୍ରଥମ ଗଳ୍ପ ସଂକଳନ ଲାଭ କରିଛି ୨୦୦୦ ମସିହା Pulitzer Prize। ଏହା ପରେ ସିଏ ଲେଖିଛନ୍ତି ଖଣ୍ଡିଏ ଉପନ୍ୟାସ 'The Namesake', ଗୋଟିଏ ଯୁବଦଂପତି କଲିକତାରୁ ମାସାଚୁସେଟସକୁ ଯିବାବେଳେ ସେମାନଙ୍କ trials ର ଅନୁଭୂତି। ଚଳିତ ବର୍ଷ (୨୦୦୮)ପ୍ରକାଶିତ ହୋଇଛି ତାଙ୍କ ଗଳ୍ପ ସଂକଳନ 'Unaccustomed Earth' ।

ଝୁମ୍ପା ପ୍ରବାସିନୀ, ଜଣେ ବିଦେଶୀଙ୍କୁ ସ୍ୱଦେଶୀ ପରଂପରାରେ ବିବାହ କରିଛନ୍ତି। ମୂଳତେର, ପ୍ରବାସ ଓ ନିର୍ବାସନ ତିନୋଟି ବିନ୍ଦୁ ତାଙ୍କ ଚେତନାର ତ୍ରିଭୁଜକୁ କରିଛି ଆନ୍ଦୋଳିତ। ତେଣୁ ସ୍ୱପରିଚୟର ଅନ୍ତର୍ଦ୍ୱଂଦ୍ୱ ଭିତରେ ସିଏ ଅସ୍ଥିର। ତାଙ୍କ ଗଳ୍ପ 'ଦି ବଡି ଅଫ ୍ଏକ୍ସପିରିଏନ୍ସ ଅଫ୍ ଦି କ୍ୟାରେକ୍ଟର' (the body of experience of the characters) । ଚରିତ୍ରର ଅନୁଭୂତି ତାଙ୍କ ବହିର ଗଳ୍ପ। ତାଙ୍କ ଅନୁଭୂତି ଓ ଉଦ୍ୟମ ସିଏ ଅଭିବ୍ୟକ୍ତ କରିଛନ୍ତି: I'm just trying to write the stories in the best, most effective way that I can'. ସିଏ ଆଉ ଗୋଟିଏ କଥା କହିଛନ୍ତି: I feel there are many many stories to tell' । ଅନେକ ଲେଖକ ଅଛନ୍ତି ସେମାନେ ନିଜ ଅନୁଭୂତି ମାର୍ଜିନ ଆରପଟୁ ଲେଖନ୍ତି କିନ୍ତୁ ମୁଁ ସେମାନଙ୍କ ଶ୍ରେଣୀରେ ନାହିଁ। ତେଣୁ ମୋ ଗଳ୍ପରେ ନାହିଁ କିଛି (very strange) ଅତି ବିସ୍ମୟ। ପୁନଶ୍ଚ- ' I admire writing about everyday life', ତାହା ସବୁଗଳ୍ପ, ଯାହାର ଆରମ୍ଭ, ମଝିଅଂଶ ଏବଂ ଗୋଟିଏ ସମାପ୍ତି ଥିବ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜଣେ ନାରୀର ସମସ୍ୟା କ'ଣ, ତାହା ଉପରେ ଲେଖିଥିଲେ ଭର୍ଜିନା ଉଲଫ୍ 'at what age did she marry; how many children had she as a rule; what was her house life, had she a room to herself; did she do the cooking; would she be likely to have a servant? All these facts..' ।

ଝୁମ୍ପାଙ୍କ ବେଳକୁ ସାମାଜିକ ଜୀବନ ଯଥେଷ୍ଟ ବଦଳି ଯାଇଛି। ହେମା ଓ କୌଶିକ ଭାରତରୁ ଯାଇ ରହୁଛନ୍ତି ଯୁକ୍ତରାଷ୍ଟ୍ରରେ। ସେମାନଙ୍କ ଭୂଗୋଳ ବଦଳିଛି, ଇଟାଲୀଠୁ ଆରମ୍ଭ କରି ଥାଇଲ୍ୟାଣ୍ଡ ପର୍ଯ୍ୟନ୍ତ ସବୁ ଗଳ୍ପର ରହିଛି ଅନ୍ତଃସଂଯୋଗ ଯେମିତି Trilogy ରେ ଘଟିଥାଏ। ଅଲଗା ଅଲଗା ଭୌଗୋଳିକ ପରିବେଶ ଭିତରେ ପାରିବାରିକ ଜୀବନ ଜୀଉଥିବା ମଣିଷଙ୍କ ସମସ୍ୟାର ଦୈନନ୍ଦିନ ଛବି 'Interpreter of Maladies' । ଏହାଠୁ ଦୀର୍ଘ ଏବଂ ଅଧିକ ଜଟିଳ ଗଳ୍ପ 'Unaccustomed Earth'। ପ୍ରବାସୀ ଓ ପ୍ରବାସିନୀଙ୍କ ଦୈନଂଦିନ ଜୀବନ କିନ୍ତୁ ସଚେତନ ଭାବେ ସିଏ ତହିଁରେ ମିଶି ଯାଇନାହାନ୍ତି। ସୃଷ୍ଟିଠୁ ସ୍ରଷ୍ଟା ଅଲଗା ରହିଛନ୍ତି। ଝୁମ୍ପାଙ୍କ ବ୍ୟବହୃତ ଭାଷା ଘାସପରି ସବୁଜ, ସୁନ୍ଦର ଓ କୋମଳ। ପଥଚ୍ୟୁତ ବା ବ୍ୟାକରଣ ନିୟମ ବିଚ୍ୟୁତ ନୁହେଁ, ତେଣୁ ଇଂଲିଶ୍ ପାଠକଙ୍କ ବଡ ଆକର୍ଷକ ତାଙ୍କ ପୁସ୍ତକ।

ଝୁମ୍ପାଙ୍କ ପରେ ପରେ ଆନ୍ତର୍ଜାତିକ ବହିମାର୍କେଟକୁ ଚମକାଇଛି ସଲମାନଙ୍କ ରୁସିଦଙ୍କ ନୂତନ ପୁସ୍ତକ 'The Enchantress of Florence' । ଏହା ପୂର୍ବରୁ କାଶ୍ମିର ଇତିହାସ ଉପରେ ଆଧାରିତ, ଯିହାଦୀ ଧାରଣର ଓ ବିଚ୍ଛିନ୍ନତାବାଦୀ କାର୍ଯ୍ୟକଳାପକୁ ନେଇ ତାଙ୍କ ରଚନା 'Shalimar: the clown' ହୋଇଛି ପ୍ରକାଶିତ । କୁହାଯାଏ ତାଙ୍କ ବହୁ ପ୍ରସାରିତ 'Midnight's Children' ଇତିହାସକୁ ହାତକଡ଼ି ପିନ୍ଧାଇଛି । ଇତିହାସ ଭିତରୁ ସଲମାନଙ୍କ ଜନ୍ମ, ଯୌବନ ଅଲଗା ଅଲଗା ଲକ୍ଷ୍ୟସ୍ଥାନ, ଜୀବନ ଗୋଟିଏ (Journeying) ପରିବ୍ରାଜନ ।

ଗୋଟିଏ ସମୟର ସଂସ୍କୃତିକ ଏବଂ ଦାର୍ଶନିକ ଧାରଣାକୁ ନେଇ ରଚିତ ତାଙ୍କ ସଦ୍ୟତମ ଉପନ୍ୟାସ 'ଦି ଏନ୍‌ଚାଣ୍ଟ୍ରେସ୍ ଅଫ୍ ଫ୍ଲୋରେନ୍ସ' । ପ୍ଲଟ ମୋଗଲ ସମ୍ରାଟ ଆକବରଙ୍କ ଦରବାରରୁ ଶାଖା ମେଲିଛି ରେନେସାଁ ଦେଇ ୟୁରୋପର ଫ୍ଲୋରେନ୍ସ ପର୍ଯ୍ୟନ୍ତ । ଆକବରଙ୍କ ଦରବାରରେ ଜଣେ ୟୁରୋପୀୟ ଯୁବକ ପହଞ୍ଚି ଦାବୀ କରିଛି ସିଏ ଜଣେ ମୋଗଲ ରାଜକୁମାରୀଙ୍କ ପୁତ୍ର ଏବଂ ସିଏ ସମ୍ରାଟଙ୍କ ଦୂର ସଂପର୍କୀୟ । ତା'ଦେହରେ ତୁର୍କୀ ପିତାର ରକ୍ତ । ଯିଏ ଫ୍ଲୋରେନ୍‌ସ ନାଗରିକ । ଗଳ୍ପ ବୁଲିଛି ଦେଶରୁ ବିଦେଶ । ସଲମାନ କହିଛନ୍ତି ଏହା ତାଙ୍କ 'most researched' କୃତିତ୍ୱ । ଆକବରଙ୍କଠୁ ସମକାଳ ପର୍ଯ୍ୟନ୍ତ ଗୋଟିଏ ଇତିହାସ ହୋଇଛି ଚିତ୍ରିତ । ବହିରେ ଗୋଟିଏ Bibliography କରିଛନ୍ତି ସଂଲଗ୍ନ । ବୋଧ ହୁଏ ଉଇଲିୟମ ଡାଲରିମ୍ପିଲ୍‌ଙ୍କ 'White Mughals: Love and Betrayal in Eighteenth Century India' ଉପନ୍ୟାସ ସଲମାନଙ୍କୁ ମୋଗଲ ଦରବାରରୁ ଆଧୁନିକ ଫ୍ଲୋରେନ୍ସ ପର୍ଯ୍ୟନ୍ତ ଗତିକରିବାକୁ ପ୍ଲଟ ତିଆରିରେ ହୋଇଛି ପ୍ରେରଣା ଓ ଧାରଣା ପ୍ରଦାୟକ । Dalrymple ଦୁଇ ହଜାର ଦୁଇରେ ୧୭୯୮ ର ଏହି ଭାରତୀୟ ପ୍ରଣୟ କାହାଣୀ ଯୋଡ଼ିଥିଲେ ଜଣେ ଇଷ୍ଟଇଣ୍ଡିଆ କଂପାନୀ ସୈନିକ James Kirkpatrick ଙ୍କ ସହିତ ହାଇଦ୍ରାବାଦ ନିଜାମଙ୍କ ମୁଖ୍ୟମନ୍ତ୍ରୀଙ୍କ ଝିଅ Khair un-Nissa ସହ । ଦୁହିଁଙ୍କ ଧର୍ମ ଅଲଗା । ତେଣୁ ଖୈର ଉନ-ନିସାର ବିବାହ ସମ୍ବନ୍ଧ ଅନ୍ୟଜଣଙ୍କ ସହିତ ହେଲାସ୍ଥିର । ମାତ୍ର କିର୍‌କପାଟ୍ରିକ ତାକୁ ବିବାହ କରିବା ପାଇଁ ଗ୍ରହଣ କଲା ଇସ୍‌ଲାମ ଧର୍ମ ଏବଂ ହୋଇଗଲା ଭାରତୀୟ । କେତେକ କହନ୍ତି ନିଜାମଙ୍କ ପାଇଁ ସିଏ କରୁଥିଲା ଗୁପ୍ତଚର କର୍ମ ।

ବିସ୍ମୟକର ଏହି ପ୍ରଣୟ କାହାଣୀ ପ୍ରକାଶନ ପରେ ଉଇଲିୟମ୍ ଡାଲରିମ୍ପଲ୍ ରାତାରାତି ହୋଇଗଲେ ବହୁଚର୍ଚ୍ଚିତ ଏବଂ ତାଙ୍କ ପରବର୍ତ୍ତୀ ଉପନ୍ୟାସ ହେଲା 'ଦି ଲାଷ୍ଟ ମୋଗଲ' ।

ଚଳିତ ବର୍ଷ (୨୦୦୮) ଶୋଭା ଦେଙ୍କ ଖଣ୍ଡିଏ ଆତ୍ମଜୀବନୀ, ରାଜନୀତି, ନାରୀର ସାମାଜିକ ସ୍ଥିତି ପ୍ରଭୃତି ଉପରେ ଆଧାରିତ ଅଲଗା ରୁଚି ଓ ଅଲଗା ଦୃଷ୍ଟିର ପୁସ୍ତକ ଆସିଛି ମାର୍କେଟ। ବହିଟିର ଶୀର୍ଷକ 'Superstar India: From Incredible to Unstoppable' । ଭାରତର ସ୍ୱାଧୀନତାକୁ ହେଲା ଷାଠିଏ ବର୍ଷ। ଶୋଭାଙ୍କ ବୟସ ହେଲା ଷାଠିଏ। କୁହାଯାଏ କଳିଷଠା! କିନ୍ତୁ ତାଙ୍କର ଷାଠିଏ ଏବେ ଚାଳିଶ, ଗ୍ଲାମୋର ଦୃଷ୍ଟିକୋଣରୁ କି କ'ଣ? ଭାରତ ସହିତ ତାଙ୍କ ଜୀବନଯାତ୍ରା। ସବୁ ଦୃଷ୍ଟି କୋଣରୁ ସିଏ ସ୍ପର୍ଶ କରିଛନ୍ତି 'Indianness' । ସିଏ ବହନ କରନ୍ତି ବହୁବିଧ ଦାୟିତ୍ୱ (multi-task) । ସିଏ କହନ୍ତି ଜଣେ ଗ୍ରାମୀଣ ମହିଳାଠୁ ଅଧିକ ବହୁବିଧ ଦାୟିତ୍ୱ ଅନ୍ୟକେହି ବହନ କରୁନାହିଁ। ସିଏ ମୂଳ ଲାଗୁଛି, ସେଇ ସ୍ୱଳ୍ପ ଆୟରୁ କରୁଛି ସଂଚୟ, ନେଉଛି ପିଲାଙ୍କ ବୋଝ, ବଂଧୁବାନ୍ଧବଙ୍କ ଦାୟିତ୍ୱ, ଘର ସମ୍ଭାଳୁଛି, ସାମାଜିକ ସଂପର୍କ ରଖୁଛି। ସେମାନେ ଯେଉଁ 'ମଲ୍‌ଟିଟାସ୍କ' ବହନ କରୁଛନ୍ତି ତାହା ସହରାଞ୍ଚଳ ମହିଳା କରନ୍ତି ନାହିଁ।

କେନ୍ଦ୍ରରୁ ଦେବଗୌଡ଼ା ସରକାର ଭାଙ୍ଗିଗଲା ପରେ ଦେବଗୌଡ଼ା ରଚନା କରିଥିଲେ ଖଣ୍ଡିଏ ପୁସ୍ତକ, ତାଙ୍କର 'ଅନ୍‌ଫିନିସଡ଼ ଏଜେଣ୍ଡା'। ଠିକ୍ ସେମିତି ଭାରତୀୟ ଜନତା ପାର୍ଟି ସରକାରର ପତନ ପରେ ତାହାର ଉପପ୍ରଧାନ ମନ୍ତ୍ରୀ ଲାଲକୃଷ୍ଣ ଆଡ଼ଭାନି ଲେଖିଛନ୍ତି, 'My Country, My life' ଶୀର୍ଷକ ବହି। ଏହାକୁ ପ୍ରକାଶ କରିଛନ୍ତି ରୂପା ଏଣ୍ଡ କୋ. ଏବଂ ଏହି ପୃଥୁଳ ପୁସ୍ତକର ମୂଲ୍ୟରଖାଯାଇଛି ୫୯୫ ଟଙ୍କା। ଆଡ଼ଭାନିଙ୍କ ଏହା ଏକ ଆତ୍ମ-ଜୀବନୀ। ସମକାଳ ରାଜନୀତିର ଗତି ଓ ରାଜନୈତିକ ଦଳମାନଙ୍କ ସହିତ ବି.ଜେ.ପି ର ସଂପର୍କକୁ ନେଇ ତାଙ୍କ ପର୍ଜେଟିଭ୍ ଦୃଷ୍ଟି ବହିଟି। ବି.ଜେ.ପି ତାଙ୍କୁ ଘୋଷଣା କରିଛି ଆଗାମୀ ଭାରତର ପ୍ରଧାନମନ୍ତ୍ରୀ ପ୍ରାର୍ଥୀ। ସେହି ଦୃଷ୍ଟିରୁ ଭାରତୀୟ ବୁଦ୍ଧିବାଦୀ ଭୋଟରଙ୍କୁ ପ୍ରଭାବିତ କରିବାକୁ ବହିଟି ସମର୍ଥ ହୋଇଛି ଯେମିତି।

ଶୋଭା ଦେ'ଙ୍କ ବହିଟିକୁ ଭାରତର ସୁପରଷ୍ଟାର ଅମିତାଭ ବଚନ ନିକଟରେ ବମ୍ବେ ଠାରେ କହିଛନ୍ତି ଉନ୍ମୋଚନ ଏବଂ ତାହାର କିୟଦଂଶ ଅରୁନ୍ଧତୀ ନାଗ ନାମକ ସୁନ୍ଦରୀ ସୁକଣ୍ଠୀ ଥିଏଟର ଅଭିନେତ୍ରୀ ପଠନ କରି ଶୁଣାଇଛନ୍ତି ହାଇପ୍ରୋଫାଇଲ୍ ଶ୍ରୋତୃବର୍ଗଙ୍କୁ। ସେହିପରି ବ୍ରିଟିଶ୍ ଲେଖକ ପାଟ୍ରିକ୍ ଫେଞ୍ଚଙ୍କ ରଚିତ ପୁସ୍ତକ 'The World is What it is' ଦିଲ୍ଲୀ, ମୁମ୍ବାଇ ଓ ବେଙ୍ଗାଲୁର୍‌ରେ ଏକତ୍ର ହୋଇଛି

ଲେକାର୍ପିତ। ଜୁନ୍ ୧ତାରିଖ ୨୦୦୮, ପ୍ରସିଦ୍ଧ ଡ଼ିପ୍ଲୋମାଟ ଅମିତାଭ ଘୋଷଙ୍କ ସମକାଳୀନ ବାସ୍ତବତା 'Sea of Poppies' ଉପନ୍ୟାସକୁ ୟୁ.କେ ଓ ଭାରତର ମାର୍କେଟକୁ ଛଡ଼ାଯାଇଛି।

'Sea of Poppies' 'ବୃହତ୍‌କାୟ ଲାଲ୍ ପୁଷ୍ପର ସମୁଦ୍ର' ଇତିହାସର ସଂପତ୍ତିଭୁକ୍ତ। ଅମିତାଭ୍ ଘୋଷ୍‌ଙ୍କ ଏହି ଉପନ୍ୟାସର ଢେର ଗବେଷଣା, ଅପ୍ରତ୍ୟାଶିତଭାବେ ସମ୍ମୁଖୀନ ହେବା ଏବଂ ନିଜର ବହୁଭ୍ରମଣର ଗଭୀରତା ଭିତରେ ସମୃଦ୍ଧଭାବେ ପୋତି ହୋଇ ରହିଛି। ତାଙ୍କର ଅନ୍ୟ ଦୁଇଟି ଉପନ୍ୟାସ 'ଦି ଗ୍ଲାସ୍ ପ୍ୟାଲେସ୍' ଓ 'ହଙ୍ଗ୍ରି ଟାଇଡ୍' ପୂର୍ବରୁ ବୁକେର ପ୍ରତିଯୋଗୀତାକୁ ଆସିଛନ୍ତି ଏବଂ ଠିକ୍ ଏଇ ବହିପରି ଅଳ୍ପକେ ପୁରସ୍କାରରୁ ବଂଚିତ ହୋଇଛନ୍ତି।

ଜଗତୀକରଣ ବିଶ୍ୱରେ ପୁଞ୍ଜିବାଦର ସଂପର୍କୀୟ ପୁତୁରା ହିଂସା ଓ ସାମ୍ରାଜ୍ୟବାଦ କିପରି ପୃଥକ୍‌ଅବସ୍ଥା ଦ୍ୱାରା ବାଣିଜ୍ୟ, ପ୍ରବାସ ଗମନ ଓ ସାଂସ୍କୃତିକ ପରିବର୍ତ୍ତନ ଘଟାଉଅଛି, ତାହାରି ଚିତ୍ର 'Sea of Poppies'। ଉତ୍ତରଭାରତୀୟ ମହିଳା, ବଂଗାଳୀ ଜମିଦାର, କଳାମଣିଷ, ଗ୍ରାମୀଣ ଶ୍ରମିକ ଓ ସାମୁଦ୍ରିକ ଚୀନାଙ୍କ ଠକେଇ ହୋଇଯାଉଥିବା ଚିତ୍ର। କଲୋନୀ ବାସିନ୍ଦା ମଣିଷଙ୍କ ଜୀବନ, ଯେଉଁଠି ପରସ୍ପର ମଧ୍ୟରେ କଣ୍ଟାକ୍ଟ ଓ ଇଣ୍ଟରମିକ୍ସିଂ ହୋଇଯାଇଛି ଶୂନ୍ୟ। ପ୍ରତିସ୍ତରରେ ଇତିହାସକୁ ବୁଝିବା ଜଟିଳ। ସମତାଳର ବାସ୍ତବତା ଉନବିଂଶ ଶତକ କଲୋନିଆଲିଜିମ୍ ଉପରେ ଶ୍ରୀଘୋଷ କରାଇଛନ୍ତି ଆଧାରିତ। ଲୋକଙ୍କ ବଂଚିବା ଶୈଳୀ, ହସ ଓ ପ୍ରେମର ଅତ୍ୟନ୍ତ ସୌନ୍ଦର୍ଯ୍ୟପୂର୍ଣ୍ଣ କାବ୍ୟିକ କୃତିତ୍ୱ ଏହି ଉପନ୍ୟାସ।

ମାର୍କେଟକୁ ଏଇ ସାହିତ୍ୟ ବହିମାନଙ୍କ ଆଗମନ ଗୋଟିଏ ନୂତନ ସାଂସ୍କୃତିକ ଓ ସାରସ୍ୱତ ପରିବର୍ତ୍ତନର ଶୁଭ ସୂଚନା ବୋଲି ବୋଧ ହେଉଛି। 'ଅମଡ଼ାବାଟ' ବା ବାଟହୁଡ଼ା ବେଆଡ଼ା ପ୍ଲଟକୁ ନେଇ ଯେଉଁ ସାହିତ୍ୟର ସ୍ଥାପତ୍ୟ ଗଢ଼ି ଉଠୁଥିଲା ତାହା ପ୍ଲଟରେ ଆଉ ନାହିଁ। ଔପନାସିକ ଅନୀତା ନାୟାରଙ୍କ ବହି 'Goodnight and God Bless' ଜୁନ୍‌ର ମଧ୍ୟାହ୍ନକୁ ଚହଲାଉଛି। କିଏ କାହାଠୁ ବିଦାୟ ନେଉଛି ? କିଏ କାହାକୁ ବିଦାୟ ଦେଉଛି ? ଏକ ବୁଝାମଣାର କରୁଣ ବେଳାରେ ଜଣେ କେହି କାମନା କରୁଛି ଠାକୁରଙ୍କ ଆଶୀର୍ବାଦ ଅନ୍ୟଜଣଙ୍କ ପାଇଁ!



# ଚେତନା ପ୍ରବାହ ଶୈଳୀ ଠାରୁ ସର୍‌ରିଆଲିଜିମ୍ ପର୍ଯ୍ୟନ୍ତ : କେତୋଟି କଳା ଓ ସାହିତ୍ୟ ତତ୍ତ୍ୱ

## ଚେତନା ପ୍ରବାହ ଶୈଳୀ (stream of - consciousness)

ମାନସିକ ବା ମନୋବୈଜ୍ଞାନିକ ବାସ୍ତବବାଦର ବହୁଜନ ବିଦିତ ନାମ 'ଚେତନାପ୍ରବାହ' ଏବଂ ଉଇଲିୟମ ଜେମ୍ସ୍‌ଙ୍କର 'ଦି ପ୍ରିନ୍ସିପୁଲସ୍ ଅଫ୍ ସାଇକୋଲଜି' ପୁସ୍ତକରେ ମାନବର ଅନ୍ତଃଅନୁଭୂତିର ପ୍ରବାହକୁ ଲକ୍ଷ୍ୟ କରି କୁହାଯାଇଛି 'ଚେତନା-ପ୍ରବାହ'। ଜଟିଳ ମନର କ୍ରିୟା ଓ ପ୍ରତିକ୍ରିୟାର ବାସ୍ତବ ବର୍ଣ୍ଣନା। ଚେତନା ପ୍ରବାହ ଓ ପ୍ରଭାବବାଦ ମଧ୍ୟରେ ରହିଛି କିଛିଟା ସାମ୍ୟ। ୧୯୨୦ ମସିହା ଚେତନା ପ୍ରବାହ ଶୈଳୀର ଜନ୍ମ ସମୟ ଏବଂ ଏହା ଇଂରାଜୀ ସାହିତ୍ୟରେ ହୋଇଥିଲା ଫଳପ୍ରଦ। ପ୍ରଫେସର ଡଃ ଡାଭିଡ୍ ଡ୍ରାଚ୍ୟେସ୍ ଏକ ଆଲୋଚନାରେ ଉଲ୍ଲେଖ କରିଛନ୍ତି। : In the matter of literary techniques, the 1920's proved to be one of the most fruitful periods in the whole history of English Literature in fiction the so called stream of consciousness method was born, matured and moved.... (The present Age after 20's) । ଚରିତ୍ରର ଚେତନ, ଅଚେତନ ଓ ଅବଚେତନ ମନ ଭିତରୁ ତଥ୍ୟ ସଂଗ୍ରହ କରି ତାହାର ବାସ୍ତବ ରୂପ ସାମ୍ନାକୁ ଆଣନ୍ତି ଲେଖକ। ନିଜ ଅନୁଭୂତିର ନିର୍ଝର ଧାରେଧାରେ ଯାଇ ସିଏ ଅତୀତ ସତ୍ତାର ଅନ୍ଧକାରରେ ହୋଇଯାନ୍ତି ନିଖୋଜ। ମାନବ ଜୀବନର ଏକ ନୂତନ ଦିଗନ୍ତ ହୁଏ ଆବିଷ୍କୃତ। ଏହି ପଦ୍ଧତି ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି ଗବେଷକ; what these writers have contributed to fiction is broadly one thing they have opened up for it a new area of life. They have added mental functioning and psychic existence to the already established a fiction, centred on the core of human experience ..... (Stream of Consciousness in the Modern Novel, Page 22)

ଚେତନା ପ୍ରବାହ ଶୈଳୀରେ ସାହିତ୍ୟର ହାମଲେଟ୍‌କୁ ମନସ୍ତତ୍ତ୍ୱର ପୋଷାକ ପରିଧାନ କରାଇ ଦିଆଯାଏ। ମନୋବୈଜ୍ଞାନିକଙ୍କ ଆବିଷ୍କୃତ ବେଢ଼ଙ୍ଗିଆ ବସ୍ତ୍ର ପରିଧାନ କରି ପାରଂପରିକ ଚେତନା, ପ୍ରଥା ଓ ପଦ୍ଧତିର ପ୍ରତୀକ ସାହିତ୍ୟର ଶଙ୍କରାଚାର୍ଯ୍ୟ

ଦିଶନ୍ତି ଆଧୁନିକ। ଏହା ସମକାଳୀନ ଓ ଯୁଗୋପଯୋଗୀ। ପକେଟରେ ବ୍ୟାଙ୍କର ଏ.ଟି.ଏମ୍ କାର୍ଡ ଯେମିତି ! କିଂବା ଯେମିତି ଖଣ୍ଡିଏ କ୍ରେଡିଟ୍ କାର୍ଡ ! ସମକାଳୀନ ସଭ୍ୟତା ସଂସ୍କୃତି ଓ ଜୀବନଯାପନ ପ୍ରଣାଳୀ ଏହା। ଏହାର ପ୍ରଭାବକୁ ଉପନ୍ୟାସ ତାର ଆଙ୍ଗିକରେ  କରିଛି ସ୍ୱାଗତ। ପରିବର୍ତ୍ତନକୁ ବାଦ ଦେଇ ତିଆରି ହୋଇପାରେ ନାହିଁ ସାହିତ୍ୟ। ପୁନଶ୍ଚ ସଂସ୍କୃତିର ଧର୍ମ ହେଲା, ଏହା ପାଗପରି ବଦଳିବ। କାରଣ ପ୍ରତିଦିନ ଅର୍ଥକୈନ୍ଦ୍ରିକ ପୃଥିବୀ ବଦଳି ଚାଲିଛି। ବଦଳି ଚାଲିଛି ଟେକ୍‌ନିକ୍ ଓ ବୈଜ୍ଞାନିକର ନବୀନ ଉଦ୍ଭାବନ। ବଂଚିବାକୁ ସହଜ ଓ ସୁଖମୟ କରିବା ଦୃଷ୍ଟି। ଦୀର୍ଘ ଓ ବିରକ୍ତକର ପ୍ରତ୍ୟେକ ବସ୍ତୁଠୁ ମାନବ ଖୋଜୁଛି ଅବ୍ୟାହତି। ବୋର୍ ହେବାଠୁ ମୁକ୍ତି। ତେଣୁ ଉପନ୍ୟାସ ବଦଳିଛି। ଷ୍ଟାନ୍‌ଲି ବର୍ଣ୍ଣ ଓ ଆଲିନ୍ ଜିକୋସ୍କି, ଦୁଇଜଣ ଅତ୍ୟାଧୁନିକ ଔପନ୍ୟାସିକ ନିଜ ସୃଷ୍ଟି ବେଢ଼ଙ୍ଗିଆ ଉପନ୍ୟାସ ସଂପର୍କରେ ବୟାନ ଦେଇଛନ୍ତି : Let us get away from the horizontal novel which layout it plot on a frame that leaves up nothing but the skeletion of an experience that once had fresh but that is now dead and in its coffin, We must lift ourselves from the pedestrian westage of following a straight line, page by page numerically to the end of our book, because sensory experience had no end.(The End of Story in the Novel, Page 153).

ଇନ୍ଦ୍ରିୟଗତ ଉପଲବ୍ଧି ଅସୀମ। ନିର୍ଦ୍ଦିଷ୍ଟ ଗୋଟିଏ ପରିଧି ଭିତରେ ବିଷୟଟିଏ କହିବସିବା ଅପେକ୍ଷା ନିଜ ଇନ୍ଦ୍ରିୟଗତ ଉପଲବ୍ଧି ବାଣ୍ଟି ବସିବାକୁ ଶ୍ରେଷ୍ଠ ମନେ କରନ୍ତି ନୂତନ ଦୃଷ୍ଟି ସଂପନ୍ନ ମନସ୍ତତ୍ତ୍ୱର ଆଶ୍ରିତ ଲେଖକ। ଇନ୍ଦ୍ରିୟଗତ ଉପଲବ୍ଧି ପରି ସେମାନଙ୍କ କଳା ସୃଷ୍ଟି ମଧ୍ୟ ଅସୀମ। ସମୀକ୍ଷକଙ୍କ ସୀମିତ ବୀକ୍ଷାର ଫିତା କୃତିଟିକୁ ମାପିବାରେ ହୁଏ ଅକ୍ଷମ। ପୁଷ୍ପର ସୁବାସ, ମଳୟର ସ୍ୱାଦ ଓ ମଣିଷ ମନର ଭଲ ପାଇବାକୁ ଯେମିତି ମୂଲ୍ୟାୟନ କରି ହୁଏନାହିଁ, ଠିକ୍ ସେମିତି ଲାଗେ ପ୍ଲଟ୍‌ହୀନ ଉପନ୍ୟାସଟି। ଏହା ହୃଦୟ ଭିତରେ ବ୍ୟାପି ଯାଏ, ଯେମିତି ଗୋଟିଏ ତାରାଭର୍ତ୍ତି ଉଜ୍ଜ୍ୱଳ ନୀଳ ନୀରବ ଆଦିଗନ୍ତ ବିସ୍ତୃତ ରାତି !

ମନୁଷ୍ୟ ମନର ବହମାନ ଚେତନା ଓ ଅନୁଭୂତିକୁ ଏକ ନିର୍ଦ୍ଦିଷ୍ଟ ରୂପ ଦେବା ପାଇଁ ସର୍ବପ୍ରଥମେ ଉଇଲିୟମ ଜେମ୍‌ସ୍ ହିଁ ଷ୍ଟ୍ରିମ୍ ଅଫ୍ କନସସ୍‌ନେସ ଶୀର୍ଷକଟିର କରିଥିଲେ ଉଚ୍ଚାରଣ। ଷ୍ଟ୍ରିମ୍ ଅଫ୍ କନ୍‌ସସ୍‌ନେସ୍ ବା ଚେତନା ପ୍ରବାହ ଶୈଳୀୟ

ଉପନ୍ୟାସର ସମୟ ହେଉଛି ସର୍ବଦା ବର୍ତ୍ତମାନ। କାରଣ ଔପନ୍ୟାସିକ ଚରିତ୍ରର ବର୍ତ୍ତମାନ ପ୍ରବାହିତ ଚିନ୍ତାଧାରାକୁ ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀରୁ କରିଥାନ୍ତି ଅନୁଧ୍ୟାନ। ଏଥିରେ ଚିନ୍ତାଧାରା ଏକ ନିର୍ଦ୍ଦିଷ୍ଟାଭିମୁଖୀ ନ ହୋଇ ହୁଏ ବିବିଧାମୁଖୀ ଏବଂ ଏହି ଧରଣ ବିଚ୍ଛିନ୍ନତା ମଧ୍ୟ ମନେ ହୁଏ ସ୍ୱାଭାବିକ। କାରଣ- ଏକ ସଙ୍ଗରେ ମାନବ ବିଭିନ୍ନ ଘଟଣା ବା ଅନୁଭୂତି ବା ସମସ୍ୟାକୁ ନେଇ କରିଥାଏ ଚିନ୍ତା। ବର୍ତ୍ତମାନ ଭିତରେ ଉଜ୍ଜ୍ୱଳି ଉଠିଥାଏ ତାଙ୍କ ଭିତରେ ସାଇତା ସୃଷ୍ଟିର ଆରମ୍ଭରୁ ତିଆରି ସଂପୂର୍ଣ୍ଣ ଅତୀତଟା।

ଲିଅନ୍ ଇଡେଲ୍ ତାଙ୍କ ରଚିତ 'ଦି ମଡର୍ଣ୍ଣ ସାଇକୋଲଜିକାଲ ନଭେଲ' ପୁସ୍ତକରେ ଚେତନାପ୍ରବାହ ଉପନ୍ୟାସର ଟେକ୍‌ନିକ୍ ଉପରେ କରିଛନ୍ତି ପ୍ରଶସ୍ତ ଆଲୋଚନା। ଉପନ୍ୟାସ ରଚନାର ଏହି ଶୈଳୀ ସମ୍ବନ୍ଧରେ ସିଏ କରିଛନ୍ତି ବର୍ଣ୍ଣନା ! ମାନସିକ ଭାବନା ଓ ଭାବପ୍ରବଣତାର ପରିପ୍ରକାଶ କରେ ଉପନ୍ୟାସର ଘଟଣା ଓ ବିକାଶକୁ କରେ ନିୟନ୍ତ୍ରଣ। ଚରିତ୍ର ମନ ମଧ୍ୟରେ ଅବିଶ୍ରାନ୍ତ ଗତିରେ ପ୍ରବାହିତ ଚେତନାର ଧାରାକୁ ମନସ୍ତାତ୍ୱିକ ଦୃଷ୍ଟିରୁ ଅନୁଶୀଳନ କରିବା ହେଉଛି ଏହି ଶୈଳୀୟ ଉପନ୍ୟାସର ଧର୍ମ। ପ୍ରବାହିତ ଏହି ଚେତନା ସ୍ରୋତ ବିଚ୍ଛିନ୍ନ ହେଲେ ମଧ୍ୟ ନୁହେଁ ଖଣ୍ଡିତାଂଶ। ଯେଣୁ ତାହା ଚରିତ୍ର ଅନ୍ତର୍ଜୀବନର ଏକ ଅବିଚ୍ଛେଦ୍ୟ ଅଂଶ।

ଚେତନା ପ୍ରବାହ ଉପନ୍ୟାସରେ କାହାଣୀ ବା ଘଟଣା ଉପରେ ଗୁରୁତ୍ୱ ଦିଆଯାଇ ନଥାଏ। ଔପନ୍ୟାସିକ ଏକ ବା ଏକାଧିକ ଚରିତ୍ରଙ୍କ ମାନସିକ ପ୍ରକ୍ରିୟାର ଧାରାକୁ କେତେକ ପ୍ରତୀକ ଓ ଚିନ୍ତାଧାରା ମାଧ୍ୟମରେ କରିଥାନ୍ତି ପରିପ୍ରକାଶ। ଏକ ନିର୍ଦ୍ଦିଷ୍ଟ ନିୟମରେ ଘଟଣାମାନଙ୍କୁ କରାଯାଇ ନଥାଏ ଉପସ୍ଥାପିତ। ଅସଂଲଗ୍ନ ଭାବେ ପରିବେଷିତ ତଥ୍ୟସବୁ ଚିତ୍ରକଳ୍ପ ମାଧ୍ୟମରେ ହୋଇଥାଏ ବର୍ଣ୍ଣିତ, ଅନୁସଙ୍ଗ ସାହାଯ୍ୟରେ ଏହି ପରିବେଷିତ ଚିତ୍ର, ପ୍ରତୀକ, ସମସ୍ୟା ଓ ଘଟଣା ସମସ୍ତ ଉଣା ଅଧିକେ ସଂଲଗ୍ନ। ଏହା ମୂଳରେ ନଥାଏ କିଛି ଲଜିକ୍। ଘଟଣାବଳୀ ମୁଖ୍ୟ ଚରିତ୍ରର ଚିନ୍ତାର ପ୍ରବାହରୁ ହୋଇଥାଏ ସୃଷ୍ଟି। ପୁନଶ୍ଚ ପ୍ରଧାନ ଚରିତ୍ରର ଚେତନାଶୀଳ ମନ ଉପରେ ନିର୍ଭର କରେ ଘଟଣାର ପ୍ରବାହ ଏବଂ ଏହା ଚରିତ୍ରର ଅନ୍ତର୍ବୋଧରେ ହୋଇଥାଏ ପ୍ରତିଫଳିତ।

ଏକ ବିଶ୍ଳେଷଣାତ୍ମକ ବାସ୍ତବତା ସୃଷ୍ଟି କରିବା ଦିଗରେ ଚେତନାପ୍ରବାହ ଶୈଳୀୟ ଉପନ୍ୟାସ ହୋଇଛି ସଫଳ ଏବଂ ଏହା ହିଁ ଏହାର ଶିଳ୍ପୀର ଶୈଳୀଗତ ଶ୍ରେଷ୍ଠ ଆଭିମୁଖ୍ୟ। ମନୁଷ୍ୟ ଦେଖାଯାଏ ଯାହା, ସିଏ ନୁହେଁ ତାହା। ଶରୀର ଭିତରେ ଲୁଚିଥାଏ ତାର ନିଆରା ଗୋଟିଏ କାୟା। ସେହି କାୟାର ରୂପ ଚେତନା ପ୍ରବାହ ଶୈଳୀ ମୁଖ୍ୟତଃ କରିଥାଏ ଉପସ୍ଥାପିତ।

## ପ୍ରଭାବବାଦ (Impressionism)

୧୮୭୪ ମସିହା ଅପ୍ରେଲମାସ, ଫ୍ରାନ୍ସର ଜଣେ ଫଟୋଗ୍ରାଫରଙ୍କ ଷ୍ଟୁଡିଓରେ ହୁଏ ଦଳେ ଚିତ୍ରକରଙ୍କ ଅଙ୍କିତ ଛବିର ପ୍ରଦର୍ଶନୀ। ସେମାନେ ହେଲେ କ୍ଲଡ୍ ମୋନେ, ବର୍ଥ ମରିସଟ୍, ଆଲଫ୍ରେଡ ସିସ୍‌ଲେ ଓ ପଲ୍ ସିଜେନି ପ୍ରଭୃତି। ପ୍ରଦର୍ଶିତ କ୍ଲଡଙ୍କ ଗୋଟିଏ ଚିତ୍ର 'ଇଂପ୍ରେସନ୍ - ସନ୍‌ରାଇଜ୍'ରୁ ଇଂପ୍ରେସିଜିମ୍ ବା ପ୍ରଭାବବାଦର ଉଦ୍‌ଭବ। ପ୍ରଭାବବାଦ ଗୋଟିଏ ଲକ୍ଷ୍ୟ ନେଇ ପ୍ରତିଷ୍ଠିତ। ତାହା ହେଲା - ସରକାରୀକଳର ଚାପ, ବାଧା, ନିୟନ୍ତ୍ରଣ ଓ ରାଜନୀତି ଠାରୁ ମୁକ୍ତ କୌଣସି ଘଟଣା ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ମନରେ ପକାଉଥିବା ପ୍ରଭାବକୁ ନିର୍ଭୀକ ଭାବେ କରିବେ ଅଙ୍କନ। ଏହି ଶୈଳୀର ପ୍ରୟୋଗରେ କଳା ପରଂପରାର ସକଳ ରୂଢ଼ି ହେଲା ପ୍ରତ୍ୟାଖ୍ୟାତ। ମଣିଷର ଯାଂତ୍ରିକ ଜୀବନ, ଅର୍ଥକୈନ୍ଦ୍ରିକ ସମାଜ, ସହରୀ ଚାକଚକ୍ୟ ଓ ଅବିରାମ ଗତି ବା ଦୌଡୁଥିବା ହେତୁ କ୍ଲାନ୍ତ ମଣିଷକୁ ଉପସ୍ଥାପିତ କଲା ପ୍ରଭାବବାଦୀ ଚିତ୍ର। ପ୍ରଭାବବାଦୀ ଶୈଳୀରେ ସମ୍ବେଦନଶୀଳତାର ଏକ ନୂଆ ଧରଣର ଆକୁଳତା ଦେଖାଗଲା ଯେତେବେଳେ ଓ ଯେଉଁଠୁ ପାରିଲେ ନିଜର ବିଷୟବସ୍ତୁ ପ୍ରଭାବବାଦୀ ଶିଳ୍ପୀଗଣ କଲେ ନିର୍ବାଚିତ। ବ୍ୟକ୍ତିସତ୍ତାର ଗୁରୁତ୍ୱପୂର୍ଣ୍ଣ ଆଲେଖ୍ୟ ବହନ କରୁଥିବା ବହୁ ଇତରବସ୍ତୁ ବି ହେଲା କଳାକୃତି। ବାସ୍ତବବାଦ ପରି ଅସାଧାରଣ ବିଷୟବସ୍ତୁ ଓ ଆଦର୍ଶର ଅନୁସରଣ ନକରି ଦୈନନ୍ଦିନ ଜୀବନ ତଥା ସାଧାରଣ ଦୃଶ୍ୟକୁ କଳାରେ ଚିତ୍ରିତ କରିବାର ପ୍ରାଧାନ୍ୟକୁ କଲେ ଗ୍ରହଣ (The Dictionary of pictorial Art, Page 62 ଓ Page 87 ଦ୍ରଷ୍ଟବ୍ୟ)। ପୁନଶ୍ଚ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା (Vol. 12, Page 9, New Edition) ବର୍ଣ୍ଣନା କରିଛନ୍ତି, ବାହାରର ଆଧୁନିକ ଜୀବନକୁ ଆର୍ଟରେ ଅଭିବ୍ୟକ୍ତ କଲାବେଳେ ପ୍ୟାରିସ୍ ଓ ଅନ୍ୟ ସହରାଞ୍ଚଳ ଦୃଶ୍ୟ, ଇଂଲିଶ ଚାନେଲ୍ ତଟଦେଶ ବା ରେଲ୍‌ପଥ ଦ୍ୱାରା ଗମନାଗମନର ସୁବିଧା ଥିବା ସିଏନ୍ ନଦୀକୂଳସ୍ଥ ଯେ କୌଣସି ଗାଁର ଯାତ୍ରୀନିବାସଆଦିର ଚିତ୍ର ପ୍ରଭାବବାଦୀଙ୍କ ଆର୍ଟର ହୋଇଥିଲା ବିଷୟ ପରିସର।

ପ୍ରଭାବବାଦୀ କଳାରେ ଅନୁଭବ ରହେ ସଜୀବ। ସମୟପରି ଥାଏ ଗତିଶୀଳ। ସମସ୍ତ ଘଟଣାଚକ୍ର କ୍ଷଣଭଙ୍ଗୁର, କ୍ଷଣପରିବର୍ତ୍ତିତ, ଅନୁଭବ ସକଳର ସମାହାର ଏହି ଆର୍ଟ। ଗୋଟିଏ ମୁହୂର୍ତ୍ତର ଅନୁଭବର ପୌନଃପୌନିକତା ନ ଥାଏ ଆଦୌ। ସ୍ଥିରତା ନୁହେଁ, ଏଥିରେ ଗତି ହିଁ ସତ୍ୟ। ସତ୍ୟ ଏକ ଅବସ୍ଥା ନୁହେଁ, ପ୍ରକ୍ରିୟା ବିଶେଷ। ପ୍ରଭାବବାଦ ବାହ୍ୟ ବିଭାବ ପରିବର୍ତ୍ତେ ଅନ୍ତର୍ବିଭାବ ଉପରେ ଦେଇଥାଏ ଗୁରୁତ୍ୱ। ବସ୍ତୁର ଆଶ୍ରୟ

ପରିବର୍ତ୍ତେ ଆତ୍ମଗତ ଆଶ୍ରୟ ହୋଇଥାଏ ତାହାର ବିଷୟ। ବାସ୍ତବବାଦ ବିଶଦ ଓ ଅବିକଳ ବସ୍ତୁ, ଦୃଶ୍ୟ ବା ଘଟଣାକୁ କରେ ଉପସ୍ଥାପିତ। କିନ୍ତୁ ପ୍ରଭାବବାଦ ବସ୍ତୁ, ଦୃଶ୍ୟ ବା ଘଟଣା ଶିଳ୍ପୀ ମନରେ ସୃଷ୍ଟି କରୁଥିବା ଧାରଣା ବା ଇଂପ୍ରେସନ୍‌ର ଚିତ୍ର।

## ଅଭିବ୍ୟକ୍ତିବାଦ (Expressionism)

ଏକ୍ସପ୍ରେସ୍‌ନିଜିମ୍ ବା ଅଭିବ୍ୟକ୍ତିବାଦ ବିଂଶ ଶତକ ପ୍ରଥମ ଦଶଂଧିରେ ଜର୍ମାନୀ ନାଟକରେ ହୁଏ ପରିଲକ୍ଷିତ। ଏହି ଟେକ୍‌ନିକ୍ ଜର୍ମାନ, ଫ୍ରାନ୍ସ ଓ ଆମେରିକା ପ୍ରଭୃତି ଦେଶରେ ୧୯୨୪ ମସିହା ପର୍ଯ୍ୟନ୍ତ ବିସ୍ତାର କରିଥିଲା ପ୍ରାଧାନ୍ୟ। ହୁଲିଏନ୍ ଅଗଷ୍ଟିହାଭ୍ ନାମକ ଜନୈକ ଫରାସୀ ଶିଳ୍ପୀ ସାହିତ୍ୟ ଓ ସଂଗୀତ ପ୍ରୟୋଗ କ୍ଷେତ୍ରରେ ଏକ୍ସପ୍ରେସ୍‌ନିଜିମ୍ ଶବ୍ଦଟିର କରିଥିଲେ ପ୍ରଥମ ପ୍ରଚଳନ। ପ୍ରଭାବବାଦ ଠାରୁ ଅଭିବ୍ୟକ୍ତିବାଦ ସଂପୂର୍ଣ୍ଣ ଅଲଗା। ପ୍ରଭାବବାଦ ସାହିତ୍ୟ, ସଂଗୀତ ଓ ଚିତ୍ର କ୍ଷେତ୍ରରେ ଏକ ଅଭିବ୍ୟକ୍ତିର ପ୍ରକ୍ରିୟା। ଏହାର ଅନ୍ୟ ଏକ ଦିଗ ବାସ୍ତବ ଜଗତର ପ୍ରଭାବ ସ୍ରଷ୍ଟା ବା ଶିଳ୍ପୀ ଉପରେ କରେ ନିରୂପଣ। କିଂତୁ ଅଭିବ୍ୟକ୍ତିବାଦରେ ଶିଳ୍ପୀ ବା ସ୍ରଷ୍ଟାର ଧାରଣା ବାହ୍ୟ ଜଗତ ଉପରେ ଦିଆଯାଇଥାଏ ଲଦି। ବ୍ୟକ୍ତିଗତ ଅନୁଭୂତିର ପ୍ରାଧାନ୍ୟ ହୋଇଥାଏ ଚିତ୍ର। ବାସ୍ତବତାର ପରିପ୍ରକାଶ ପାଇଁ ଲେଖକ ହୋଇଥାନ୍ତି ଅହଂତ୍ୱ ଜ୍ଞାନ ସମ୍ପନ୍ନ। ଅଭିବ୍ୟକ୍ତିବାଦୀ ସମଗ୍ର ମାନବ ଜାତି ତଥା ବିଶ୍ୱକୁ ନିଜର ସାମ୍ରାଜ୍ୟ ବୋଲି ବୋଧ କରିଥାଏ। ଉଦ୍ଦେଶ୍ୟମୂଳକ ଭାବେ ସିଏ ଜଗତକୁ ବିକୃତ ଆକାର ବି କରେ। ବିଦ୍ରୋହ ଓ ପ୍ରତିବାଦ ତା ଭିତରେ ବସାବାଂଧିଥାଏ। ସଭ୍ୟତା ଓ ସଂସାରକୁ ଅନ୍ତଃସାର ଶୂନ୍ୟ ରୂପେ ଚିତ୍ରିତ କରେ। ପ୍ରଥମ ବିଶ୍ୱଯୁଦ୍ଧ ପର ସମୟର ଜର୍ମାନୀ ନାଟ୍ୟକାର ପ୍ରଚଳିତ ସରକାର ଓ ପରିବାର ବିରୁଦ୍ଧରେ ଅଭିବ୍ୟକ୍ତିବାଦୀ ନାଟକମାଧ୍ୟମରେ ନିଜ ବ୍ୟକ୍ତିଗତ ଅସନ୍ତୋଷ ତଥା ହିଂସାପୂର୍ଣ୍ଣ ସଂଗ୍ରାମକୁ ଦେଇଥିଲେ ରୂପ। ବ୍ୟକ୍ତିତ୍ୱ ସଂପାଦନ ଅଭିବ୍ୟକ୍ତିବାଦୀ ନାଟକର ଥିଲା ମୁଖ୍ୟଲକ୍ଷ୍ୟ। ନାୟକର ମନସ୍ତତ୍ତ୍ୱର ହୋଇଥାଏ ବିଶ୍ଳେଷଣ ଏବଂ ଅନ୍ୟ ଚରିତ୍ରଗୁଡିକ ଥାଆନ୍ତି ଅତି ନଗଣ୍ୟ। ସମାଜର ବ୍ୟାଧି ନିରାକରଣ ଅଭିବ୍ୟକ୍ତିବାଦର ଅନ୍ୟ ଏକ ଲକ୍ଷ୍ୟ। ଅଭିବ୍ୟକ୍ତିବାଦୀ ରଚନାରେ ଚରିତ୍ର ଓ କାହାଣୀ ଅପେକ୍ଷା ଭାଷା ଉପରେ ଦିଆଯାଇଥାଏ ଅଧିକ ଗୁରୁତ୍ୱ। ଆମେରିକୀୟ ନାଟ୍ୟକାର ଓନୀଲ ଏହି ଶୈଳୀୟ ରଚନା କରିଛନ୍ତି ଦୁଇଟି ନାଟକ। ଖଣ୍ଡିଏ The Emperor Jones ଓ ଅନ୍ୟ ଖଣ୍ଡିକ The Hairy Ape। ଦି ଏମ୍ପରର ଜୋନ୍ସରେ ସମସ୍ତ ଅଭିନୟ ଜୋନ୍ସର ମାନସିକ ଅଭିବ୍ୟକ୍ତି। ସେହିପରି ମୁଖ୍ୟ ଚରିତ୍ର ଜରିଆରେ ଦି ହ୍ୟାୟାରୀ ଏପ୍ ନାଟକଟି ନାଟକୀକୃତ ହୋଇଛି। ଆମେରିକୀୟ କଥାବସ୍ତୁ ଜର୍ମାନୀ କଥାବସ୍ତୁଠୁ

ଥିଲା ସଂପୂର୍ଣ୍ଣ ଅଲଗା। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ମଧ୍ୟ ଜର୍ମାନ ନାଟ୍ୟକାର Wolfgang Borchart ନିଜ ଦେଶ ଓ ଈଶ୍ୱରଙ୍କ ବିରୁଦ୍ଧରେ ନାଟକର ପ୍ଲଟରେ କରୁଥିଲେ ସଂଗ୍ରାମ। ରାଷ୍ଟ୍ରର ଭୁଲନୀତି ଓ ଈଶ୍ୱରଙ୍କ ସହିତ ବିଦ୍ରୋହୀ ଅ...ହାୟ ମୁଖ୍ୟଚରିତ୍ର ଲଢ଼ିଚାଲିଛି।

## ଅତିବାସ୍ତବବାଦ (surrealism)

ଅବଚେତନ ମନର ପ୍ରକ୍ରିୟାରେ ବାସ୍ତବତାର ଅନୁସନ୍ଧାନ କରିବା ସର୍‌ରିଆଲିଷ୍ଟଙ୍କ କାମ। ସର୍‌ରିଆଲିଜିମ୍ ଏକ କଳାତ୍ମକ ଆନ୍ଦୋଳନ। କୌଣସି ଯୁକ୍ତିଯୁକ୍ତ ଚିନ୍ତାଧାରା ବା ପ୍ରକ୍ରିୟା ଉପରେ ଏହା ନୁହେଁ ଆଧାରିତ। ବରଂ କଳ୍ପନା, ଅଯୌକ୍ତିକତା ଓ ଆଶ୍ଚର୍ଯ୍ୟଜନକ ଘଟଣା ଉପସ୍ଥାପନ ସର୍‌ରିଆଲିଜିମ୍‌ର ଲକ୍ଷଣ ଏବଂ ସର୍‌ରିଆଲିଷ୍ଟଙ୍କ ଧାରଣା ଯେ ଏଇଥିରେ ହିଁ ରହିଛି ଚିରନ୍ତନ ସୌନ୍ଦର୍ଯ୍ୟ। ପ୍ରଥମ ବିଶ୍ୱଯୁଦ୍ଧ ବେଳେ ଏହା ନେଇଥିଲା ଏକ ଦାର୍ଶନିକ ଚିନ୍ତାଧାରା ରୂପେ ରୂପରେଖ। ଏହାର ମୂଳ ଆନ୍ଦୋଳନ ଡାଡାବାଦ ରୂପେ ପରିଚିତ। ସର୍‌ରିଆଲିଜିମ୍ ଦୁଇ ଭାଗରେ ବିଭକ୍ତ। ସ୍ୱପ୍ନର ପରିପ୍ରକାଶ ଏହାର ଗୋଟିଏ ଭାଗ ଏବଂ ଅନ୍ୟ ଭାଗଟି ହେଲା ସ୍ୱୟଂ ଚାଳିତ ପ୍ରବୃତ୍ତିର ପରିପ୍ରକାଶ। ସ୍ପେନ ଦେଶୀୟ ଚିତ୍ରଶିଳ୍ପୀ Sulvador Dali କଳାତ୍ମକ ଆନ୍ଦୋଳନରେ ସର୍‌ରିଆଲିଜିମ୍‌ର ମୁଖ୍ୟ ପୁରୋଧା ଏବଂ Joan Miro ଏହାର ଅନ୍ୟତମ ପୁରୋଧା। ସ୍ୱପ୍ନ ଓ କାମୁକତାକୁ ନିଜର ଚିତ୍ର ମାଧ୍ୟମରେ ଅଯୌକ୍ତିକ ଭାବେ ରୂପେ ଦେଇଥିଲେ ଡାଲି! ଏଭଳି ଚିତ୍ର ଠାଏ ଠାଏ ବୋଧ ହୋଇଥିଲା ଘୋର ଅଶ୍ଳୀଳ। ଜୀବନର ଅଚେତନ ଅବସ୍ଥାର ସ୍ୱପ୍ନର ଚିତ୍ର କାନ୍‌ଭାସ୍ ଉପରେ କରିଥିଲେ ପ୍ରତୀକିତ। ସେହିପରି ଜନ୍‌ମିରୋ ଜୀବନର ଅତି ଆଭ୍ୟନ୍ତରୀଣ ସ୍ୱତଃସ୍ଫୁର୍ତ୍ତ ତଥା ମନସ୍ତାତ୍ତ୍ୱିକ କ୍ରିୟା ଓ ପ୍ରକ୍ରିୟାକୁ ବିନା ଯୁକ୍ତି ଓ ନୀତିରେ କରିଥିଲେ ଚିତ୍ରିତ। ଗୋଟିଏ ବିଂଦୁ ବା ରେଖାକୁ ଏକ ରୂପକଳ୍ପ ବୋଲି ଧରି ତାହାରି ଉପରେ ଆଧାରିତ ଏକ ବୃହତ୍ ଚିତ୍ର ଅତିବାସ୍ତବବାଦୀ ଶିଳ୍ପୀ ଥୋଇ ଦିଅନ୍ତି।

ସାହିତ୍ୟ କ୍ଷେତ୍ରରେ ଲୁଇ ଆରାଗଁ (Louis Aragon) ଥିଲେ ସର୍‌ରିଆଲିଜିମ୍ ଆନ୍ଦୋଳନର ଜଣେ ଅଗ୍ରଦୂତ। Andre Breton ୧୯୨୪ରେ ପ୍ରକାଶ କରିଥିଲେ ସର୍‌ରିଆଲିଜିମ୍ ସାହିତ୍ୟର ଇସ୍ତାହାର Le Manifeste du Surrealisme ଶୀର୍ଷକ ପୁସ୍ତକ। କବି Jacques Prevert ୧୯୩୦ ରେ ଏହି ଆନ୍ଦୋଳନରେ ହୋଇଥିଲେ ସଂପୃକ୍ତ ଏବଂ ତିଆରି କରିଥିଲେ ଗୋଟିଏ ସର୍‌ରିଆଲିଷ୍ଟ ସିନେମା। ସର୍‌ରିଆଲିଷ୍ଟିକ୍

ଆନ୍ଦୋଳନର ଅନ୍ୟତମ ବ୍ୟକ୍ତିତ୍ୱ ଥିଲେ ଶିଳ୍ପୀ ପିକାଶୋଙ୍କ ବଂଧୁ କବି Paul Eluard ଫରାସୀ ଆଧୁନିକ କବିତାର ଜଣେ ଅତ୍ୟନ୍ତ ପ୍ରଭାବଶାଳୀ କବି। ମହାକବି ଏଜ୍‌ରା ପାଉଣ୍ଡ ମଧ ସର୍‌ରିଆଲିଷ୍ଟିକ୍ ଶିବିରରେ ଥିଲେ ଆଶ୍ରିତ।

ପ୍ରତ୍ୟେକ ଶିଳ୍ପୀ ସ୍ୱପ୍ନ ପ୍ରବଣ, କଳ୍ପନାର ସ୍ରୋତରେ ପରୀଲୋକକୁ ସ୍ରଷ୍ଟାକୁ ଭସାଇ ନେବା ସର୍‌ରିଆଲିଜିମ୍‌ର କାମ। ଏହି ଟେକ୍‌ନିକ୍‌ରେ ରଚିତ ହୋଇଛି ଉପନ୍ୟାସମାନ ସ୍ୱପ୍ନ ଓ ମନସ୍ତତ୍ୱର ମିଶ୍ରଣରେ ସୃଷ୍ଟିରୁ ସୁଖର ଅନ୍ୱେଷଣ ସର୍‌ରିଆଲଷ୍ଟିକ୍‌ର ଧର୍ମ ଓ ସର୍‌ରିଆଲିଜିମ୍‌ର ମୁଖ୍ୟ ଉପାଦାନ।

## ନାଚୁରାଲିଜିମ୍ :

ବାହ୍ୟ ବସ୍ତୁର ପ୍ରାଂଜଳ ଚିତ୍ରଣ ଉପରେ ଗୁରୁତ୍ୱ ପ୍ରଦାନ କରାଯାଏ ବାସ୍ତବବାଦୀ ରଚନା କ୍ଷେତ୍ରରେ କିଂତୁ ନାଚୁରାଲିଜିମ୍ ପ୍ରୟୋଗ କ୍ଷେତ୍ରରେ ବାହ୍ୟ ରୂପର ଚିତ୍ରଣ ସହିତ ଚରିତ୍ରର ମାନସିକ ଅବସ୍ଥା ଓ ତାର ପରିବର୍ତ୍ତନ ଏବଂ ଅଭିବୃଦ୍ଧିର ବାସ୍ତବ ଚିତ୍ରଣ ଲାଭ କରିଥାଏ ସ୍ଥାନ। ନାଚୁରାଲିଜିମ୍ ମୁଭମେଣ୍ଟ ନେପଥ୍ୟରେ ଥାଏ ଚାର୍ଲସ୍ ଡାରୁଇନ୍‌ଙ୍କ ଦାର୍ଶନିକତା। ନାଚୁରାଲିଷ୍ଟମାନେ ଭାବନ୍ତି ମନୁଷ୍ୟ ପ୍ରକୃତିର ସୃଷ୍ଟି, ଆତ୍ମା ବୋଲି ତାର ନାହିଁ କିଛି। ସିଏ ପଶୁ ଓ ପକ୍ଷୀମାନଙ୍କଠାରୁ ଏକ ପ୍ରକାର ଭିନ୍ନ ଜନ୍ତୁ। ଏହି ତଥ୍ୟକୁ ସାମ୍ନାରେ ରଖି ସେମାନେ ମାନବ ଓ ତାର ସମାଜ ଏବଂ ସମାଜ ଓ ତାହା ଉପରେ ପଡୁଥିବା ଅର୍ଥନୈତିକ ପ୍ରଭାବକୁ କରନ୍ତି ଅନୁଧ୍ୟାନ। ପ୍ରକୃତିବାଦୀ ଉପନ୍ୟାସରେ ମାନବର ଯୌନ ଅନୁରାଗକୁ ଅତି ପ୍ରାଂଜଳ ଭାବେ କରାଯାଇଥାଏ ବର୍ଣ୍ଣନା। ଉପନ୍ୟାସ ଉପସଂହାରରେ ଥାଏ ଟ୍ରାଜିକ୍ (Tragic)। ପ୍ରଧାନ ଚରିତ୍ର ସମାଜ ଓ ତାର ପରିବେଶ ବିରୁଦ୍ଧରେ କରିଥାଏ ସଂଗ୍ରାମ। ତିଳ ତିଳ ହୋଇ ଜଳି ଥାଏ ନିଜର ଏକାଧିକ ଅଭିଳାଷର ଜ୍ୱାଳାରେ ଏବଂ ଶେଷକୁ ହୋଇଯାଇଥାଏ ସଂକୁଚିତ ଓ ଦୁର୍ବଳ। ଯେମିତି ଶେଷକୁ ଭାଙ୍ଗିପଡିବା ପ୍ରାଣୀଜ ମନୁଷ୍ୟର ଧର୍ମ! ଫରାସୀ ଔପନ୍ୟାସିକ ବଲ୍‌ଜାକ୍ ଉନବିଂଶ ଶତକ ଶେଷାର୍ଦ୍ଧରେ ଏହି ପଦ୍ଧତିର କରିଥିଲେ ସୂତ୍ରପାତ ଏବଂ ଏମିଲି ଜୋଲା ଥିଲେ ଏହି ଆନ୍ଦୋଳନର ପ୍ରବର୍ତ୍ତକ। ଆମେରିକୀୟ ସାହିତ୍ୟରେ ନାଚୁରାଲିଜିମ୍ ଆରମ୍ଭ କଲା ଏକ ନୂତନ ସମୟର ଆଲୋକ। ଏହା ବ୍ୟାପି ଚାଲିଲା ବିଶ୍ୱ ସାହିତ୍ୟ ସହିତ କରିବାକୁ ସାକ୍ଷାତ।

୧୯୧୦ ମସିହା ନାଚୁରାଲିଜିମ୍‌ର ଅନ୍ୟତମ ଜନକ ତଥା ଅଗ୍ରଦୂତ ଥିଓଡାର ଡ୍ରେଇଜରଙ୍କ ସୃଷ୍ଟି 'ସିଷ୍ଟର କ୍ୟାରୀ' ପ୍ରାପ୍ତ ହେଲା ପ୍ରକାଶନର ଆଲୋକ। ଫ୍ରାଙ୍କ ନୋରିସ୍‌ଙ୍କ ଉପନ୍ୟାସ 'ମାକ୍‌ଟେଗ୍ୟୁ' (୧୮୯୯) ଭିତ୍ତିଭୂମି ଉପରେ 'ସିଷ୍ଟର କ୍ୟାରୀ' ହୋଇଥିଲା ପ୍ରକାଶିତ। ଏହା ଏକ ନିମ୍ନବିତ୍ତ ପରିବାରର ଫଟୋ-ଚିତ୍ର।

୧୯୦୧ ମସିହା, ଅନ୍ୟ ଖଣ୍ଡିଏ ଉପନ୍ୟାସ ଦେଖିବାକୁ ମିଳିଲା 'ଦି ଅକ୍ଟୋପାସ୍' । କାଲିଫର୍ଣିଆର ଗୋଟିଏ ଗହମ କ୍ଷେତରେ କାମ କରୁଥିବା ଏକ କୃଷକ ପରିବାରର ଚିତ୍ର ରଚନା କରିଥିଲେ ସେଇ ଡ୍ରେଇଜର । ଏହି ଧାରାର ଦୁଇଟି ଉପନ୍ୟାସ ପୂର୍ବରୁ ପାଠକଙ୍କ ଦୃଷ୍ଟିକୁ ଆଣିଥିଲେ ଷ୍ଟିଫେନ୍ କ୍ରେନ୍ । ଖଣ୍ଡିଏ 'ମାଗି- ଏ ଗାର୍ଲ ଅଫ୍ ଦି ଷ୍ଟ୍ରୀଟ୍' (୧୮୯୩) ଏବଂ ଅନ୍ୟଟି 'ଦି ରେଡ୍ ବ୍ୟାଜ୍ ଅଫ୍ କରେଜ୍' (୧୮୯୫) । ଲଣ୍ଡନ ସାହିତ୍ୟରେ ଏହି ରୁଚିବାଦକୁ ନାମିତ କରାଗଲା ୧୯୦୦ ମସିହାରେ 'ନାଚ୍ୟୁରାଲିଜିମ୍' । ଡାରୁଇନ୍‌ଙ୍କ ସହିତ ନିତ୍‌ସେଙ୍କ ଦାର୍ଶନିକ ଦୃଷ୍ଟିକୁ ଅନୁସୃତ କରାଗଲା ଏବଂ ପ୍ରକାଶ ପାଇଲା 'ଦି ଆଇରନ୍ ହିଲ୍' ଓ 'ମାର୍ଟିନ୍ ହିଡ୍ରେନ୍' ଶୀର୍ଷକ ଦୁଇଟି ଉପନ୍ୟାସ । ଏହାର ଲେଖକ ଜ୍ୟାକ୍ ଥିଲେ ତତ୍‌କାଳୀନ ସମାଜର ଜଣେ ବୁର୍ଜୁଆ ଲୋକ । ତେଣୁ ଅର୍ଥ ସର୍ବସ୍ୱ ପୁଂଜିବାଦୀ ସଭ୍ୟତା, ସାମାଜିକ ଶୋଷଣ ଓ ଅନ୍ୟାୟ ପ୍ରତି ତାଙ୍କ ଉପନ୍ୟାସ ଫର୍ଦ୍ଦର ପଂକ୍ତି ଥିଲା ନୀରବ । କିନ୍ତୁ ସିନ୍‌କ୍ଲୟାର ଲୁଇସ୍ ପାଶ୍ଚାତ୍ୟ ଅର୍ଥ ସର୍ବସ୍ୱ ସଭ୍ୟତାକୁ ସାଟାୟାର ମାଧ୍ୟମରେ କରୁଥିଲେ ଉପସ୍ଥାପିତ, ଯେତେବେଳେ ଏହି ନାଚୁରଲିଜିମ୍ ସ୍ରୋତ ହେଉଥାଏ ପ୍ରବାହିତ ।

ଯଦିଓ ଏମିଲିଜୋଲା ଥିଲେ ନାଚୁରାଲିଷ୍ଟ କିନ୍ତୁ ଡ୍ରେଇଜଙ୍କ 'ସିଷ୍ଟାର କ୍ୟାରୀ' ହିଁ ଏହାର ପ୍ରକୃତ ଭଲ ଉଦାହରଣ । 'ସିଷ୍ଟର କ୍ୟାରୀ' ଏକ ନଗ୍ନ ଓ ନୀତିବିହୀନ ଉପନ୍ୟାସ । ଏଥିରେ ଜଣେ କୃଷକର ଯୁବତୀ କନ୍ୟା ସେଲୁନ୍‌ରେ କାର୍ଯ୍ୟ କରୁଥିବା ଗୋଟିଏ ପୁଅ ସହିତ ପ୍ରେମରେ ପଡିଛି, ତାରି ବର୍ଣ୍ଣନା ରହିଛି । ଗୋଟିଏ ନିମ୍ନବିତ୍ତ ପରିବାରର ଜୀବନ ଚିତ୍ର ବଡ଼ ନିରପେକ୍ଷ ଭାବେ ହୋଇଛି ଅଙ୍କିତ । ଅଗଣିତ ଚରିତ୍ରଙ୍କ ଯୌନ ଜୀବନ ପଟ୍ଟଚିତ୍ର ସିଏ ଅକ୍ଷରରେ ଆଙ୍କିଛନ୍ତି ଯାହା ପୂର୍ବରୁ ଏପରି ଭାବେ ସାହିତ୍ୟରେ ହୋଇନଥିଲା ପ୍ରଦର୍ଶିତ । ଅବଶ୍ୟ ଡ୍ରେଇଜର ନିଜେ ଥିଲେ ନିମ୍ନ ମଧ୍ୟବିତ୍ତ ବର୍ଗର ମଣିଷ । ତେଣୁ ସେହି ପ୍ରକାର ବର୍ଗଙ୍କ ସାମାଜିକ ଫଟୋ ତାଙ୍କ ଉପନ୍ୟାସ । ଏହାର ପ୍ରବଳ ବିରୋଧ କରାଯାଇଥିଲା । ସେହିଭଳି ତାଙ୍କର 'ଜେନୀ ଗେରହାର୍ଡତ୍' (୧୯୧୧) ଉପନ୍ୟାସ । ଜଣେ ଦୋକାନଦାର ଓ ଗୋଟିଏ ଯୁବତୀର ଅବୈଧ ପ୍ରଣୟ ଚିତ୍ର । ଡ୍ରେଇଜରଙ୍କୁ ଗ୍ରାସ କରିଥିଲା ଫରାସୀ ଔପନ୍ୟାସିକ ହେନ୍‌ରି ବଲ୍‌ଜାକ୍‌ଙ୍କ ପ୍ରବାହ । ବଲଜାକଙ୍କ ବହୁତ ଚରିତ୍ର ଆସିଥିଲେ ସମାଜର ନିମ୍ନବର୍ଗରୁ ଏବଂ ବଲଜାକ୍ ହିଁ ସାହିତ୍ୟରେ ସେମାନଙ୍କୁ ଦେଇଥିଲେ ପ୍ରତିନିଧିତ୍ୱ ।ଡ୍ରେଇଜରଙ୍କ ଶ୍ରେଷ୍ଠ ସୃଷ୍ଟି 'ଦି ଫାଇନାନ୍ସର' ଓ 'ଦି ଟାଇଟନ୍' ଉପନ୍ୟାସଦୁଇଟି ଗ୍ରାମ୍ୟ କୃଷକସଭ୍ୟତାକୁ ଅର୍ଥ ସର୍ବସ୍ୱ ପୁଂଜିବାଦ କିପରି ଗିଳୁଛି ତହିଁରେ ଚିତ୍ରିତ କରାଯାଇଛି । ସ୍ୱାଧୀନ ଯୌନଜୀବନ ଫଟୋ ତାଙ୍କ 'ଦି ଜିନିୟସ୍' ଉପନ୍ୟାସ । 'ଦି ଆମେରିକାନ୍ ଟ୍ରାଜେଡି' ତାଙ୍କ କାଳଜୟୀ ସୃଷ୍ଟି ଚେତନା ପ୍ରବାହ ଟେକ୍‌ନିକ୍‌ରେ

ରଚିତ ହୋଇଛି। ନାୟକ ଅର୍ଥସର୍ବସ୍ୱ ପ୍ରଶାସନର ହୋଇଛି ଶିକାର। ନାୟିକାକୁ ସିଏ ଫୋନ୍ କରୁଛି ଜଣେ ବଂଧୁଦ୍ୱାରା, ଯେହେତୁ ସେ ଏକ ପୁଂଜିପତି ପରିବାରରେ ବିବାହ କରିବାକୁ କରୁଛି ମନା।

ନିର୍ଯ୍ୟାତନାରେ ଅସ୍ଥିର ଯନ୍ତ୍ରଣା ଜର୍ଜରିତ ଓ ମୂକ ଗ୍ରାମୀଣ ମଣିଷଙ୍କ ଚିତ୍ର ଆଙ୍କିଛନ୍ତି ନାଚୁରାଲିଜିମ୍ ଟେକ୍‌ନିକ୍‌ରେ ଅନ୍ୟ ତିନିଜଣ ବିଶ୍ୱ ପ୍ରସିଦ୍ଧ ଲେଖକ। ସେମାନେ ହେଲେ ସେରେଉଡ୍ ଆଣ୍ଡେରସନ୍, ସିନ୍‌କ୍ଲେୟାରର୍ସ ଲୁଇସ୍ ଓ ଆଲେନ୍ ଗ୍ଲାସଗୋ। ଲୁଇସ୍‌ଙ୍କ ପ୍ରଥମ ଉପନ୍ୟାସ ‘ମେନ୍‌ଷ୍ଟ୍ରୀଟ୍’ (୧୯୧୦) ଏବଂ ୧୯୧୨ରେ ‘ବାବିଟ’ ପ୍ରକାଶିତ ହୋଇଛି। ଏହା ଥିଲା ହକ୍‌ସଲେଙ୍କ ଉପନ୍ୟାସ ‘ବ୍ରେଭ୍ ନିୟୁ ୱାର୍ଲଡ଼୍’ ଯେମିତି। କିମ୍ବା ଜର୍ଜ ଅରୱେଲ୍‌ଙ୍କ ‘୧୯୮୪’ ଉପନ୍ୟାସର ‘ୱାର୍ ଇଜ୍, ପିସ୍’ ଫ୍ରିଡମ୍ ଇଜ୍ ସ୍ଲେଭରି ଓ ‘ଇଗ୍ନୋରେନ୍ସ ଇଜ୍ ଷ୍ଟ୍ରେଂଥ୍’ ଘୋଷଣାପରି ନିର୍ଦ୍ଧାରିତ ଆଇନ୍ ପ୍ରତି ଅସୁଖୀ ‘ବାବିଟ’ ନୂଆ ଦୁନିଆଟିଏ ଖୋଜିଛି। ‘ ୧୯୮୪’ର ଗୁବାସୋଭପରି ସାମାଜିକ ଶୋଷଣ ଓ ଯାତନା ପ୍ରତି ସିଏ ଦୋଷାରୋପ ବାଢ଼ିଛି।

ଲେଖକ ଯାହା କହିଛନ୍ତି, ତାଙ୍କ ଭାବନା ବା ଦର୍ଶନ ଯାହା, ତାହା ବାସ୍ତବ ହୋଇ ହୋଇଛି ପ୍ରକଟିତ। ବାସ୍ତବବାଦ ଆହୁରି ଶାଣିତ ଓ ଉଦାହରଣ ହୋଇ ନୁହେଁ, ବରଂ ଷୋଳକଳା ନେଇ, ସ୍ୱୟଂ ସଂପୂର୍ଣ୍ଣ ଭାବେ, ଯାହା ଯେମିତି ଅଛି, ତାହା ଠିକ୍ ସେମିତି, କଳାତ୍ମକ ଭାବେ ନାଚୁରାଲିଜମ୍‌ରେ ହୋଇଛି ପ୍ରକାଶିତ। ସମାନ ପ୍ରକାରର ଉପନ୍ୟାସ ଭାବେ ହର୍ମାନ୍ ହେସ୍‌ଙ୍କ ‘ସିଦ୍ଧାର୍ଥ’, ଗର୍କୀଙ୍କ ‘ଦି ମଦର’, ହେମିଂୱେଙ୍କ ‘ଦି ଓଲଡ଼୍‌ମ୍ୟାନ୍ ଏଣ୍ଡ୍ ଦି ସି’ ଏବଂ ଡଷ୍ଟୟିଭସ୍କିଙ୍କ ‘କ୍ରାଇମ୍ ଏଣ୍ଡ୍ ପନିଶ୍‌ମେଣ୍ଟ’ ଉପନ୍ୟାସକୁ ସାମ୍ନାକୁ ଅଣାଯାଇପାରେ। ଷ୍ଟିଫେନ୍ ହ୍ୟୁଗ୍‌ଙ୍କ ‘ ଏ ଲେଟର ଫ୍ରମ୍ ଆନ୍ ଅନ୍‌ନୋନ୍ ୱମ୍ୟାନ’କୁ ମଧ୍ୟ ବିଚାର କରାଯାଇପାରେ। ଯଦିଓ ଏହି ଉପନ୍ୟାସଗୁଡ଼ିକ ନାଚୁରାଲିଷ୍ଟିକ୍ ଉପନ୍ୟାସ ନୁହନ୍ତି, କିନ୍ତୁ ଏହି ଉପନ୍ୟାସଗୁଡ଼ିକର ମାନବ ମାନସିକ ଅବସ୍ଥାର ଅଧ୍ୟୟନ, ସାମାଜିକ ପରିସ୍ଥିତିର ଅଧ୍ୟୟନ ଓ ମୂଲ୍ୟବୋଧର ଉପସ୍ଥାପନ କରାଯାଇଛି; ଯାହା ନାଚୁରାଲିଷ୍ଟ୍ ଶୈଳୀରେ ହୋଇଥାଏ ଦୃଷ୍ଟି ଗୋଚର।

ସାମାଜିକ ଶୋଷଣ, ମଣିଷର ଯୌନ ଯାତନା ଓ ଅନନ୍ୟୋପାୟ ଅସୁଖୀ ମଣିଷର ଛବି ପ୍ରକାଶ ହିଁ ନାଚୁରାଲିଷ୍ଟକ୍ ଲେଖକଙ୍କ ସର୍ଜନାତ୍ମକ ଆଦର୍ଶ। ଧର୍ମ, ବିଜ୍ଞାନ, ରାଜନୀତି, ବାଣିଜ୍ୟ ଓ ସାମାଜିକନୀତି ଆଦିର ରହିଥାଏ ଚିତ୍ର। କିନ୍ତୁ ଉପସ୍ଥାପନ ଶୈଳୀରେ ଔପନ୍ୟାସିକ ସୌଦାଗରୀ ସଭ୍ୟତାର ହୋଇ ନଥାନ୍ତି ଶିକାର। ଯାହା ଯେମିତି ଅଛି, ତାକୁ ଠିକ୍ ସେମିତି ଉପସ୍ଥାପିତ କରିଥାନ୍ତି।



# ସମାଲୋଚନା ସାହିତ୍ୟ

## ସାହିତ୍ୟ ସମାଲୋଚନାର ଉତ୍ପତ୍ତି, ଉଦ୍ଦେଶ୍ୟ ଓ ପରିସର

୧୫୫୪ ମସିହାରେ ଜଣେ ଇତାଲୀୟ Robortello ନାମକ ବ୍ୟକ୍ତି ଖଣ୍ଡିଏ ଗ୍ରୀକ୍ ରଚନାକୁ 'ଅନ୍ ଦି ସେବ୍ଲିମ୍' ଶୀର୍ଷକରେ କରନ୍ତି ଅନୁବାଦ, ଯାହାର ମୂଳ ଲେଖକ ଡିଓନୀସିଅସ୍ ଲଙ୍ଗିଅସ୍ (Dionysius Longinus) । ବହିଟି ଗ୍ରୀକ୍-ରୋମାନ୍ ସାହିତ୍ୟ-ସମାଲୋଚନା । ଉନବିଂଶ ଶତକର ଗବେଷକ କେତେକ ନିର୍ଣ୍ଣୟ କରିଛନ୍ତି, ବହିଟି ତୃତୀୟ ଶତାବ୍ଦୀର ରଚନା । ଗବେଷକ ପ୍ରଫେସର ଡକ୍ଟର ରଘୁକୁଳ ତିଳକ ଲେଖିଛନ୍ତି, 'Also Longinus briefly points out that the use of simile and comparison, too, is helpful in achiving splendour of style' । ଶୈଳୀର ସୌନ୍ଦର୍ଯ୍ୟ ସଂପାଦନ ପାଇଁ ଉପମା ଓ ତୁଳନାର କରିଥିଲେ ଗ୍ରହଣ । ସିଏ ହୋମର ଏବଂ ହିବ୍ରୁ ଭାଷା ସାହିତ୍ୟରୁ ତୁଳନା ପାଇଁ ସଂଗ୍ରହ କରିଥିଲେ ଉଦାହରଣ ।

ମେଥଡ଼ସ୍ ଅଫ୍ କ୍ରିଟିସିଜିମ୍ : ହିଷ୍ଟୋରିକାଲ୍, କଂପାରେଟିଭ ଏବଂ ଆନାଲିଟିକାଲ୍; ତିନି ପ୍ରକାର । ଲଙ୍ଗିନସ୍ ହିଷ୍ଟୋରିକାଲ୍ ଏବଂ କଂପାରେଟିଭ୍ ପଦ୍ଧତିରେ ଲେଖିଛନ୍ତି ସାହିତ୍ୟ-ସମାଲୋଚନା । ଅବେରକ୍ରୋମ୍ବି (Abercrombi) ତାଙ୍କ ରଚିତ 'ପ୍ରିନ୍ସିପୁଲସ୍ ଅଫ୍ ଲିଟେରାରୀ କ୍ରିଟିସିଜିମ୍'ରେ ଉଲ୍ଲେଖ କରିଛନ୍ତି, ଲଙ୍ଗିନସ୍ 'The first comparative critic of lierature' ପ୍ରଥମ ତୁଳନାତ୍ମକ ସାହିତ୍ୟ ସମାଲୋଚକ । ପୁନଶ୍ଚ ଆର.ଏ.ସ୍କଟ-ଜେମ୍ସ ଲେଖିଛନ୍ତି, ଲଙ୍ଗିନସ୍ 'The first romantic critic, ବିଶ୍ୱର ପ୍ରଥମ ରୋମାଣ୍ଟିକ ସାହିତ୍ୟ ସମୀକ୍ଷା ସ୍ରଷ୍ଟା । ସାହିତ୍ୟର ତୁଳନାତ୍ମକ ତର୍ଜମା, ଉଦାହରଣର ପ୍ରୟୋଗ ଓ ଉଦ୍ଧୃତାଂଶ (quotation)ର ବ୍ୟବହାର ତୃତୀୟ ଶତାବ୍ଦୀରୁ ଗ୍ରୀକ୍-ରୋମାନ୍ ସାହିତ୍ୟରୁ ବିଶ୍ୱସାହିତ୍ୟକୁ ବ୍ୟାପିଛି ।

ସାହିତ୍ୟ ସମାଲୋଚନାର ଉଦ୍ଦେଶ୍ୟ ନାଂଦନିକ ତୃପ୍ତି ପ୍ରତି ଅନୁକୂଳ ମତ ପ୍ରଦାନ ଏବଂ ସୃଷ୍ଟିରୁ ମିଳୁଥିବା ସ୍ୱାଦ ଓ ଆନନ୍ଦ ପାଠକଙ୍କୁ କରାଇବା ଅବବୋଧ । ସମାଲୋଚକ ଏପରି ଜଣେ ବ୍ୟକ୍ତି ହୋଇଥିବା ଉଚିତ୍, ଯାହାଙ୍କର ସଠିକ୍ ବିଚାରର ଜ୍ଞାନ ଓ ଥିବ ସାମର୍ଥ୍ୟ । ତାଙ୍କର କର୍ମ ରଚନାଟି ପଢ଼ି ସିଏ କହିବେ କ'ଣ ଲେଖିଛନ୍ତି

ଏହାର ସ୍ରଷ୍ଟା ! ଅଭିବ୍ୟକ୍ତି କରିବାରେ ସିଏ କେତେଦୂର ହୋଇଛନ୍ତି ସଫଳ ଏବଂ ରଚନାଟିର ଅଭିବ୍ୟକ୍ତି ମୂଲ୍ୟବାନ ତ ? ସମାଲୋଚନା ସମାଲୋଚକଙ୍କ ପ୍ରଜ୍ଞା, ପ୍ରତିଭା, ସମୟ ଓ ପରିବେଶକୁ ନେଇ ହୋଇଥାଏ ବିକଶିତ। ବିଷୟ ପ୍ରକାଶପଦ୍ଧତି, ଟେକ୍‌ନିକ୍ ଓ ଭାଷାକୁ ପରୀକ୍ଷା କରି ସିଏ ତାହାର ଶିଳ୍ପଗତ ବା କଳାଗତ ମୂଲ୍ୟ ଖୋଜିଥାନ୍ତି। ଡ଼.ତିଳକ ଲେଖିଛନ୍ତି, 'duly tested and examined with reference to similar works of literature', ଯାହା ପାଠକଙ୍କୁ ସୃଷ୍ଟିଟିର ସଫଳତା ଉପରେ ସୁନ୍ଦର ଧାରଣାଟିଏ କରାଇଥାଏ ଗଠନ।

## ସମାଲୋଚନାର ନାଂଦନିକ ତତ୍ତ୍ୱ

ପ୍ରତ୍ୟେକ ରଚନାର ସ୍ୱାତନ୍ତ୍ର୍ୟ, ତାହାର ଥାଏ ତିନୋଟି ଚାରିତ୍ରିକ ଶ୍ରେଷ୍ଠତ୍ୱ। ସେଗୁଡିକ ହେଲା, ବିଷୟବସ୍ତୁ ବା ଘଟଣା (matter) ଏହାର ପ୍ରକାଶ ପଦ୍ଧତି (manner) ଏବଂ ଶେଷଟି (capacity to please) ସୁଖ ଦେବା ସାମର୍ଥ୍ୟ ବା କଳ୍ପନାକୁ ନାଂଦନିକ ତୃପ୍ତିରେ ଜୁଡ଼୍‌ବୁଡ଼୍ କରିବା ଗୁଣ। ବିଭିନ୍ନ ଦୃଷ୍ଟି କୋଣରୁ ସୃଷ୍ଟିର ଏହି ତ୍ରୟଚାରିତ୍ରିକତାର କରାଯାଇଥାଏ ଆଲୋଚନା।

ସମୟ ଅନୁଯାୟୀ ଗଦ୍ୟ, ଗଳ୍ପ ଓ କବିତା ବଦଳୁଥିବା ପରି ସମାଲୋଚନା ପଦ୍ଧତି ମଧ୍ୟ ବଦଳିଅଛି। ଆଧୁନିକ ସମାଲୋଚନା ପଦ୍ଧତିକୁ ଦୁଇ ଭାଗରେ ବିଭକ୍ତ କରାଯାଉଅଛି। ଏକ-Extrinsic ଓ ଦୁଇ-Ontological criticism। ସମକାଳୀନ ମନସ୍ତତ୍ତ୍ୱ, ସମାଜତତ୍ତ୍ୱ, ସାଂସ୍କୃତିକ ଚେତନା ଓ ଲେଖକଙ୍କ ଜୀବନ ସହିତ କେତେ ଘନିଷ୍ଠ ଭାବେ ସଂପୃକ୍ତ ସୃଷ୍ଟିଟି Extrinsic Criticismରେ ହୁଏ ଆଲୋଚିତ। Ontological ସମାଲୋଚନାରେ ବିଶଦ ଭାବରେ ବା ତନ୍ନ ତନ୍ନ କରି, ଧାଡିପରେ ଧାଡି, ଶବ୍ଦ ପରେ ଶବ୍ଦର ପରୀକ୍ଷା ଓ କରାଯାଇଥାଏ ଅଧ୍ୟୟନ। ଅବୋଧ୍ୟ, ପରୋକ୍ଷ ଉଚ୍ଚାରଣ, ସହାୟତା (ରେଫରେନ୍ସ) ଉଦ୍ଧୃତି ପ୍ରଭୃତିର ବ୍ୟାଖ୍ୟା ଓ ଉତ୍ତମ ଅବବୋଧ କରାଇବାରେ କରିଥାଏ ସହାୟତା।

ସମାଲୋଚନାର ନୀତି ତିନୋଟି। ଗୋଟିଏ ଦି ପ୍ରିନ୍‌ସିପୁଲ୍ ଅଫ୍ ଟ୍ରୁଥ୍ ଯାହା ଶ୍ରୀ ଅରବିଂଦଙ୍କ ଭାଷାରେ 'ସତ୍ୟାତ୍ମକ ସୂର୍ଯ୍ୟ'। ସାଂସାରିକ ସତ୍ୟଠୁ ସାହିତ୍ୟଗତ ସତ୍ୟ ଭିନ୍ନ। ସାହିତ୍ୟଗତ ସତ୍ୟ 'ସୌନ୍ଦର୍ଯ୍ୟ', ତାହାର 'ଭୋଗ' ଓ ବିଭୂତି ଉପରେ ଆଧାରିତ।

ଅନ୍ୟଟି ହେଲା 'ଦି ପ୍ରିନ୍‌ସିପୁଲ୍ ଅଫ୍ ସିମେଟ୍ରୀ'। ଯେଉଁଥିରେ ସଠିକ୍ ଉପାଦାନ ନିର୍ବାଚନ ବାସ୍ତବିକତାର କରିଥାଏ ଉପସ୍ଥାପନ। ରଚନାର ପ୍ରତ୍ୟେକ ଅଂଶ ଏକଠୁ

ଏକ ଅବିଚ୍ଛେଦ୍ୟ ଓ ସଂପର୍କିତ। ଯେମିତି ଗୋଟିଏ ପଦ୍ମର ଅନେକ ପାଖୁଡ଼ା, ଗୋଟିଏ କେଂଦ୍ରରେ ଆବଦ୍ଧ; ହୋଇ ନଥିବେ କେଂଦ୍ରଚ୍ୟୁତ।

ଶେଷଟି 'ପ୍ରିନ୍ସିପୁଲ ଅଫ୍ ଆଇଡିଅଲ୍‌ଆଇଜେସନ୍' ପାଠକଙ୍କୁ ଯାହା ଭଲ ଲାଗୁ ନଥିବ ତାକୁ ବାଛି ବାହାର କରିବା। କେଉଁ ପୁଣ୍ୟ ବଳରେ ରଚନାଟି ସୁଖ ଦେଉଛି, ସେହି ସୌନ୍ଦର୍ଯ୍ୟର ପୁଣ୍ୟକୁ ଦେଖାଇବା ନିୟମର ନାମ ପ୍ରିନ୍ସିପୁଲ୍ ଅଫ୍ ଆଇଡିଅଲ୍‌ଆଇଜେସନ୍।

ମୋଟକଥା, ଜଣେ ଲେଖିଥାନ୍ତି; କ'ଣ ସ୍ରିଏ୍ ଲେଖିଛନ୍ତି, ସମାଲୋଚକ ନିଜ ପ୍ରଜ୍ଞାଦୀପ୍ତ ଭାଷାରେ ତାହାକୁ ପୁନର୍ଜାତ କରନ୍ତି। ଲୋକ ଲୋଚନ ଆଢୁଆଳରେ ରହିଯାଉଥିବା ସୃଷ୍ଟିଟିର ଶ୍ରେଷ୍ଠତ୍ୱର ଅମୃତ ବିତରିତ କରିଦିଅନ୍ତି। ସମାଲୋଚକଙ୍କ ଅଲଗା ସାମର୍ଥ୍ୟ ଆଉ ନଥାଏ କିଛି।

## ସାହିତ୍ୟ ସମାଲୋଚନା ପଦ୍ଧତି କେତୋଟି

ମୂଳ ଗ୍ରୀକ୍ ଶବ୍ଦ ପ୍ରକରଣରୁ ଜନ୍ମିତ 'କ୍ରିଟିସିଜିମ୍'ଶବ୍‌ଦଟିର ଅର୍ଥ ଇଂରାଜୀରେ 'ଜଜ୍‌ମେଣ୍ଟ'। 'ଲିଟେରାରୀ କ୍ରିଟିସିଜିମ୍' ଅର୍ଥ 'ଏକସର ସାଇଜ ଅଫ୍ ଜଜ୍‌ମେଣ୍ଟ ଅନ୍ ୱାର୍କସ ଅଫ୍ ଲିଟେରେଚର'। ସାହିତ୍ୟ କୃତି ଉପରେ ଏକ ମାନସିକ ବ୍ୟାୟାମ ଅଟେ ସାହିତ୍ୟ ସମାଲୋଚନା। ସାହିତ୍ୟ ସମାଲୋଚନାର କାର୍ଯ୍ୟ ହେଲା ପରୀକ୍ଷା କରିବା ସୃଷ୍ଟିଟିର ଉତ୍କର୍ଷ, ତୃଟି ବିଚ୍ୟୁତି ଏବଂ ଶେଷତଃ ମୂଲ୍ୟାୟନ କରିବା ତାହାର କଳାଗତ ମୂଲ୍ୟ। ଏହା ଏକ ସରଳ ବିଷୟ ଆଦୌ ନୁହେଁ। ଭିନ୍ନ ଭିନ୍ନ ଦୃଷ୍ଟିକୋଣ, ତତ୍ତ୍ୱ ଓ ସଂଜ୍ଞାଦ୍ୱାରା ଦ୍ୱଂଦ୍ୱପୂର୍ଣ୍ଣ। କିନ୍ତୁ ସାହିତ୍ୟ ସମାଲୋଚନା ବା ସାହିତ୍ୟମୀମାଂସା ଯେତିକି ଗୁରୁତ୍ୱପୂର୍ଣ୍ଣ ସେତିକି ମହତତମ କର୍ମ। ଗୋଟିଏ ଜାତିର ମାପଦଣ୍ଡ ତାହାର ସାହିତ୍ୟ। ଯେଉଁ ଜାତି ଯେତିକି ସଭ୍ୟ ଓ ଶିକ୍ଷିତ ତାହାର ସାହିତ୍ୟ ସେତିକି ସମୃଦ୍ଧ ଓ ସୁସ୍ଥ। ସୁସ୍ଥ ସାହିତ୍ୟ ସୃଷ୍ଟି ପାଇଁ ବଳିଷ୍ଠ ସାହିତ୍ୟ ସମାଲୋଚନା ଅପରିହାର୍ଯ୍ୟ।

ବିଂଶଶତକର ସମାଲୋଚନା ସାହିତ୍ୟ ବା ସମୀକ୍ଷା ସାହିତ୍ୟ ମୁଖ୍ୟତଃ ପାଞ୍ଚପ୍ରକାର। ପାଞ୍ଚଟି ପଦ୍ଧତିରେ ସାହିତ୍ୟର ସମାଲୋଚନା କରି, ସୁବର୍ଣ୍ଣକୁ କଷଟିରେ ପରୀକ୍ଷା କରିବା ପରି ସାହିତ୍ୟ ସମାଲୋଚକ କହିଥାନ୍ତି ତାହା କେତେଦୂର ଖାଣ୍ଟି। କଳାଗତ ଓ ନାଂଦନିକ ତତ୍ତ୍ୱଗତ ତାହା କେତେ ଉତ୍କୃଷ୍ଟ; ଶବ୍‌ଦଶିଳ୍ପୀଙ୍କ ନିଷ୍ଠାର ସାର୍ଥକତା ହୋଇଥାଏ ଏହାଦ୍ୱାରା ପ୍ରତିପାଦିତ।

**୧- ଫର୍ମାଲିଷ୍ଟକ୍ରିଟିସିଜିମ୍ ବା ପ୍ରଚଳିତ ପାରଂପରିକ ସାହିତ୍ୟ ସମାଲୋଚନା:**

ଅଷ୍ଟାଦଶ ଶତକ ଜର୍ମାନୀ ଦାର୍ଶନିକ ଇମାନୁଏଲ କାଣ୍ଟ (୧୭୭୦-୧୮୦୪) ସାଧାରଣତଃ ସାହିତ୍ୟର ଏହି ସମାଲୋଚନା ପଦ୍ଧତିର ସ୍ରଷ୍ଟା।

ଗୋଟିଏ କବିତା ଖୁବ୍ ସୁନ୍ଦର, ମଧୁର, ବର୍ଣ୍ଣନା ଯଥାଯଥ ଏବଂ ରଚନା ପଦ୍ଧତି ଠିକ; ମାତ୍ର ପ୍ରାଣହୀନ। ଶବ୍ଦ ଶରୀରରେ ସେହି ପ୍ରାଣଟି କ'ଣ ? କାଣ୍ଟ୍ ବୁଝାଇଥିଲେ, ସେହି ପ୍ରାଣଟି ହେଲା an aesthetical sense, ଏକ ସୌନ୍ଦର୍ଯ୍ୟବୋଧର ଚେତନା। ତତ୍ତ୍ୱଟିକୁ ବୁଝାଇ ଦେଲେ, 'that this principie is nothing else than the faculty of presenting AESTHETIC IDEAS'। ଏସ୍ଥେଟିକ୍ ଆଇଡିଆ ବା ନଂଦନତାତ୍ତ୍ୱିକ ଧାରଣା କ'ଣ ? ପୁଣି ତାହା ବୁଝାଇଲେ, 'an aesthetic idea mean that representation of the imagination which induces much thought'। ହେତୁବାଦୀ ଧାରଣାର ଏହା ବିପରୀତ ପକ୍ଷ। ତାଙ୍କର ମଂଜ କଥା ହେଲା - 'ଦି ଜଜ୍‌ମେଣ୍ଟ ଅଫ୍ ଟେଷ୍ଟ ଇଜ୍ ଏସ୍ଥେଟିକ୍'। ସ୍ୱାଦର ବିଚାର୍ଯ୍ୟ ପାଇଁ ନିର୍ଦ୍ଦିଷ୍ଟ ଅବ୍‌ଜେକ୍ଟିଭ ନିୟମ ରହିଛି। ତାହାକୁ ସିଏ 'କମନସେନ୍ସ' ବୋଲି ଆଖ୍ୟା ଦେଇଛନ୍ତି। ସ୍ରଷ୍ଟାର କେବଳ ଅନୁଭବ ନୁହେଁ, ଚେତନାକୁ ମଧ୍ୟ ଶକ୍ତ ସ୍ଥାପିତ ନୀତିରେ ହେବ ଦେଖିବାକୁ। ଏହି ପଦ୍ଧତିର ଅନ୍ୟ ଜଣେ ପ୍ରବାଚକ ଥିଓଡୋର ଏମ୍.ଗ୍ରୀନ୍। ସିଏ 'ଦି ଆର୍ଟ ଏଣ୍ଡ୍ ଦି ଆର୍ଟ ଅଫ୍ କ୍ରିଟିସିଜିମ୍' (୧୯୪୦) କରିଛନ୍ତି ରଚନା। ସେ କହନ୍ତି, 'ସୁନ୍ଦର' ଏହି ଶବ୍ଦଟିର ଅର୍ଥ କ'ଣ ? ଜଣେ ଯେତେବେଳେ ବହିଟି ପଢ଼ି ବା ଛବିଟିକୁ ଦେଖି ହୋଇ ଯାଏ 'ନାଂଦନିକ ତୃପ୍ତ' କହେ 'ସୁନ୍ଦର' ହୋଇଛି।

ଏହି ପଦ୍ଧତିରେ କବିତାର ଆଲୋଚନା ସାମୁଏଲ କଲେରିଜ୍‌ଙ୍କ ରଚନା 'ବାୟୋଗ୍ରାଫିଆ ଲିଟେରାରିଆ'। ବିଂଶ ଶତକର ପ୍ରସିଦ୍ଧ ସାହିତ୍ୟ ସମାଲୋଚକ ଫ୍ଲଷ୍ଟ, ପାଉଣ୍ଡ, ଇଲିୟଟ, ରିଚାର୍ଡସ୍ ଓ ମାର୍କ ସୋରେର୍ ପ୍ରଭୃତି ଫର୍ମାଲିଷ୍ଟ କ୍ରିଟିକ୍ ଅଟନ୍ତି।

**୨ ଜେନ୍‌ରେ କ୍ରିଟିସିଜିମ୍ ବା ସାଧାରଣ ଜନଜୀବନର ଘଟଣା ସବୁର ଚିତ୍ର ସମୀକ୍ଷା:**

ଆରିଷ୍ଟଟଲଙ୍କ 'ପୋଏଟିକ୍ସ'ରୁ ଏହି ପଦ୍ଧତିର ଆରମ୍ଭ। କବିତାର କଳା, ତାହାର ଚରିତ୍ର, ଶବ୍ଦ ସଂଯୋଜନା ଓ ସଂଫଳତା ପ୍ରାକୃତିକ ନିୟମର କରେ ଅନୁସରଣ। କେବଳ

କବିତା ନୁହେଁ, ଗଦ୍ୟ ଓ ଗୀତି ମଧ୍ୟ ସମୟର କରିଥାଏ ପ୍ରତିନିଧିତ୍ୱ। 'ଅବିକଳ ନକଲ' ହୁଏ ସୃଷ୍ଟିରେ ଉପସ୍ଥାପିତ। ଟ୍ରାଜେଡିରେ ଦର୍ଶକ ବା ପାଠକ କାନ୍ଦିବ। ବୀରରସ ବେଳେ ନିଜେ ଯୋଦ୍ଧାଟିଏ ଲେଖା ନିଜକୁ ଅନୁଭବ କରିବ। Northnrop Frye, R.S. Crane, Elder Olsan and Wayne C.Booth ପ୍ରଭୃତି ଏହି ପଦ୍ଧତି ଆଲୋଚନାର ପ୍ରବଚକ।

ୱେନି ସି. ବୁଥ୍ ଲେଖିଛନ୍ତି, 'ଟେଲିଙ୍ଗ୍ ଏଣ୍ଡ ସୋଇଙ୍ଗ୍'; ଘଟଣା, ଦୃଶ୍ୟ ବା ଅନୁଭବଟିକୁ ଶବ୍ଦରେ କହି ପାଠକ ବା ଦର୍ଶକଙ୍କୁ ଦେଖାଇ ଦେବାକୁ ହେବ। ଲେଖକ ବା କବି କେତେଦୂର ସଫଳ ହୋଇଛନ୍ତି ଏହି କହିବା ମାଧ୍ୟମରେ ଦେଖାଇ ଦେବାରେ - ଏହି ପଦ୍ଧତିର ସମୀକ୍ଷାରେ ସମୀକ୍ଷକ କରିଥାନ୍ତି ଉପସ୍ଥାପିତ। ତଦନୁଯାୟୀ ସୃଷ୍ଟିର ଉତ୍କୃଷ୍ଟତା ଓ ସାର୍ଥକତା ହୁଏ ପ୍ରତିପାଦିତ।

**୩- ଆର୍କିଟାଇପାଲ୍ କ୍ରିଟିସିଜିମ:**

ମନସ୍ତତ୍ତ୍ୱବିଦ୍ ଡାକ୍ତର କାର୍ଲ ଗୁସ୍ତାଭ ଜଙ୍ଗ୍‌ଙ୍କ ମିଳିତ ଅବଚେତନାର ଆର୍କିଟାଇପ୍ (ଆର୍କିଟାଇପ୍ ଅଫ୍ ଦି କଲେକ୍ଟିଭ୍ ଅନ୍‌କନ୍‌ସିଅସ୍) ତତ୍ତ୍ୱ ଭିତରୁ ଏହି ସମାଲୋଚନା ପଦ୍ଧତିର ଉଦ୍ଭବ। ଏହା ମୂଳରେ ମନସ୍ତତ୍ତ୍ୱ। ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ରଚନାର ଆର୍କିଟାଇପ୍ ଗୁଡିକୁ ଅଧ୍ୟୟନ କରିବାକୁ ହୁଏ। ସାହିତ୍ୟର ଆଙ୍ଗିକ, ବାସ୍ତବବାଦ, ମିଥ୍ ଓ ମନସ୍ତତ୍ତ୍ୱ ପ୍ରଭୃତିର ଆଲୋଚନା ଏହି ପଦ୍ଧତିର କାମ। ନର୍‌ଥ୍ରୋପ୍ ଫ୍ରାଇ ରଚନା କରିଛନ୍ତି 'ଦି ଆର୍କିଟାଇପ୍ସ ଅଫ୍ ଲିଟେରେଚର' ଏବଂ ଫିଲିପ୍ ହ୍ୱିଲି ଟାଇଟ୍, ଲେସ୍‌ଲି ଫିଲ୍‌ଡର ରିଚାର୍ଡ ଚେସ୍ ଓ ହର୍ବଟ ଉଇସିଙ୍ଗର ପ୍ରଭୃତି ଏହି ମନସ୍ତାତ୍ତ୍ୱିକ ପଦ୍ଧତିର ସାହିତ୍ୟ ସମାଲୋଚନା କରି ପ୍ରାପ୍ତ ହୋଇଛନ୍ତି ପ୍ରସିଦ୍ଧି।

**୪- ହିଷ୍ଟୋରିକାଲ୍ କ୍ରିଟିସିଜିମ୍ ବା ଐତିହାସିକ ପଦ୍ଧତିରେ ସାହିତ୍ୟ ସମୀକ୍ଷା:**

Hippolyte Taine (୧୮୨୮-୯୩) ଊନବିଂଶ ଶତକ ବିଖ୍ୟାତ ସାହିତ୍ୟ ଇତିହାସ ସମୀକ୍ଷକ। ତାଙ୍କ ରଚିତ 'ହିଷ୍ଟୋରି ଅଫ୍ ଇଂଲିଶ୍ ଲିଟେରେଚର (୧୮୫୬-୯୬) ଏହି ଆଲୋଚନା ପଦ୍ଧତିର ଭିତ୍ତିସ୍ଥାପକ ପୁସ୍ତକ। ସାହିତ୍ୟକୁ ଇତିହାସ ଦୃଷ୍ଟିକୋଣରୁ ଅଧ୍ୟୟନ କରିବା ଏହି ପଦ୍ଧତିର ଲକ୍ଷଣ। ଏହି ପଦ୍ଧତିର ପ୍ରସିଦ୍ଧ ଆଲୋଚକ ଏଡ୍‌ମଣ୍ଡ ଉଇଲସନ୍ (୧୮୯୫-୧୯୭୨) ରଚନା କରିଛନ୍ତି ଖଣ୍ଡିଏ ସାହିତ୍ୟର ଇତିହାସ ଓ ସମାଲୋଚନା 'ଦି ଟ୍ରିପଲ୍ ଥିଙ୍କରସ୍' (୧୯୩୮)। ସ୍ମୃତି ଉଦ୍ରେକକାରୀ ଜୀବନୀ ଲେଖକ ରିଚାର୍ଡ ଇଲ୍‌ମ୍ୟାନଙ୍କ ପୁସ୍ତକ 'ଜେମ୍ସ ଜୟସ୍' ଏହି ପଦ୍ଧତିରେ ରଚିତ ଓ ଇଂଲିଶ୍ ଜାତୀୟ ପୁରସ୍କାର ପ୍ରାପ୍ତ। ତାହାଙ୍କ ଅନ୍ୟ ଖଣ୍ଡିଏ ବିଖ୍ୟାତ ପୁସ୍ତକ

'ଇଏଟ୍‌ସ୍ : ଦି ମ୍ୟାନ୍ ଏଣ୍ଡ୍ ଦି ମାସ୍କ୍' ଏବଂ ଅନ୍ୟ ଖଣ୍ଡିଏ 'ଦି ଆଇଡେଣ୍ଟିଟି ଅଫ୍ ଇଏଟସ୍'। ବ୍ରୁସି ହାର୍କନେସ୍ ରଚନା କରିଛନ୍ତି ସାହିତ୍ୟ ଇତିହାସ ସମାଲୋଚନା 'Conrad's Heart of Darkness (୧୯୬୦) ଓ 'Conrad's Secret Sharer' (୧୯୬୨) ତାଙ୍କର ଅନ୍ୟ ଏକ ହିଷ୍ଟୋରିକାଲ କ୍ରିଟିସିଜିମ୍ ପୁସ୍ତକ। ସାହିତ୍ୟିକ ଇତିହାସ ରଚନା କ୍ଷେତ୍ରରେ ପ୍ରଫେସର ଏ.ପି.ଏସ୍ ଉଡ୍ ହାଉସ୍ ମଧ୍ୟ ଜଣେ କୃତବିଦ୍ୟ ବ୍ୟକ୍ତି। 'ଦି ପୋଏଟ୍ ଏଣ୍ଡ୍ ହିଜ୍ ଫେଥ୍ (୧୯୬୫) ଏବଂ 'ପ୍ୟୁରିଟାନିଜିମ୍ ଏଣ୍ଡ୍ ଲିବରିଟି(୧୯୩୮) ତାଙ୍କର ପ୍ରସିଦ୍ଧ ରଚନା ଦୁଇଟି। 'ଦି ହିଷ୍ଟୋରିକାଲ କ୍ରିଟସିଜିମ୍ ଅଫ ମିଲିଟନ', ତାଙ୍କର ଏହି ପଦ୍ଧତିର ଅନବଦ୍ୟ ସୃଷ୍ଟି।

**୫- ଇଣ୍ଟର ଡିସିପ୍ଲିନାରୀ କ୍ରିଟିସିଜିମ୍**

ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଉତେଜକ ନୂତନ ସ୍ୱର ଅନେକ। ବିଭିନ୍ନ ଶୃଂଖଳାର ବୌଦ୍ଧିକ ଆବିଷ୍କାର ସେମାନଙ୍କ ସମୀକ୍ଷାର ଗୁଣ ଓ ଧର୍ମ। ବହୁବିଧ ଆନ୍ତର୍ଦୃଷ୍ଟି ନେଇ ସାଂପ୍ରତିକ ଅଗ୍ରଗତିଶୀଳ ସମାଜବିଜ୍ଞାନ ଅନୁଯାୟୀ ସାହିତ୍ୟର ଅଧ୍ୟୟନ ସେମାନଙ୍କ କର୍ମ। ଉଇଲିୟମ କେ.ହାର୍ଡି ଏହି ତତ୍ତ୍ୱକୁ ବୁଝେଇଛନ୍ତି, 'Interdisciplinary criticism is simply what the name suggests, a criticism based on the belief that a work of literature is best examined from the view point of a variety of disciplines. ଏହି ଆଲୋଚନା ପଦ୍ଧତିର କ୍ଷେତ୍ର ସୁଦୂର ପ୍ରସାରୀ। ତାହାର ଏକ ସୂଚନା ପ୍ରଦାନ କରିଛନ୍ତି ସିଏ, 'That theory of art and meanings in the poems may be discovered, but it will be study that same poem through the discipline of history, philosophy, political science, psychology, sociology, anthropology, theology, or whatever approch the poem itself seems to call for. ।

ଏହି ସମାଲୋଚନା ପଦ୍ଧତି ପ୍ଲାଟୋନିକ୍ ଆଦର୍ଶବାଦଠୁ ଅଧିକ ଦର୍ଶନପୂର୍ଣ୍ଣ। ତିରୋହିତ କାଳଠୁ ସାଂପ୍ରତିକ କାଳ ପର୍ଯ୍ୟନ୍ତ ଇତିହାସ, ରାଜନୀତି ଓ ସମଉଦାହରଣ ମଣ୍ଡନ କରିଥାଏ ସମାଲୋଚନାଟିର କ୍ଷେତ୍ର। ନଂଦନତତ୍ତ୍ୱ, ମନସ୍ତତ୍ତ୍ୱ, ବିଜ୍ଞାନ ଓ ପରିବେଶ ପ୍ରଭୃତି ସମାଲୋଚନାର ପରିସରକୁ କରିଥାଏ ସମୃଦ୍ଧ।

ଏବେ ଗୁଡିଏ ପତ୍ର ପତ୍ରିକା ଫର୍ଦ୍ଦରେ ଅନେକ ଲେଖକ ପୁସ୍ତକ ଆଲୋଚନାଠୁ ଆରମ୍ଭ କରି ସାହିତ୍ୟ ସମାଲୋଚନା କରୁଛନ୍ତି ରଚନା, ସେମାନେ କେଉଁ ପଦ୍ଧତି ବା

ଶୈଳୀରେ ତାହା ଲେଖୁଛନ୍ତି, ସେମାନେ ଜାଣି ନାହାନ୍ତି। ବହିର ସ୍ୱାଦ ହୋଇଛି କେମିତି, କେମିତି ହେବା ଉଚିତ ଏବଂ କେମିତି ହୋଇଥିଲେ ଅଧିକ ସୁଖ (ନାଂଦନିକ ତୃପ୍ତି) ବହିଟି ଦେଇ ପାରିଥାନ୍ତା, ତାହା ସେମାନେ କହିପାରନ୍ତି ନାହିଁ। ସାହିତ୍ୟ ସମାଲୋଚନାର ସୁସ୍ଥ ଜ୍ଞାନ ସେମାନଙ୍କର ଅଭାବ; ତାହା ପତ୍ରିକା ସଂପାଦକ ମଧ୍ୟ ବୋଧ କରନ୍ତି ନାହିଁ। କାହାକୁ ଅଯଥା ପ୍ରଚୁର ପ୍ରଶଂସା ତ କାହାକୁ କିଛିଟା ଗାଳି ବ୍ୟକ୍ତିଗତ ଲାଭ ବା ଈର୍ଷାରୁ ଦେଇଦେଲେ ସମାଲୋଚନା ହୁଏ ନାହିଁ। କେହି କେହି ସମାଲୋଚକଙ୍କୁ ଟିକିଏ ତୋଷାମଦ କରିଦେଲେ ଫାଲତୁ ବହିକୁ ସମକାଳୀନ ଶ୍ରେଷ୍ଠବହି ବୋଲି କହି ଦେଉଥିବା ଆଲୋଚକ ବି ହେଲେଣି। ପୁଣି ଗୋଟିଏ ବହିକୁ ତ୍ରୁଟି ପୂର୍ଣ୍ଣ ବାଜେ ବହି ବୋଲି ପ୍ରମାଣିତ କରିଥିବା ସମାଲୋଚକଙ୍କ ମତକୁ ଖଣ୍ଡିତ ନକରି ଆଦୌ ସମାଲୋଚନାର ପ୍ରଥମ ବର୍ଣ୍ଣ ନ ଜାଣିଥିବା ଲେଖକ ତାହାକୁ ଖଣ୍ଡିଏ ଶ୍ରେଷ୍ଠ ପୁସ୍ତକ ବୋଲି କହି ଖବର କାଗଜ ସାହିତ୍ୟ ପୃଷ୍ଠାରେ ଲେଖିଲେଣି ନିଜର ମଂତବ୍ୟ।

ଓଡ଼ିଆ ସମାଲୋଚନା ସାହିତ୍ୟର ଏହିପରି କିଛି ରୁଗ୍ଣ ରୂପ ବଡ଼ ମାରାତ୍ମକ। କେବଳ ସାହିତ୍ୟକୁ ଏହା ନିମ୍ନଗାମୀ କରୁନାହିଁ, ବରଂ ଜାତିର ପ୍ରାଣରେ ଅସୁସ୍ଥ ପରଂପରାର ଭାଇରସ୍ ଛାଡୁଛି।

ସାହିତ୍ୟ ସମାଲୋଚନା ପାଇଁ ସୁସ୍ଥ ପଥ ରହିଛି ଏବଂ ରହିଛି ମଧ୍ୟ ପରଂପରାର ଗୁଳା। ସେ ଗୁଳାରେ ସାହିତ୍ୟ ସମାଲୋଚନା ଲେଖୁଥିବା ଆମ ଲେଖକ ଯିବେ ନାହିଁ? ମନ ଇଚ୍ଛା ଯାହା ଲେଖିବେ ତାହା ହେବ ଶାସ୍ତ୍ରୀୟ ସମାଲୋଚନା?



# ବିଂଶଶତକ ସାହିତ୍ୟ ଓ ତାର ଦାର୍ଶନିକ ପୃଷ୍ଠପଟ

ମଣିଷର ଅସଲ ସ୍ୱାର୍ଥ ହେଲା ଆତ୍ମାର ନେବା ଯତ୍ନ, କହିଥିଲେ ସକ୍ରେଟିସ୍। ଏବେ ଭୋଗ ଓ କ୍ଷମତାର ଉପବୀତ ପ୍ରାପ୍ତି ହେଲା ଅସଲ ସ୍ୱାର୍ଥ। ଏହାର କେତୋଟି ଶତାବ୍ଦୀ ପରେ ପ୍ରଚଳିତ ସକ୍ରେଟିସ୍‌ଙ୍କ ନୈତିକତାକୁ ମାନି ସ୍ପିନୋଜା କହିଥିଲେ, ନିଜ ସ୍ୱାର୍ଥ ଜଗ। ଏହା ହିଁ ମନୁଷ୍ୟ ପାଇଁ ଉତ୍କୃଷ୍ଟ। ଯିଏ କ୍ଲୀବ ସେ ଏଥିରେ ଅବହେଳା କରିବ। ନିଜ ସତ୍ତାକୁ ବଂଚାଇ ରଖି ତାର ଉନ୍ନତି ସାଧନ କରିବା ଆତ୍ମସ୍ୱାର୍ଥ। ୧୭୮୨ ମସିହା ମାର୍କ୍ୟୁସ୍ ଡି ସେଡ୍ ପ୍ରଚାର କରିଥିଲେ ତାଙ୍କ ମତ, 'ଆଇ ହାଭ୍ ନଥିଂ ଆଇ ୟାମ୍ ନଥିଂ..., ନୋ ଭରଚ୍ୟୁ ଏଣ୍ଡ ଭାଇସ୍ ଆର୍ ଇଣ୍ଡିଗୁଇସେବ୍ଲ ଇନ୍ ଦି ଟୋମ୍ବ୍' ଅର୍ଥାତ୍ ମୋର କିଛି ନାହିଁ, ମୁଁ କିଛି ନୁହେଁ, ନା ପୁଣ୍ୟ ନା ପାପ, କବର ଭିତରେ ନା ଥାଏ ଅଜ୍ଞେୟ। ଖାଲି ସର୍ବଭକ୍ଷୀ ମାଟିର ଉନ୍ମୁକ୍ତ ମୁହଁ।

ବହି 'ଦି ଗେ ସାଇନ୍ସ', ଉନବିଂଶ ଶତାବ୍ଦୀରେ ନିତ୍‌ସେ ଘୋଷଣା କରିଛନ୍ତି: ଜାଣିନ, ଈଶ୍ୱରଙ୍କର କ'ଣ ହୋଇଛି ? ଆମେ ତାଙ୍କୁ ହତ୍ୟା କରିଛୁ... ଈଶ୍ୱର ମୃତ। ଆମେ ତାଙ୍କୁ ମାରି ଦେଇଛୁ। ଆମ ପାଇଁ ଏହାଠୁ ବଳି ଆଉ କି ସାଂତ୍ୱନା ଅଛି ? 'ଆନ ଆଟାକ୍ ଅପନ୍ ଖ୍ରୀଷ୍ଟୋଡ଼ମ' ପୁସ୍ତକ: କୀୟର୍କିଗାର୍ଡ ପଚାରିଛନ୍ତି, ଈଶ୍ୱରଙ୍କ କବର ବ୍ୟତୀତ ଆମ ଚର୍ଚ୍ଚ ସବୁ ଆଉ କ'ଣ ହୋଇ ପାରନ୍ତି ? ପୁଣି ସେ କହନ୍ତି, ଯଦି ଈଶ୍ୱର ଅଛନ୍ତି ଓ ସତ୍ୟର ଜୟ ନିଶ୍ଚିତ ଏତକ ପ୍ରମାଣିତ କରି ମତେ ଦେଖାଇ ଦିଆଯାଏ ତେବେ ମୁଁ ଈଶ୍ୱର ବିଶ୍ୱାସୀ ହୋଇଯାଆନ୍ତି ଓ ସତ୍ୟର ମାର୍ଗରେ ଚାଲନ୍ତି।

ଶୂନ୍ୟତା ପାଇଁ ଈଶ୍ୱରଙ୍କୁ ବଳି ଦେବା- ଏକ ଚରମ କ୍ରୂରତା ଆଗାମୀ ଯୁଗ ପାଇଁ ସଂରକ୍ଷିତ ହୋଇ ରହିଛି। ଏହାର ଆଭାସ ଆମେ ପାଇ ସାରିଲୁଣି। ଉନବିଂଶ ଶତକର ଶେଷାର୍ଦ୍ଧରେ ଏହା ଥିଲା ନିତ୍‌ସେଙ୍କ ସୂଚନା। ଏହାର ଏକଶତ ବର୍ଷ ପୂର୍ବରୁ ହିଆଇନ୍ କହିଥିଲେ, 'କାଣ୍ଟ୍ ହାଡ କିଲ୍‌ଡ଼ ଗଡ୍'। ଈଶ୍ୱରଙ୍କୁ ମାରିଦେଲା ଦାର୍ଶନିକ କାଣ୍ଟ୍ (ପ୍ରୋଜ୍ ମସିଲାନିଜ୍, ପୃଷ୍ଠା ୧୪୬)। 'କ୍ରିଟିକ୍ୟୁ ଅଫ୍ ପ୍ରାକ୍‌ଟିକାଲ ରିଜିନ୍' ବହିରେ ଯୁକ୍ତି କରିଥିଲେ କାଣ୍ଟ୍, ଆମେ ପ୍ରମାଣିତ କରି ପାରିବାନି ଯେ ଆମେ ମୃତ୍ୟୁହୀନ। ପୁଣି ଲୋକମାନଙ୍କ ପ୍ରିୟ ଏଇ ଅନୁଭବ ଯେ ପ୍ରତ୍ୟେକ ଖଳନାୟକ

ହେବେ ଦଣ୍ଡିତ ଏବଂ ପୁଣ୍ୟ ତା ପୁରସ୍କାର ପାଇବ। ମାତ୍ର ଏହା ଆଜି ଘଟୁ ନାହିଁ। ସଂସାରରେ ଘଟୁଛି ଏହାର ବିପରୀତ। ଅସତ୍ୟ, ଅଧର୍ମ ଓ ଅନୀତିର ଜିତାପଟ। ଗ୍ରୀକ ସାହିତ୍ୟ ଓ ଦର୍ଶନର ଭିତ୍ତି ଉପରେ ଜର୍ମାନୀ ଦାର୍ଶନିକ ହେଗେଲ୍ ରଚନା କରିଥିଲେ 'ଲାଇଫ୍ ଅଫ୍ ଯେଶସ୍'। ଯୀଶୁ ଥିଲେ ଯୋଶେଫଙ୍କ ପୁତ୍ର ଏବଂ ତାଙ୍କ ବିସ୍ମୟକର ଘଟଣା ସୃଷ୍ଟି ଥିଲା ବର୍ଣ୍ଣନା ରହିତ। ପରେ ସେ ଚିରି ଦେଇଥିଲେ ବହି ଖଣ୍ଡିକ। ସେ କହିଥିଲେ, 'ଗଡ୍ ଇଜ୍ ଦି ସିଷ୍ଟମ ଅଫ ରିଲେସନସିପ୍'। ଯାହାଦ୍ୱାରା ସବୁକିଛି ଆତଯାତ ହୁଅନ୍ତି ଓ ସେମାନଙ୍କର ସତ୍ତା ଏବଂ ଅର୍ଥବତା ଜଣାନ୍ତି। ଜୀବନ ସୁଖ ପାଇଁ ନିର୍ମିତ। ଏହା ସଂପାଦନ ପାଇଁ ପ୍ରସ୍ତୁତ।

ଏଇଠି ବଦଳାଇ ଦିଆଗଲା ଜୀବନର ଅର୍ଥ। ସଂଗ୍ରାମ ହିଁ ଅଗ୍ରଗତିର ପଥ। ଲେଖାଗଲା ଶ୍ରମର ଦର୍ଶନ। ଶ୍ରମର ଦାର୍ଶନିକ ମାର୍କ୍ସ କହିଲେ – ଧର୍ମ ଅଫିମ। ଶ୍ରମକର, ମୂଲ୍ୟ ପାଅ, ସୁଖ କିଣ। ଏହା ଈଶ୍ୱରଙ୍କ ଦାନ ନୁହେଁ। 'ଥସ୍ ସ୍ପୋକ୍ ଯୁରାଥୁଷ୍ଟ୍ର' ପୁସ୍ତକରେ ଘୋଷଣା କରି ଦେଲେ ନିତ୍ସେ, 'ଡେଡ୍ ଆର୍ ଅଲ୍ ଗଡ୍‌ସ, ନାଁଓ ଉଇ ଡ଼ଇଲି ବି ସୁପରମ୍ୟାନ ଲିଭ୍' .... (ପୃଷ୍ଠା ୧୦୮)। ଦୁଃଖ ଓ ଯାତନାକୁ ସ୍ତ୍ରୀ ପରି ଜୀବନ ବ୍ୟାପୀ ଆମେ ଯେଉଁ ମାନେ ପୋଷି ଆସିଛୁ, ବଂଚିବା ପାଇଁ ଲଢୁଛୁ, ଆମେ ମଣିଷ ନୋହୁଁ, ଅତି ମାନବ। ଯେଉଁମାନେ ମୃତ, ସେମାନେ ଈଶ୍ୱର। ତାଙ୍କଠି କାମ କ'ଣ ଆମର? ବର୍ତ୍ତମାନ ମଣିଷକୁ ଦେଖିଲେ ଲାଗୁଛି ଅବଶ... ମଣିଷ ଆମକୁ କ୍ଳାନ୍ତ କଲାଣି। (ଜେନିଅଲୋଜି ଅଫ୍ ମୋରାଲସ୍ ୧/୧୨–ନିତ୍ସେ)

ଏହା ଊନବିଂଶ ଶତକର କଥା। ବିଂଶ ଶତକବେଳକୁ ମଣିଷ କ୍ଳାନ୍ତ, ହତାଶ, ଅସହାୟ ଓ ମୃତ ପ୍ରାୟ। ସେମାନେ ମାଂସପିଣ୍ଡ। ସାହିତ୍ୟର ଖ୍ରୀଷ୍ଟ ଏଇ ମୃତ ଲାଜାରସମାନଙ୍କୁ କରିଛନ୍ତି ପୁନର୍ଜୀବିତ। ବିଂଶ ଶତକ କବିତାର ସଂଜୀବନୀ ଦେଇଛି ଏମାନଙ୍କୁ ପୁନର୍ଜୀବନ୍ୟାସ। ଦେବଯାନୀର ପ୍ରେମିକମାନେ ସବୁ ଜଣେ ଜଣେ କଚ। ଅଷ୍ଟବକ୍ରଙ୍କ ଅଭିଶାପରେ ଜଣେ ଜଣେ ଅସମର୍ଥ ଭଗୀରଥ! ସାହିତ୍ୟର ପତିତପାବନୀ ଗଙ୍ଗାଙ୍କ ଶୀତଳ ସିଂଚନ ସ୍ପର୍ଶରେ ହୋଇଛନ୍ତି ସୁସ୍ଥ, ସୁନ୍ଦର ଓ ପ୍ରାଣବନ୍ତ। ଜୀବନ; ଯାହାର ଅର୍ଥ ଭୟାନକ ମୃତ୍ୟୁ ଆଡକୁ ମନ୍ଥର ଯାତ୍ରା, ଏବେ ନେଉଛି ନୂତନ ରୂପତତ୍ତ୍ୱ। ମଣିଷ ନେଇଛି ମୃତ୍ୟୁର ଦାସତ୍ୱ। ବୁଝିଲାଣି ଜୀବନ ଏକ ଗୋଲାପ। ସେକ୍ସପିୟରଙ୍କ 'ମାକ୍‌ବେଥ'ର Life's but a walking shadow-a tale / told by an idiot, full of sound and furry/signifying nothing. ଜୀବନ ଏକ ଅର୍ଥଶୂନ୍ୟ ବିମ୍ବ। ଜୀବନ

ଏକ ଚଳନ୍ତି ଛାଇ, ଗୋଟେ ଗପ, କହୁଛି ଜଣେ ଇଡ଼ିଏଟ, ଖାଲି ଭର୍ତ୍ତି ଶବ୍ଦ ଓ ପ୍ରଚଣ୍ଡ କ୍ରୋଧ। ତାତ୍ପର୍ଯ୍ୟ କିଛି ନାହିଁ। କେତେକଙ୍କ ମାନସପଟରୁ ଏ ଚିତ୍ର ଏବେ ବି ବଦଳି ନାହିଁ। ଯାତନାଗତ ବିଶ୍ୱ ଓ ତାର ପ୍ରତିକାର ନାହିଁ। 'ଲାଇଫ ଇଜ୍ ସଫରିଂ', ଓ୍ୱାର୍ଡସଓ୍ୱର୍ଥ କହିଥିଲେ, 'ସଫରିଂ ଇଜ୍ ପର୍ମାନେଣ୍ଟ' ଅସୀମ ପ୍ରକୃତିର ଏହା ଅଂଶ। ସ୍ୱେନସନ ଓ ଲୋରୀ ତାଙ୍କ 'ଏକ୍‌ଜିଷ୍ଟେନ୍ସିଆଲ ପାଥୋସ୍'ରେ ଲେଖିଛନ୍ତି ଯାତନା ରିଲିଜିଅସ୍ ଆଙ୍କନର ଖ୍ୟାତନାମା ଚିହ୍ନ। ବଂଚିବାର ଅର୍ଥକୁ ବଦଳାଇ ଦେବ ?

ରୋମାଁ ରୋଲାଁ, ରବୀନ୍ଦ୍ରନାଥ ଓ ଇଲିୟଟଙ୍କ ପରି କେତେକ ବିଶ୍ୱ ପ୍ରସିଦ୍ଧ ଲେଖକ ବିଂଶ ଶତକ ସାହିତ୍ୟକୁ କରିଛନ୍ତି ଆଧ୍ୟାତ୍ମିକ ଓ ଆଶ୍ୱସ୍ତ। ଇଲିୟଟଙ୍କ 'ମର୍ଡର ଇନ୍ ଦି କାଥେଡ୍ରାଲ୍' ରେ ଥୋମାସ୍ କହିଛନ୍ତି, 'I give my life to the law of God above the law of man'। ଉନବିଂଶ ଶତକର ଶେଷ ଦଶକ, ଇବ୍‌ସେନ୍‌ଙ୍କ ନାଟକ 'ବ୍ରାଣ୍ଡ'ର ତୃତୀୟ ଅଙ୍କରେ ଅନୁରୂପ ସଂଳାପଟେ ରହିଛି। ଈଶ୍ୱରଙ୍କ ପାଇଁ ବଳି ହେବାରେ ମଣିଷର କି ଆତ୍ମ ସନ୍ତୋଷ !

ପାପ ଓ ପ୍ରାୟଶ୍ଚିତ-ଆଧ୍ୟାତ୍ମିକ ଚେତନାର ଉନ୍ମେଷ ଓ ସବୁ ଅଭୀପ୍ସା ସତ୍ତ୍ୱେ ମଣିଷର ପୃଥକ୍‌ଅବସ୍ଥା ଅପରିବର୍ତ୍ତିତ। ତା ଦୁର୍ଦ୍ଦଶାର ମଂଦ ପାଣିପାଗ ବଦଳି ନାହିଁ। କି ସୁନ୍ଦର ଅଭିବ୍ୟକ୍ତି 'ଦି କକ୍‌ଟେଲ୍ ପାର୍ଟି'ରେ ଇଲିୟଟ କହିଛନ୍ତି 'the same isolation / A man who finds himself incapable of loving / and a woman who finds that no man can love her' ମାନବୀୟ ଅବସ୍ଥାଠୁ ଅବିଚ୍ଛେଦ୍ୟ ଏଠି ଯାତନା। ତେଣୁ 'କନ୍‌ଫିଡେନ୍ସିଆଲ କ୍ଲର୍କ' କି କହୁଛି, ଆମେ ବ୍ରିଜ୍‌ଟି ନିଶ୍ଚୟ ପାରହେବୁ। ଯେତେବେଳେ ଆସିଲୁଣି ତାହା ଉପରକୁ.... ଅନ୍ୟ ଗତି କାହିଁ? ଇଲିୟଟଙ୍କ 'ଦି ଏଲଡ୍‌ର ଷ୍ଟେଟସ୍‌ମ୍ୟାନ' ବହୁତ ଶକ୍ତ। ସେ ପ୍ରଶ୍ନ କରୁଛି, ନିଜଠୁ ନିଜେ ପଳାଇ ଯିବି ? ଏହା ପୁରୁଣା ହୋଇଗଲାଣି। ନିଜଠୁ ନିଜର ପଳାୟନ ହିପୋକ୍ରାସି, ଭୀରୁତା। ଆଇ ନୋ ଦି ଏକ୍ସଟରନାଲ୍ ଓ୍ୱାର୍ଲଡ, ଆଇ ନୋ ମାଇସେଲଫ। ମୁଁ ବାହ୍ୟିକ ଜଗତକୁ ଜାଣିଛି, ମୁଁ ଜାଣିଛି ନିଜକୁ।

ବେଦାନ୍ତ ମତରେ ନିଜକୁ ଜାଣିବା ହିଁ 'ସୋଽହମ୍', ଶ୍ରେଷ୍ଠ ଜ୍ଞାନ। ଏହି ଚେତନାର ଧାରା ଓ୍ୱାର୍ଡସ୍‌ଓ୍ୱର୍ଥ, ଶେଲୀ, କୀଟସ୍ ଓ କଲେରିଜଙ୍କଠୁ ଇଲିୟଟ, ରବୀନ୍ଦ୍ର ଓ ଶ୍ରୀ ଅରବିନ୍ଦଙ୍କ ପର୍ଯ୍ୟନ୍ତ ଆସିଛି। ସାହିତ୍ୟ ବିଶ୍ୱାସର ଏକ କୃତୀ। କବି ଜଣେ ସାଧାରଣ ମଣିଷ। ମାର୍କଣ୍ଡେୟ କିମ୍ବା ବ୍ୟାସଙ୍କ ପରି ସେ ଜଣେ ଋଷି ନୁହେଁ। ଟେବୁଲ, ଖବର କାଗଜ, ଚା କପ୍, କଲମ ପ୍ରଭୃତି କବିର ସବୁ ମଣିଷ ପରି ବସ୍ତୁଗତ ସତ୍ୟ। ତା ବର୍ଣ୍ଣିତ ସମୁଦ୍ର, ପର୍ବତ ଓ

ମଣିଷ ମଣିଷ ନୁହଁନ୍ତି, ଶବ୍ଦ ମାତ୍ର। ଏଣୁ କବିଙ୍କୁ ବୋଦ୍‌ଲେୟାର 'ୟୁନିଭର୍ସାଲ ଟ୍ରାନ୍ସଲେଟର ବୋଲି କହିଥିବା ବେଳେ ହ୍ୟୁଡୁବ୍ରୋ ଭାବୁଥିଲେ 'ଦି ପୋଏଟ୍ ଇଜ୍ ଏ ଲିଟିଲ୍ ଗଡ୍'। କଳ୍ପନା ଯେମିତି ବିଦ୍ୟୁତ୍ ଶକ୍ତିର ଏକ ଆଙ୍ଗିକ ଓ କବି ତା ଟ୍ରାନ୍ସମିଟରେ।

ଦୃଷ୍ଟିର ଘଟୁଥିଲା ପରିବର୍ତ୍ତନ -ଡି ସେଡ୍ ଘୋଷଣା କରିଥିଲେ ପ୍ରେମ, 'It is a hypocraisy or worse still, illusion'। ଆନ୍ଦ୍ରେ ବ୍ରିଟୋନ କହିଲେ 'Love is not an illusion, it is the mediation between man and nature, ସେଇଭଳି ମୃତ୍ୟୁର ସଂଜ୍ଞା We do not know what it really is to die, except that it is the end of the "I" the end of prision ! ଅହଂର ମୃତ୍ୟୁ। ବହି 'ଦି ଥେମ୍ ଅଫ୍ ଆୱାର ଟାଇମ୍' ଏହି ମୁଁ ଟିର ବ୍ୟାଖ୍ୟା କରିଛନ୍ତି ଗ୍ୟାସେଟ, 'I' is the time and space, or society history-action, ମୁଁ ଟି ଐତିହାସିକ। ମୁଁ ମନ ମଧ୍ୟରେ ନୁହେଁ ଆନ୍ଦୋଳନଶୀଳ, ଯିଏ ବନ୍ଦ କରିଦିଏ ସଂସାରର ଦ୍ୱାର। ବରଂ ସଂପର୍କଶୀଳ ମଣିଷ ନିଜେ 'ମୁଁ'।

ସାହିତ୍ୟର ଏହି ପରିବର୍ତ୍ତନ ଓ ରୁଚିକୁ ଧର୍ମଭୀରୁ ଆଦର୍ଶବାଦୀ ଗୋଟିଏ ରାଜନୈତିକ ଧର୍ମମତ ଉପରେ ଆଧାରିତ ସାହିତ୍ୟ ବୋଲି ସ୍ପେଣ୍ଡର 'ଦି କ୍ରିଏଟିଭ ଏଲିମେଣ୍ଟ'ରେ ଲେଖି ଦେଇଛନ୍ତି। 'ଟାଇମ୍ ଇଜ୍ ରିଲେଟେଡ୍ ଟୁ ଇଣ୍ଟରନିଟ୍ ଏଣ୍ଡ ହିଷ୍ଟ୍ରି ଟୁ ଗଡ୍'- ଇଲିୟଟଙ୍କ ବିଶ୍ୱାସ ଓ ସିଦ୍ଧାନ୍ତଟି ଶକ୍ତ ଯାହା ଭବିଷ୍ୟତକୁ କରିଛି ଗାଇଡେନ୍ସ। ଜଗତକୁ ଦିନକୁ ଦିନ ଆଚ୍ଛାଦିତ କରୁଛି ବିପୁଳ ବିସ୍ମୟ ଓ ଭୟ। ଭୟର ଅନ୍ଧକାରରୁ ରକ୍ଷା ପାଇଁ ଈଶ୍ୱର ହିଁ ଏକ ମାତ୍ର ମୁକ୍ତିର ଆଲୁଅ। ଏବେ ବି ସକାଳ ହେଲେ ଟି.ଭିରୁ ସବୁ ଧର୍ମର ପ୍ରାର୍ଥନା ଶୁଭୁଛି। ଧର୍ମକୁ ଅଫିମ ବୋଲି ଧିକାରି ଥିବା ମାର୍କ୍ସ ଏବେ ରଷର ସେଣ୍ଟ ପିଟର୍ସ ଚର୍ଚ୍ଚରେ ଅନ୍ତିମ ପ୍ରାର୍ଥନା କଲେଣି।

ଧର୍ମ, ଯାହା ଧାରଣ କରି ରଖେ ଦୋଳାୟମାନ ଜୀବନ ଓ ଜୀଇରହିଥିବା ସମାଜଟିକୁ। ପୃଥିବୀକୁ ନିୟନ୍ତ୍ରଣ କରି ଆସିଛି ଗୁଡିଏ ଅନିର୍ବାର୍ଯ୍ୟ ନିୟମ, ଯାହା ଉପରେ ଆଧାରିତ ଧର୍ମ। ଧର୍ମ ବଦଳେ ନାହିଁ। ଯେଣୁ ସବୁ ଧର୍ମର ମୂଳ ସମାନ। ବଦଳେ ସଂସ୍କୃତି - 'The way of life', 'ଆଜି ସବୁ ବଦଳିଚି/ ବଦଳିଚି ତମରି ପୃଥିବୀ/ମଣିଷ ବଦଳିଛନ୍ତି /ଏପରିକି ସ୍ୱପ୍ନ ଓ ସ୍ମୃତିବି'। 'ଦି ଆଇଡିଆ ଅଫ୍ ଖ୍ରୀଷ୍ଟିଆନ ସୋସାଇଟି' ବହିରେ ଇଲିୟଟ ଲିପିବଦ୍ଧ କରିଛନ୍ତି ଧର୍ମର ଭୂମିକା, 'One can aseart that the only possibality of control and balance is a religious control and balance; that the only hopeful course for a society which would thrive and

continue its creative activitity in the heart of civilization'. ଅର୍ଥାତ ଜଣେ ପ୍ରତିପାଦନ କରି ପାରେ ଯେ ନିୟନ୍ତଣ ଓ ଭାରସାମ୍ୟ ରକ୍ଷାର ଏକମାତ୍ର ସଂଭାବନା ଧାର୍ମିକ ନିୟନ୍ତଣ ଓ ଭାରସାମ୍ୟ ସୁରକ୍ଷା। ତାହା ହିଁ ସମାଜ ପାଇଁ ଏକମାତ୍ର ଆଶାପୂର୍ଣ୍ଣ ମାର୍ଗ। ଯାହା ସମୃଦ୍ଧ ଏବଂ କଳାର ସଭ୍ୟତାରେ ଚାଲୁ ରଖିଚି ଏହାର ସୃଜନଶୀଳ କାର୍ଯ୍ୟକଳାପ। ଏଣୁ ଧର୍ମକୁ ବାଦ ଦେଇ ସାହିତ୍ୟ କାହିଁ? ଆଧାତ୍ମିକତାକୁ ବାଦ ଦେଇ କଳାର ସର୍ଜନା ନାହିଁ। ଇମରସେନ ଠାଏ ଲେଖିଛନ୍ତି 'ପୋଏଟ୍ରି ଇଜ୍ ନଟ୍ ଡେଭିଲସ୍ ୱାଇନ, ବଟ୍ ଗଡ୍‌ସ୍ ୱାଇନ୍, କବିତା ଈଶ୍ୱରଙ୍କ ଆସବ, ନୁହେଁ ଅସୁରଙ୍କ ମଦ୍ୟ।

ଶେଲୀ କହିଥିଲେ,'ପୋଏଟ୍ରି ଇଜ୍ ସମ୍‌ଥିଂ ଡିଭାଇନ'। ମିଡିଲଟୋନ ମୁରୀ ତାଙ୍କ ବିଖ୍ୟାତ ପ୍ରବଂଧ 'ପିଓର ପୋଏଟ୍ରି'ରେ ଲେଖିଛନ୍ତି 'ପିଓର ପୋଏଟ୍ରି ହୁଇଚ ଇଜ୍ ଦି ସୁପ୍ରିମ ଫର୍ମ ଅଫ୍ ପ୍ରେୟାର' ବିଶୁଦ୍ଧ କବିତା ପ୍ରାର୍ଥନାର ଶ୍ରେଷ୍ଠ କାୟାକଳ୍ପ। 'ଲିଭସ୍ ଅଫ୍ ଗ୍ରାସ୍' ମୁଖବଂଧରେ କହିଥିଲେ ହୁଇଟିମ୍ୟାନ- 'ଦି ଗ୍ରେଟେଷ୍ଟ୍ ପୋଏଟ ଇଜ୍ ଏ ସେର୍'। ଶ୍ରେଷ୍ଠତମ କବି ଜଣେ ଋଷି, ସିଏ ନୀତି ଓ ନୈତିକତାଠୁ ଥାଆନ୍ତି ବହୁ ଉର୍ଦ୍ଧ୍ୱରେ। କାରଣ ସେ ଆତ୍ମାକୁ ଜାଣନ୍ତି।

ରବୀନ୍ଦ୍ର ନାଥଙ୍କ ଦୃଷ୍ଟିରେ କବିତା 'ସତ୍-ଚିତ୍ ଓ ଆନଂଦ'। 'କବିତା ବାସ୍ତବିକ ମଂତ୍ର' ଶ୍ରୀ ଅରବିନ୍ଦଙ୍କ ତତ୍ତ୍ୱ। ଇଅନ୍‌କୁ କହିଥିଲେ ସକ୍ରେଟିସ୍ 'କବିମାନେ ଈଶ୍ୱରଙ୍କ ବ୍ୟାଖ୍ୟାକାର'। 'କ୍ରିଟିକାଲ୍ ଆପ୍ରୋଚ ଟୁ ଲିଟିରେଚର୍'-ପ୍ରଫେସର ଡାଭିଡ ଡାଚେସ କହନ୍ତି 'The poet was a possessed creature, not using language in the way that normal human beings do, but speaking in a devinely inspired frenzy'. (ପୃଷ୍ଠା ୬)।

କବିମାନେ ସାଧାରଣ ମଣିଷଙ୍କ ଭାଷାରେ କହନ୍ତିନି, ଦୈବୀ ପ୍ରେରଣା ସ୍ଫୁର୍ତ୍ତ ବାତୁଳ ସେମାନେ, କାଳେସୀ ପରି ମଣିଷର ଭଲ ମଂଦ ଉଚାରଣ କରନ୍ତି। କାବ୍ୟିକତା ଓ ନାଟକୀୟତା ବିଂଶ ଶତକ ସାହିତ୍ୟକୁ ଆକର୍ଷଣୀୟ କରିବାରେ ବ୍ୟବହୃତ ଆଭୂଷଣ। ଏହି ଦୃଷ୍ଟିରୁ ସାହିତ୍ୟର ଅନ୍ତଃସ୍ରୋତ ଗଭୀର ଆଧାତ୍ମିକ। ଧ୍ୱଂସର ବିବରକୁ ଠେଲି ହୋଇ ଯାଇଥିବା ପୃଥିବୀକୁ ଅଙ୍କୁଶଟିଏ ହୋଇ ସୁଦୀର୍ଘ ଏକ ଶତ ବର୍ଷ ବ୍ୟାପୀ ସାହିତ୍ୟ ଟେଳି ଧରିଛି। ଦୁଇ ଦୁଇଟି ମହାଯୁଦ୍ଧର ସ୍ରୋତ ବୋହି ଯାଇଛି। ବିଶ୍ୱରୁ ଭୟାନକ ଧ୍ୱଂସ ଲୀଳା ମେଘ ଖଣ୍ଡପରି ତିରୋହିତ ହୋଇଛି। ଜୀବନ ଦୀପ ଜଳୁଛି। ମାତା ପୃଥିବ୍ୟାଃ, ପୁତ୍ରୋଃହମ୍... ସମସ୍ତଙ୍କୁ ସାହିତ୍ୟ ପାଳି, ପୋଷି ଉଦ୍ଧାରି ଆସିଛି।



# ବୁକ୍‌କେର ପୁରସ୍କୃତ 'ଦି ଇନ୍‌ହେରିଟାନ୍‌ସ ଅଫ୍ ଲସ୍' : ଏକ ସମକାଳୀନ ଦୃଶ୍ୟ

## ଅନୀତା ଦେଶାଇ ଓ ଆନ୍ତର୍ଜାତିକ ସାହିତ୍ୟ ପରିବେଶ : ୨୦୦୪

ଦୁଇହଜାର ଚାରି ମସିହାରେ ପ୍ରକାଶିତ ଅତି ପ୍ରଭାବଶାଳୀ ବହିମାନ ଥିଲା ଦାନ୍ ବ୍ରାଉନ୍‌ଙ୍କ 'ଦି ଦା ଭିନ୍‌ସ କୋଡ୍'ଅମିତାଭ ଘୋଷଙ୍କ 'ଦି ହଂଗ୍ରୀ ଟାଇଡ୍' Paulo Coelhoଙ୍କ 'ଦି ଅଲ୍‌କେମିଷ୍ଟ', ହରି କୁଂଜ୍ରୁଙ୍କ 'ଟ୍ରାନ୍‌ସମିଶନ' ପ୍ରଭୃତି। ତାରି ଭିତରେ ଚଳିତ ବର୍ଷର ବୁକ୍‌କେର ପୁରସ୍କାର ବିଜୟିନୀ ବିଶ୍ୱର କନିଷ୍ଠତମ ଔପନ୍ୟାସିକା କିରଣ ଦେଶାଇଙ୍କ ମା ଅନୀତା ଦେଶାଇଙ୍କ ଚତୁର୍ଦ୍ଦଶତମ ସଫଳ ଉପନ୍ୟାସ ରହିଛି 'ଅଙ୍କାବଙ୍କା ପଥ'। ସ୍ୱାଦ ଓ ସୁବାସରେ ତୀବ୍ର ଖଣ୍ଡିଏ ବୌଦ୍ଧିକ ଉପନ୍ୟାସ 'The Zigzag Way'.କୁ ଅନୀତା କରିଥିଲେ ଲୋକାର୍ପିତ। ଦେଶ ବାହାରେ ଏହି ବହିଟି ତାଙ୍କର ବହୁ ଚର୍ଚ୍ଚିତ ଓ ବହୁ ବିକ୍ରୀତ। ସାମାଜିକ ଇତିହାସର ବକ୍ର ପଥରେ ଅନୀତାଙ୍କ ସୁଦୂରରୁ ଦୂରତମ ଭ୍ରମଣ ପ୍ରକଟିତ ହୋଇଛି ଏଥିରେ। ଗଳ୍ପ, ଇତିହାସ, ଜଟିଳତା ଓ ଅନ୍ତଃ-ଉଡ୍ଡାଣର ବିସ୍ମୟ ହୋଇଛି ଉତ୍ତର ଆଧୁନିକ ଶିଳ୍ପ। ତୃତୀୟ ବିଶ୍ୱର କଲୋନୀ ଜୀବନର ଆତ୍ମଶ୍ଲାଘା ହୋଇଛି ଉତ୍କୀର୍ଣ୍ଣ। ମୁଖ୍ୟ ଚରିତ୍ର ଜଣେ ଆମେରିକୀୟ ଯୁବକ Eric ତା ବାଳିକା - ସାଙ୍ଗ (Girl friend) Em ସହିତ ଖୋଜି ପାଉଛି ମେକ୍ସିକୋର ଗୋଟିଏ ପ୍ରାଚୀନ ଆଇରିଶ୍ ପରିବାର ସହିତ ତାର ବଂଶଗତ ଇତିହାସର ଚେର ଏବଂ ସମ୍ମୁଖୀନ ହୋଇଛି ଧୂସର ଧୂଳି ଭୂମିରେ ଶ୍ୱେତ ନୃଜାତିର ସାମୟିକ ରହଣିର ଅବୀର (Unheroic) ସୃଷ୍ଟି। ନିଆରା ଦୁଇଟି ବର୍ଣ୍ଣର ସଂପର୍କରୁ ତା ଜନ୍ମ, ସମୟ ଓ ସାମାଜିକ ଆତୁଆଳରେ ଏବେ ଆଚ୍ଛନ୍ନ। ଜେମ୍‌ସ ଜୟସ୍‌ଙ୍କ ଉପନ୍ୟାସ 'ୟୁଲିସିସ୍'ର ଚରିତ୍ର ଷ୍ଟିଫେନ୍ ଡିଡଲସ୍‌ପରି ଅନୀତାଙ୍କ ଚରିତ୍ର ଇରିକ୍‌ର ଲବ୍ଧ ସତ୍ୟ (epiphanic truth) ତା' ପୂର୍ବଜଙ୍କ ଯାତ୍ରା କାବ୍ୟିକ ଗଦ୍ୟରେ ପାଠକ ହୁଅନ୍ତି ଉପଲବ୍ଧ।

'ଦି ଦା ଭିନ୍‌ସ କୋଡ୍'ରେ ଦାନ୍ ବ୍ରାଉନ୍ ଥିଲେ ଚର୍ଚ୍ଚ ରହିତ। ସେହିପରି ଔପନ୍ୟାସିକ କାରଲୋସ୍ ରୁଇଜ୍ ଜାଫୋନ୍ ତାଙ୍କ ଉପନ୍ୟାସ 'ଦି ସ୍ୟାଡ୍ରୋ ଅଫ୍

ଉଇଣ୍ଡ'ରେ ଥିଲେ ପ୍ରଣୟ ଗନ୍ଧ ରହିତ। ତାଙ୍କର ଏହି ସୃଷ୍ଟିଟି ରାଜନୈତିକ ଥ୍ରିଲର୍। କାଜୁଓ ଇସିଗୁରୋଙ୍କ ଉପନ୍ୟାସ 'ନେଭର୍ ଲେଟ୍ ମି ଗୋ' ରଚିତ କ୍ଲୋନ୍ ସୃଷ୍ଟି ଓ ବାୟୋଟେକ୍ନୋଲୋଜୀ ଉପରେ ଆଧାରିତ। ଏଗୁଡିକ ସମସ୍ତ ଦୁଇ ହଜାର ଚାରିର ପ୍ରକାଶିତ ଆନ୍ତର୍ଜାତିକ ସାରସ୍ୱତ କୃତିତ୍ୱ।

ଆଲାନ୍ ହୋଲ୍ଲିନ୍ ଘ୍ରୁଷ୍‌ଙ୍କ ଉପନ୍ୟାସ 'ଦି ଲାଇନ୍ ଅଫ୍ ବିୟୁଟୀ' ଅରକ୍ଷଣଶୀଳ ଯୌନ ସଂପର୍କର ସଂଭ୍ରାନ୍ତ କଳା ଉପସ୍ଥାପିତ କଲାବେଳେ ଆମେରିକୀୟ ଔପନ୍ୟାସିକ ପାଉଲ୍ ୟୁଷ୍ଟେର୍‌ଙ୍କ 'ସିଟୀ ଅଫ୍ ଗ୍ଲାସ' ସ୍ଥିତିବାଦୀ ସମସ୍ୟା ସୀମିତ ଓ ସମ୍ଭାବିତ ବିବିଧ ଚେତନାକୁ କରିଥିଲା ଆକ୍ରାନ୍ତ। ନ ନଭେମ୍ବର ଆମେରିକା ଟ୍ରେଡ୍ ଟାଓ୍ୱାର ଭଙ୍ଗା ଘଟଣା ପ୍ରଭାବିତ ଇଆନ୍ ମ୍ୟାକ୍ ଇଓ୍ୱାନ୍‌ଙ୍କ ଉପନ୍ୟାସ 'ସଟରଡେ'। ହେନ୍‌ରୀ ପେରୋନେ ଜଣେ ମଧ୍ୟବୟସ୍କ ବିବାହିତ ଉଚ୍ଚବର୍ଗର ସୁଖି ନିରୋସର୍ଜନ। ଇରାକ୍ ଯୁଦ୍ଧ ବିରୋଧରେ ଇଂଲଣ୍ଡରେ ହେଉଥିବା ବିକ୍ଷୋଭ ରାଲିରେ ଆକସ୍ମିକ ଭାବେ ଦୁର୍ଘଟଣାରେ ଘଟୁଚି ତାଙ୍କର ମୃତ୍ୟୁ। ହିଂସା ପ୍ରତି ଆର୍ତ ଦୟା ପ୍ରକଟ କରୁଛି। ବହିଟି ସରିଛି। ଆଧୁନିକ ଉପନ୍ୟାସରେ ବିଷୟବସ୍ତୁ, ଘଟଣା ଓ ବର୍ଣ୍ଣନାଠୁ ସୁନ୍ଦରତମ ଓ ସୂକ୍ଷ୍ମତମ ହେଉଛି ଦୃଷ୍ଟି ଓ ଔପନ୍ୟାସିକଙ୍କ ଅନ୍ତର୍ଦୃଷ୍ଟି।

ହାରୁକି ମୁରାକାମି (Haruki Murakami)ଙ୍କ ଉପନ୍ୟାସ 'କାଫ୍‌କା ଅନ୍ ଦି ସୋର୍'କୁ ପ୍ରକାଶ କରିଛନ୍ତି ଦି ହାର୍ଭିଲ୍ଲ ପ୍ରେସ୍। କାଫ୍‌କା ତାମୁରା ଜଣେ ସ୍କୁଲ ଛାତ୍ର। ସେହି ବାଳକ ଏଥିରେ ବିରାଡି, ମତ୍ସ୍ୟ ଓ ଆକାଶ ସହିତ ହୋଇଛି ଆଳାପରତ। ବିରାଡି, ମତ୍ସ୍ୟ ଓ ଆକାଶ ଏକଏକ ମନୁଷ୍ୟେତର ଜୀବ, ବାକ୍ ଓ ମନ ରହିତ ଏବଂ ଆକାଶ ଶୂନ୍ୟ! ଗୋଟିଏ ମନୁଷ୍ୟ ଗପି ପାରୁଛି ଏମାନଙ୍କ ସହିତ? ସଂସାରରେ ଦୈନନ୍ଦିନ ଜୀବନରେ ସବୁକିଛି ସମ୍ଭବ; ମୁରାକାମି ଦର୍ଶାଇ ଦେଇଛନ୍ତି। ସମ୍ଭାବନା ପୂର୍ଣ୍ଣ ମାନବଜୀବନର ଶ୍ରେଷ୍ଠ ପୁରସ୍କାର ହେଲା ପରିବର୍ତ୍ତନ। ପରିବର୍ତ୍ତନ ଉପରେ ଆଧାରିତ ତାଙ୍କର ଏହି ମହାନ୍ କୃତିତ୍ୱ।

"ହିନ୍ଦୁ"ର ସ୍ତମ୍ଭକାର ଏସ୍. ପ୍ରସନ୍ନ ରଂଜନ ଲେଖିଛନ୍ତି, ଆଜି ଆଉ କେହି କହୁନାହିଁ, 'Where's the plot, where's the grand narrative, where's the good old story?' ପ୍ରସିଦ୍ଧ ନୋବେଲ୍ ପୁରସ୍କାର ସମ୍ମାନ ପ୍ରାପ୍ତିପରେ ଭି.ଏସ୍. ନାୟିପାଲ୍ ରଚନା କଲେଣି ଘଷରା ଆର୍ଟ୍ ଫର୍ମ୍‌ର ମୃତ୍ୟୁରେ ଦୁଇଟି ଉପନ୍ୟାସ। ଉପନ୍ୟାସର ବଦଳା ସ୍ୱଭାବକୁ ଓ ଉତ୍କୀର୍ଣ୍ଣ ମୁକ୍ତ ଭାବ (freedom act) କୁ ସ୍ପେସ୍ ବା ଟାଇମ୍

କେହି ରୋଧ କରି ପାରିବେ ନାହିଁ। ବିଶ୍ୱରେ ନ ନଭେମ୍ବର ଘଟଣା ପରେ ଟ୍ରେଡ୍ ଟାୱାର ଖାଲି ଭାଙ୍ଗି ନାହିଁ, ଭାଙ୍ଗିଛି ବିଶ୍ୱ ବାଣିଜ୍ୟିକ ପ୍ରାଚୀନ ଚେତନା। ସମୟାନୁଯାୟୀ ପରିବର୍ତ୍ତିତ ହେଉଥିବା ପାରଂପରିକ ଆର୍ଟ ସୃଷ୍ଟିର ଆଙ୍ଗିକ ପାଇଛି ଧ୍ୱଂସ। ଜନ୍ମ ନେଇଛି ସଫ୍ଟ ୱେୟାରର ନୂତନ ଟେକ୍ନୋଲୋଜୀଜୀବୀ କଳାଙ୍ଗିକ। ଅର୍ଥନୈତିକ ଜଗତୀକରଣର ନୂତନ ସ୍ୱାଦ ହୋଇଛି ଜୀବନ। ବାଣିଜ୍ୟ ଓ ବୈଜ୍ଞାନିକ କାରିଗରୀକୁ ନେଇ ଗଢି ଉଠିଛି ସାହିତ୍ୟ। ଜର୍ଜ ଅରୱେଲ୍‌ଙ୍କ ଉପନ୍ୟାସ '୧୯୮୪'ଠୁ କେତେ ନିଆରା ଏ.ପି.କେ ଅବ୍‌ଦୁଲ କାଲାମଙ୍କ '୨୦୨୦'ର ଚିନ୍ତା ଓ ଚେତନା !!

ଅକ୍ସଫୋର୍ଡ ଜେମ୍‌ସ ଜୟସ୍ ଚେୟାରର ପ୍ରଫେସର Umberto Eco ଯିଏ କିଛି ବର୍ଷ ତଳେ ରଚନା କରିଥିଲେ ଉପନ୍ୟାସ 'ଦି ନେମ୍ ଅଫ୍ ଦି ରୋଜ୍' ପ୍ରାପ୍ତ ହୋଇଥିଲେ ଖୁବ୍ ସୁଖ୍ୟାତି; ଦୁଇହଜାର ଚାରିରେ ପ୍ରକାଶ ପାଇଛି ତାଙ୍କ ଉପନ୍ୟାସ 'The Mysterious Flame of Queen Loana' ସେଥିରେ ଗୋଟିଏ ଚରିତ୍ର ପଚାରୁଛି; 'What's your name?' ତାକୁ ଉତ୍ତର ମିଳୁଛି: Wait, It's on the tip of my tounge, ମଣିଷ ଭୋଳା ହୋଇ ଯାଇନାହିଁ, ବରଂ ହୋଇଯାଇଛି ମାନସିକ ଅସୁସ୍ଥ। ସଠିକ୍ ଉତ୍ତର ଦେବାକୁ ଅପ୍ରସ୍ତୁତ ଓ ଅନ୍ୟମନସ୍କ। ତା' ଚେତନାକୁ ଏକବିଂଶ ଶତକର ଯାତନା, ହତାଶା, ବେକାରୀ ଓ ଅସହାୟତା ଘେରି କରିଦେଇଛି ରୁଗ୍‌ଣ। ମଣିଷ ଭୁଲିଥିଲା 'ସୋଽହମ୍' ଓ 'ତତ୍ ତ୍ୱମସିକୁ' ଭାରତୀୟ ସଂସ୍କୃତିରେ ଯାହାକୁ କୁହାଯାଏ ଜ୍ଞାନ। ଏବେ ସିଏ ଭୁଲିଗଲାଣି ତା' ନିଜ ନାମକୁ। ହରି କୁଂଜ୍ରୁଙ୍କ 'ଟ୍ରାନ୍‌ସମିଶନ୍'ରେ ଚରିତ୍ର ଯେମିତି ଏକ ପାଶୱାର୍ଡ। ଏହି ପାଶୱାର୍ଡ ଦେବା ମାତ୍ରେ ଖୋଲି ଯିବ କଂପ୍ୟୁଟରର ମନିଟର୍‌ରେ '୨୦୨୦'ର ଫାଇଲ୍। ଯାହାର ଫାଇଲ୍ ନାହିଁ, ତାର ଅସ୍ତିତ୍ୱ ନାହିଁ।

'ଦି ମିଷ୍ଟିଅସ୍ କୁଇନ୍ ଲୁନା'ରେ ଚରିତ୍ର ମନେ ରଖିପାରୁ ନାହିଁ ନିଜ ନାଁ, ଅଥଚ ସିଏ ମନେ ରଖି ପାରିଛି ପଢ଼ିଥିବା ବହି ଗୁଡିକ ! କଳ୍ପନା ଓ ଇତିହାସପ୍ରତି ଇକୋ ବାଢ଼ିଛନ୍ତି ସମ୍ମାନ। ସେହି ବର୍ଷ ସେହି ଧାରାରେ ଚରିତ୍ର ଇରିକ୍ ମାଧ୍ୟମରେ ନିଜର ଉଚ୍ଛୁଳା କଳା-କଳ୍ପନା ଓ ତାର ବଂଶଗତ ଇତିହାସକୁ ଲେଖିକା ଅନୀତା ଦେଶାଇ ଖୋଜି ଏକ ନୂତନ ଆଗ୍ରହ ପ୍ରତି ପାଠକଙ୍କୁ କରାଇଛନ୍ତି ତୃଷିତ।

ଚଉଦଟି ଉପନ୍ୟାସ ଲେଖି ସିଏ ଯେଉଁ ତୃଷାଠି ଅଟକିଛନ୍ତି ତାକୁ ଆଗକୁ ଆଗେଇ ନେଇ ତାଙ୍କ କନ୍ୟା କିରଣ ଦେଶାଇ ହୋଇଛନ୍ତି ସଫଳ। ଅନୀତା ଚାରିଥର

ସଂଭ୍ରାନ୍ତ ବୁକ୍‌କେର୍ ଦୌଡକୁ ଯାଇଛନ୍ତି କିନ୍ତୁ ପଛରେ ରହିଯାଇଛନ୍ତି। ସେହିଭଳି ଆଖି ଦୃଶିଆ କୌଣସି ସମ୍ମାନ ହାସଲ କରି ନଥିଲେ ବି ତାଙ୍କ କନ୍ୟା ବିଶ୍ୱର ଗୋଟିଏ ଶ୍ରେଷ୍ଠ ସମ୍ମାନର ହକ୍‌ଦାର ନିଜର ସୁନ୍ଦରତମ ରଚନା ଲାଗି ହୋଇପାରିଛନ୍ତି। ଅରୁନ୍ଧତୀରାୟ, ଝୁମ୍ପା ଲାହାଡିଙ୍କ ପରେ କିରଣ ଦେଶାଇଙ୍କ ପ୍ରାପ୍ତ ଏହି ଗୌରବ ଅଧିକାଂଶ ଭାରତୀୟ ତରୁଣ ଓ ଯୁବ ଲେଖକ ଗୋଷ୍ଠୀଙ୍କୁ କରିଛି ପ୍ରବଳ ଉଦ୍ଦୀପିତ ଓ ଉତ୍ସାହିତ। ବହୁ ଚର୍ଚ୍ଚିତ କାବ୍ୟା ବିଶ୍ୱନାଥନ୍‌ଙ୍କ ଅପଯଶ ପରେ ଏହା ଏକ ଉପଶମପରି ହୋଇଛି ବୋଧ।

## ବୁକ୍‌କେର ପ୍ରତିଯୋଗିତାର ଦୌଡ଼ :୨୦୦୬

ଦୁଇହଜାର ଛ’ ମସିହାର ବୁକ୍‌କେର ପୁରସ୍କାର ପ୍ରତିଯୋଗିତାର ଦୌଡର ଶେଷ ପର୍ଯ୍ୟାୟ ପୂର୍ବରୁ ପ୍ରତିଯୋଗୀ ଥିଲେ ଉଣେଇଶ ଖଣ୍ଡ ପୁସ୍ତକ। ଏହି ଉଣେଇଶ ଖଣ୍ଡ ବହିର ଦୌଡରେ ଦ୍ୱିତୀୟ ସ୍ଥାନରେ ଥିଲା ‘ଦି ଇନ୍‌ହେରିଟାନ୍‌ସ ଅଫ୍ ଲସ୍’। ଶେଷ ପର୍ଯ୍ୟାୟ ବେଳକୁ ‘ଥେଫ୍‌ଟ : ଏ ଲଭ୍‌ଷ୍ଟୋରୀ’ କୁ କାଟି ଏହା ଆସିଛି ପ୍ରଥମ ସ୍ଥାନକୁ ଏବଂ ପ୍ରାପ୍ତ ହୋଇଛି ଇଂଲିଶ୍ ଭାଷା କଥିତ ମୁଲକ ପାଇଁ ରଚିତ ସର୍ବଶ୍ରେଷ୍ଠ ଇଂଲିଶ୍ ଉପନ୍ୟାସ ବୁକ୍‌କେର ପୁରସ୍କାର ସମ୍ମାନ। ପୂର୍ବରୁ ୧୯୮୧ ମସିହାରେ ଭାରତ ଜନ୍ମିତ ବିଦେଶୀ ନାଗରିକ ଔପନ୍ୟାସିକ ସଲମାନ୍ ରୁସିଦ୍ ତାଙ୍କ ରଚିତ ‘ଦି ମିଡ୍ ନାଇଟ୍‌ସ ଚିଲ୍‌ଡ୍ରେନ୍’ ପାଇଁ ହୋଇଛନ୍ତି ପ୍ରାପ୍ତ। ଏହି ପୁରସ୍କାରରେ ସମ୍ମାନୀତା ଦ୍ୱିତୀୟ ପ୍ରସିଦ୍ଧ ଭାରତୀୟ ଲେଖିକା ଅରୁନ୍ଧତୀ ରାୟ ତାଙ୍କ ଉପନ୍ୟାସ ‘ଦି ଗଡ୍ ଅଫ୍ ସ୍ମଲ ଥିଙ୍ଗସ୍’ ପାଇଁ ହୋଇ ପାରିଛନ୍ତି।

ନିମ୍ନରେ ପ୍ରତିଯୋଗିତାର ଦୌଡରେ ଥିବା ଉପନ୍ୟାସ, ଏହାର ଲେଖକ ଓ ପ୍ରକାଶକଙ୍କ ଶେଷ ପର୍ଯ୍ୟାୟ ପୂର୍ବରୁ ଥିବା ସ୍ଥିତି ସୂଚିତ କରାଯାଇଛି :

| | ଉପନ୍ୟାସ | ଔପନ୍ୟାସିକ | ପ୍ରକାଶକ |
|---|---|---|---|
| ୧. | ଥେଫ୍‌ଟ: ଏ ଲଭ୍ ଷ୍ଟୋରୀ | ପିଟର କ୍ୟାରୀ | ଫେବର ଏଣ୍ଡ ଫେବର |
| ୨. | ଦି ଇନ୍‌ହେରିଟାନ୍‌ସ ଅଫ୍ ଲସ୍ | କିରଣ ଦେଶାଇ | ହାମିସ୍ ହାମିଲଟନ୍ |
| ୩. | ଗ୍ୟାଦରିଂ ଦି ୱାଟର | ରବର୍ଟ ଇଡ୍ରିକ୍ | ଡବ୍ଲିଡ୍ରେ |
| ୪. | ଗେଟ୍ ଏ ଲାଇଫ୍ | ନାଡିନ ଗୋରଡିମିର୍ | ବ୍ଲୁମସବୁରୀ |
| ୫. | ଦି ସିକ୍ରେଟ ରିଭର୍ | କାଟେ ଗ୍ରିନ୍‌ଭିଲୀ | କ୍ୟାନୋନଗେଟ |
| ୬. | କ୍ୟାରି ମି ଡାଉନ୍ | ଏମ୍.ଜେ. ହାଇଲ୍ୟାଣ୍ଡ | କ୍ୟାନୋନଗେଟ |

| | | |
|---|---|---|
| ୭. କାଲୁକି ନାଇଟସ୍ | ହାୱାର୍ଡ ଯାକୋବସନ୍ | ଯୋନାଥନ କେପ୍ |
| ୮. ସେଭେନ୍ ଲାଇଜ୍ | ଜେମ୍ସ ଲାସଡୁନ୍ | ଯୋନାଥନ କେପ୍ |
| ୯. ଦି ଅଦର୍ ସାଇଡ ଅଫ ଦି ବ୍ରିଜ | ମାରୀ ଲସନ୍ | ଚାଟ୍ଟୋ ଏଣ୍ଡ ଉଇଣ୍ଡସ |
| ୧୦.ସୋ ମେନି ୱେଜ୍ ଟୁ ବିଗିନ୍ | ଯୋନ୍ ମ୍ୟାକ୍ ଗ୍ରେଗୋର | ବ୍ଲୁମ୍ସବୁରୀ |
| ୧୧.ଇନ୍ ଦି କଂଟ୍ରୀ ଅଫ୍ ମେନ୍ | ହିସାମ୍ ମଟାର | ଭିକିଂ |
| ୧୨.ଦି ଏମ୍ପରର୍ସ ଚିଲଡ୍ରେନ୍ | କ୍ଲାରେ ମେସୁଦ୍ | ପିକାଡୋର |
| ୧୩.ବ୍ଲାକ୍ ସ୍ୱାନ୍ ଗ୍ରୀନ୍ | ଡାଭିଡ ମିଡ୍‌କେଲ୍ | ସେପ୍‌ଟ୍ରେ |
| ୧୪.ଦି ପରଫେକ୍ଟ ମ୍ୟାନ୍ | ନିୟିମ ମୁର୍‌ର | ଉଇଲିୟମ ହ୍ୟାନିମାନ |
| ୧୫.ବି ନିୟର୍ ମି | ଆଣ୍ଡ୍ରୁ ଓ ହାଗାନ | ଫେବର ଏଣ୍ଡ ଫେବର |
| ୧୬.ଦି ଟେଷ୍ଟାମେଣ୍ଟ ଅଫ ଜିଦେନ ମାକ୍ | ଜେମ୍ସ ରବର୍ଟସନ୍ | ହାମିସ୍ ହାମିଲ୍‌ଟନ୍ |
| ୧୭.ମଦର୍ସ ମିଲ୍‌କ | ଏଡୱାର୍ଡ ଷ୍ଟ ଅଭବି | ପିକାଡୋର |
| ୧୮.ଦି ଗୁବୀ ଇନ୍ ଦି ନାଭେଲ୍ | ବାରୀ ଅନ୍‌ସୱର୍ଥ | ହାମିସ୍ ହାମିଲ୍‌ଟେନ୍ |
| ୧୯.ଦି ନାଇଟ୍ ୱାଚ | ସରାହ ୱାଟର୍ସ | ଭିରାଗୋ |

## 'ଦି ଇନ୍‌ହେରିଟାନ୍ସ ଅଫ୍ ଲସ୍' ର ପ୍ଲଟ ଓ ପୁଣ୍ୟ

ସନ୍ତୁଷ୍ଟି, ସମବେଦନା ଓ ବିରଳ ସ୍ପଷ୍ଟବାଦିତାର ଚିତ୍ର 'ଦି ଇନ୍‌ହେରିଟାନ୍ସ ଅଫ୍ ଲସ୍' ବହି ଖଣ୍ଡିକ। ଚଉଦ ବର୍ଷିୟା 'ସାଇ' ପିତୃମାତୃହୀନ ହୋଇ ହୋଇଯାଏ ଅରକ୍ଷିତ। ଆଶ୍ରୟ ଓ ସହାୟତା ପାଇଁ ଆସି ପହଁଚେ କାଲିମପଙ୍ଗ ପାହାଡ ଶ୍ରେଣୀ ମଧ୍ୟରେ ଥିବା ଅଜାଘରେ। ସେଠାରେ ତାକୁ ମାରଧର ତ କରାଗଲା ଏବଂ ଅଳିଆ ଗଦାକୁ ଫିଙ୍ଗିଦେବା ପରି ଥିଲା ତାର ରକ୍ଷଣାବେକ୍ଷଣ। ସିଏ ଖୁବ୍ କମ୍ ଉପଲବ୍ଧି କରେ, ଜୀବନ ତା' ପାଇଁ କ'ଣ ସବୁ ସଂଚିଛି। ତଥାପି ସିଏ ଖୁସି ପ୍ରିୟଜନଙ୍କ ଠାରୁ ବିୟୋଗ ଦୁଃଖ ସତ୍ତ୍ୱେ ଏଠି, ଯେଉଁଠି କନ୍‌ଭେଣ୍ଟର ନିର୍ଦ୍ଦୟ ନନ୍‌ଙ୍କଠୁ ପ୍ରାପ୍ତ ଅସମାପ୍ତ ଯାତନା ହିଁ ଥିଲା ତାର ଜୀବନ ଓ ଜୀଇବା। ତା' ଅଜା ଜଣେ ଅବସର୍ ପ୍ରାପ୍ତ ବିଚାରପତି। ସିଏ ତାଙ୍କ ଭାଷଣରେ ହିଁ ତା ଜୀବନର ପାରାମିଟରକୁ କରନ୍ତି ସଂରକ୍ଷଣ। ଧୂଳି ଆବୃତ୍ତ, ବିକ୍ଷିପ୍ତ ଓ ଅସ୍ୱାଗତ ଆର୍ଦ୍ରତାଯୁକ୍ତ, ଛୋଟ ଛୋଟ ହୋଇ ଭାଙ୍ଗିପଡୁଥିବା ଅଜାଘରେ ସିଏ ଥିଲା ଶାନ୍ତି ରହିତ ଅସୁସ୍ଥ ମାନସ। କିନ୍ତୁ ସିଏ ଏହା କାହାକୁ ଦେଖାଏ ନାହିଁ। ସିଏ ତା ପାଇଁ ଜଣେ ବିଶ୍ୱସ୍ତ ଓ ପ୍ରକୃତ ବନ୍ଧୁ ପାଏ ଘରର ପୁରୁଣା ପାଚକ; ଯିଏ

ଅଶୃଙ୍ଖଳିତ ଭାବେ ସାଇକୁ ତା'ପାଖୁ ପର୍ଯ୍ୟନ୍ତ କରିଥାଏ ସୁସାହାଯ୍ୟ। ପଡ଼ୋଶି ମାନଙ୍କ ସହିତ ତାଙ୍କର ଥାଏ ବଡ଼ ଅସଙ୍ଗତ ସମିଶ୍ରଣ। ମାମୁଁ 'ପୁଟି' ଅଭ୍ୟାସଗତ ଭାବରେ ଭଲ ପାଆନ୍ତି ମଦ୍ୟପାନ କରିବାକୁ। ମାଇଁ ନୋନି ଓ ଲୋଲାଙ୍କ ମଝିରେ ବାଣ୍ଟି ହୋଇ ପ୍ରାପ୍ତ ହୁଏ ସାଇ ତାର ଅପୂର୍ଣ୍ଣ ଶିକ୍ଷା ।

ସାଇ କାହାଣୀ ସହିତ ସମାନ୍ତରାଳ ଭାବେ ଅନ୍ୟ ଗୋଟିଏ କାହାଣୀ ଗତି କରିଛି। ତାହା ହେଲା ବୃଦ୍ଧ ପାଚକର ପୁତ୍ର ବିଜୁର କଥା। ସ୍ୱଳ୍ପ ବେତନରେ ଛୋଟ ଚାକିରୀଟିଏ କରି ସିଏ ରହୁଛି ମାଡ଼ିମକୁଚି ହୋଇ ୟୁନାଇଟେଡ଼ ଷ୍ଟେଟରେ କେବଳ ଗୋଟିଏ ଲକ୍ଷ୍ୟ ଓ ଆଶାରେ କିପରି ସବୁଜ କାର୍ଡ ଖଣ୍ଡେ କରିବ ହାସଲ। ବୃଦ୍ଧ ପାଚକ ବୁଝିଚି ଆମେରିକା ସୁଯୋଗ, ସୁବିଧା ଓ ସମୃଦ୍ଧିର ଭୂମି। କିନ୍ତୁ ତା' ପୁଅର ସମଗ୍ର ଜୀବନ ଯେ ବିତୁଛି ଦୁଃଖ ଓ ଅବଜ୍ଞା ଭିତରେ। ସିଏ (ବିଜୁ) ଯେତେବେଳେ ପଳାଇ ଆସିଛି ଦେଖିଛି ଗିରିମାଳା ଭିତରେ ତା' ଗାଁ ବିପୁଳ ଭାବେ ବଦଳି ଯାଇଛି।

ଏଣେ ସାଇ ମନରେ ଏକ ଗୋପନୀୟ ସୁଖକର ଉତେଜନା ଖେଳି ଯାଇଛି, ଯେତେବେଳେ 'ଜ୍ଞାନ' ଜଣେ ନେପାଳୀ ଗୃହ ଶିକ୍ଷକ ଗଣିତ ପଢ଼ାଇବା ମାଧ୍ୟମରେ ଆସିଛନ୍ତି ତା ପରିବେଶକୁ। ଆଲଜେବ୍ରା ସୂତ୍ର, ଜ୍ୟାମିତିର ସିଦ୍ଧାନ୍ତ, ଗଣିତ ସାଧନାର ଫନ୍ଦୀ ଭିତରେ ସୁଶ୍ରୀ ଶିକ୍ଷକ ଜଣକପ୍ରତି ସିଏ କାମନାରେ ହୋଇ ଉଠିଛି ଆର୍ଦ୍ର। ଶିକ୍ଷକ 'ଜ୍ଞାନ' ମଧ୍ୟ ଦୁରନ୍ତ ଭୂଖଣ୍ଡକୁ ତାକୁ ମନ ଭିତରେ ନେଇ ଯାଇଛି। ସେମାନଙ୍କ ରୋମାନ୍‌ସ ଦିନକୁ ଦିନ ଅଗ୍ରଗତି କରିଛି। ସାଇର ବିଚିତ୍ର ଭାବନାକୁ ବୁଢ଼ାବାପା ବୋଲି ମାନୁଥିବା ପାଚକ ଲକ୍ଷ୍ୟ କରିଛି ଏବଂ ହଜିଲା ସମୟର ସିକତାରେ ଅନନ୍ୟୋପାୟ ସିଏ କ୍ରୋଧରେ ପାଚିଛି ଓ ଦୃଶ୍ୟମାନଙ୍କୁ କେବଳ ମନେ ପକାଉଛି।

ଜ୍ଞାନ ଓ ସାଇଙ୍କ ପ୍ରଣୟବୃକ୍ଷରେ ଦିନେ ଫୁଲ ଫୁଟିଛି। ଅଧିକରୁ ଅଧିକ ପରିମାଣରେ ଏକ ଅସହଜ ସଂପର୍କକୁ ସେମାନଙ୍କୁ ସାମନା କରିବାକୁ ପଡିଛି। ଘଟଣାଟି ଦିନେ ବିଭାଗୀୟ ମୁଖ୍ୟଙ୍କ ଠାରେ ପହଞ୍ଚିଛି। ଜ୍ଞାନ ଉପଲବ୍ଧି କରିଛି ନିଜର ଘୃଣିତ ଓ ନିକୃଷ୍ଟ ସାମାଜିକ ସ୍ଥିତି। ଯେଉଁ ସାଇ ତାକୁ ଉଦ୍ଦୀପିତ କରି ରଖିଥିଲା ତାକୁ ସିଏ ଏବେ ମନ ଭିତରୁ ଶକ୍ତି ପ୍ରୟୋଗ କରି ଦେଲା ନିକାଳି। ଦ୍ୱଂଦ୍ୱ ଓ ବିତୃଷ୍ଣାରେ ସିଏ ଯୋଗଦେଲା ବିଦ୍ରୋହୀ ଗୋଷ୍ଠୀରେ ଏବଂ ଦାବୀ କଲା ତା' ମାତୃଭୂମିର ମୁକ୍ତି। ସବୁ ବିଦେଶୀ ହଟନ୍ତୁ ସେଠୁ।

ନିରାଶ ଭାବର ଅନୁଭୂତିରେ ଆର୍ଦ୍ର ସାଇ ଚେଷ୍ଟା କଲା ମଝିରେ ସୃଷ୍ଟି ହୋଇଥିବା ଶୂନ୍ୟତାକୁ ଦୂର କରି ସଂପର୍କର ସେତୁ ସ୍ଥାପିବାକୁ ମାତ୍ର ହେଲା ବିଫଳ ଓ କେବଳ ଅପମାନିତ। ପରିବର୍ତ୍ତନର ଯେଉଁ ପବନ ବହିଛି, ସେଥିରେ ରହିଛି ବିଶୃଙ୍ଖଳା । ଶେଷ ମୁହୂର୍ତ୍ତରେ ଅତୀତକୁ ଦେଖିବାକୁ ଓ ବୁଝିବାକୁ ମିଳିନାହିଁ ପ୍ରତିଶ୍ରୁତି। ଘନିଷ୍ଠତା ସର୍ବୋଚ୍ଚ ଅସହାୟତାରେ ଜଳିଯାଇଛି। ମାନବିକତା, ଦ୍ୱନ୍ଦ, ଭଲପାଇବା ଓ ଘୃଣା କୃତ୍ରିମ ପୋତାଶ୍ରୟ ହୋଇ ମଣିଷକୁ (ଚରିତ୍ରମାନଙ୍କୁ) ଶେଷକୁ କରିଛି ନିଃସହାୟ।

ସବୁ ଦେଶରେ ମୁଣ୍ଡଟେକି ଉଠୁଥିବା ଜଗତୀକରଣ, ବହୁବିଧ ସଂସ୍କୃତିବାଦ, ଆଧୁନିକବାଦ, ଆତଙ୍କବାଦ ଓ ବିଦ୍ରୋହର ଚିତ୍ରକୁ; ବିପୁଳ ଅସନ୍ତୋଷକୁ କିରଣ ଏହି ବହିରେ ଦେଇଛନ୍ତି ପ୍ରାଧାନ୍ୟପୂର୍ଣ୍ଣ ପ୍ରତିନିଧିତ୍ୱ। ଅନ୍ୟପକ୍ଷରେ ବିଦେଶୀ ବିସ୍ଥାପିତ (im-migrants) ଙ୍କ ବଞ୍ଚିବା ପାଇଁ ସଂଗ୍ରାମ ଓ ସେମାନଙ୍କ ପୃଥକ୍ - ଅବସ୍ଥା (isolation)ର କରୁଣ ଆବେଦନ ଓ ସ୍ଥିରତାର ବଳାତ୍କାର ଏଥିରେ ହୋଇଛି ଚିତ୍ରଣ। ଚରିତ୍ରମାନଙ୍କ ପ୍ରତି ପ୍ରଦର୍ଶିତ ସହାନୁଭୂତି ବା ସମବେଦନା ହିଁ କିରଣ ଦେଶାଇଙ୍କ ଶ୍ରେଷ୍ଠ ସାରସ୍ୱତ ପୁଣ୍ୟ। ପତନ ଭିତରେ ସେମାନେ ବଞ୍ଚିଛନ୍ତି। ସମୟ ସେମାନଙ୍କୁ ପଳାଇ ଯିବା ପାଇଁ ଯାନଟିଏ ଦେଇନାହିଁ। ଏପରିକି ନିଜର ପ୍ରେତାତ୍ମାକୁ ପ୍ରାର୍ଥନାଟିଏ କରିବାକୁ ଅବକାଶ ପାଇ ନ ଥିବା ମଣିଷ ସେମାନେ ! ସେମାନେ ଆଧୁନିକ ! ଉତ୍ତରାଧିକାର ସୂତ୍ରରେ ଲାଭ କରିବାକୁ ଥିବା ସେମାନଙ୍କ ସମସ୍ତ ସଂପଦ ଓ ସ୍ୱାର୍ଥ କ୍ଷୟ ପ୍ରାପ୍ତ। ତଥାପି ସେମାନେ ଜୀବିତ।

ମଣିଷର ଏହି ଦୟନୀୟ ସ୍ଥିତି ତାଙ୍କୁ କରାଇଛି ବୁକ୍‌ରେର ସମ୍ମାନୀତ। ବୁକ୍‌ରେର ଅଧ୍ୟକ୍ଷ Hermione Lee କହିଛନ୍ତି, the judges were looking, among other things, for story telling and historical truthfulness,ଯାହା କିରଣଙ୍କ 'ଦି ଇନ୍ ହେରିଟାନ୍‌ସ ଅଫ୍ ଲସ୍'ରେ ଗତିଶୀଳ ଭାବେ (dynamically) ହୃଦୟଗ୍ରାହୀ ହୋଇଛି।



# 'ଲୋଲିତା'ଠୁ 'ମିଛମହାତ୍ମା' ପର୍ଯ୍ୟନ୍ତ : ନିଷେଧ ବହି ଆକଥାକ

ଅକ୍ଟୋବର ବହିର ମାସ। ଏହି ମାସରେ ଘୋଷିତ ହୁଏ ପ୍ରସିଦ୍ଧ ନୋବେଲ୍ ପୁରସ୍କାର ପ୍ରାପ୍ତ ଲେଖକଙ୍କ ନାମ। ଏହି ମାସରେ ଇଂରାଜୀ ସାହିତ୍ୟର ଶ୍ରେଷ୍ଠ ସ୍ରଷ୍ଟାଙ୍କ ପାଇଁ ଘୋଷିତ ହୁଏ ବୁକେର ପୁରସ୍କାର। ପୁନଶ୍ଚ ପ୍ରାୟତଃ ଏହି ସମୟରେ ପଡେ ଶାରଦୀୟ ମହାପୂଜା। ଏହି ମହାପୂଜା ବା ଦଶହରା ଉପଲକ୍ଷେ ମୋଟା ମୋଟା ହୁଅନ୍ତି ଓଡିଆ ଓ ବଙ୍ଗଳା ପତ୍ର-ପତ୍ରିକା। ଏହି ମାସ ପ୍ରାରମ୍ଭ ସପ୍ତାହରେ ଆମେରିକାରେ ପାଳିତ ହୁଏ ନିଷିଦ୍ଧ ପୁସ୍ତକ ସପ୍ତାହ ବା ଅବୈଧ ବହି ସପ୍ତାହ। ପୁନଶ୍ଚ ଏଠି ସ୍ମରଣ କରାଇ ଦିଆଯାଇପାରେ ଯେ ବହୁ ଚର୍ଚ୍ଚିତ 'ଲୋଲିତା'କୁ ଚଳିତ (୨୦୦୬) ଅକ୍ଟୋବରରେ ପୁରିଲା ପଚାଶ। ଅର୍ଥାତ୍ ଭାଡିମିର୍ ନୋବାକୋଭଙ୍କ ରଚିତ ଅଶ୍ଳୀଳ ଅଭିଯୁକ୍ତ ନିଷେଧ ପୁସ୍ତକ ଯାହା ଅବଶ୍ୟ ପରେ ନ୍ୟାୟାଳୟ ଦ୍ୱାରା ହୋଇଥିଲା ଅଭିଯୋଗ ମୁକ୍ତ। ଏହାର ସଂପାଦକ John Ray ତାଙ୍କ ସଂପାଦକୀୟର ଶେଷ ପାରାଗ୍ରାଫ୍ ପ୍ରାରମ୍ଭରେ ଉଲ୍ଲେଖ କରିଛନ୍ତି ବହିଟିର ଗୁରୁତ୍ୱ : As a case history, "Lolita" will become no doubt, a classic in psychiatric circles. As a work of art, it transcends its expiatory aspects; and still more important to us than scientific significance and literary worth' ।

ଓଡ଼ିଶାରେ ଗତ ଅକ୍ଟୋବର ପରେ ପରେ ହୈ ଚୈ ମଚାଇଛି ଖଣ୍ଡିଏ ପୁସ୍ତକ 'ମିଛ ମହାତ୍ମା'। ଏହାର ଲେଖକ ହୈ ଚୈ ମଚାଇବାକୁ କିଛି ବର୍ଷ ତଳୁ ଆରମ୍ଭ କରିଥିଲେ ଉଦ୍ୟମ। ତାଙ୍କ ରଚିତ ବହିମାନ ଅସଚେତନ ଓଡ଼ିଆ ପାଠକଙ୍କ କରି ପାରି ନ ଥିଲା ନିଦ୍ରାଭଙ୍ଗ। ଏହି ବହି ଉପରେ ଯେତେବେଳେ ସିଏ ଗୋଟିଏ ଟି.ଭି. ଚାନେଲ୍‌ରେ ପ୍ରକାଶ କଲେ, ଅଜ୍ଞ ପାଠକ (ଶ୍ରୋତା) ଚମକି ପଡିଲେ। ତା'ପରେ ଚାଲିଲା ଗୋଳମାଳ। ଆରେ, ଆରେ, ଆମ ମହାତ୍ମାଙ୍କ କରି ଦେଲା ଚରିତ୍ର ସଂହାର ? ଗଙ୍ଗାକୁ କରି ଦେଲା କଳୁଷିତ ? ତୁଳସୀ ହୋଇଗଲା ଧର୍ଷିତ ? ମାରା ହୋଇଗଲା ଆମ ଉପବୀତ। 'ମାଇଁ ଏକ୍ସପେରିମେଣ୍ଟ ଉଇଥ୍ ଟ୍ରୁଥ୍'- 'ସତ୍ୟ ସହିତ ମୋର ବଞ୍ଚିବା' ବୋଧହୁଏ ଏହାର ମୂଳଭାବ।

ମୋହନ ଦାସ କରମ ଚାନ୍ଦ ଗାନ୍ଧି ରଚନା କରିଛନ୍ତି ନିଜ ଅନୁଭୂତି । କେତେ ଜଣ ହୋ ହଲ୍ଲାକାରି ସେ ବହିଟି ପଢ଼ିଛନ୍ତି ? 'ଡବଲସରୋ' ଅଧ୍ୟାୟଟି ଜଣେ ମହାତ୍ମାଙ୍କ ବ୍ୟତୀତ ଲେଖି ନପାରେ ଜଣେ ସାଧାରଣ ଲେଖକ । ଲେଖକ ମାତ୍ରକେ ହିଁ ମିଛୁଆ । ଯାହା ଲେଖନ୍ତି ତହିଁରେ ବାସ୍ତବ ଅନୁଭୂତି ଥାଏ ଯେତିକି କଳ୍ପନା ଥାଏ ସେତିକି । ଯେତେ ଆତ୍ମଜୀବନୀ ଓ ଜୀବନୀ ଓଡିଆ ଭାଷାରେ ପ୍ରକାଶିତ ହୋଇଛି, କେଉଁ ବହିରେ ଜୀବନର କଳା ଦିଗ ବା କରିଥିବା ନିଷିଦ୍ଧ କର୍ମ ବା ପାପ କଥା କେହି ଉଲ୍ଲେଖ କରିଛନ୍ତି କି ? ସମସ୍ତେ ତ ଜଣେ ଜଣେ ମିଛ ମହାତ୍ମା ନିଜକୁ ଦର୍ଶାଇଛନ୍ତି ! ଘୃଣିତ କର୍ମ କେହି କରିନାହାନ୍ତି ? ସମସ୍ତେ ଗଙ୍ଗାଜଳ ! !

୧୯୨୮ ମସିହା, ଏହି ବର୍ଷ ଇଟାଲିରେ ପ୍ରକାଶିତ ହେଲା ଡାଭିଡ଼୍ ହର୍ବଟ ଲରେନ୍ସଙ୍କ ରଚିତ ବହୁ ଚର୍ଚ୍ଚିତ ଉପନ୍ୟାସ 'ଲେଡି ଚାଟାର୍ଲିସ୍ ଲଭର୍' । ୧୯୬୦ ମସିହା ପର୍ଯ୍ୟନ୍ତ ଏହାର ପ୍ରକାଶନ ଓ ପ୍ରସାରଣ ଇଂଲଣ୍ଡରେ ଥିଲା ନିଷିଦ୍ଧ । ପରିବାରର gamekeeper ସହିତ ଶ୍ରୀମତୀ ଚାଟାର୍ଲିଙ୍କ ଯୌନ ସଂପର୍କ ସୃଷ୍ଟି କଲା ଝଡ଼ । ୧୯୬୦ ମସିହାରେ ପେଙ୍ଗୁଇନ୍ ପ୍ରକାଶନ ବାରଟି କପି ୟୁକେ କାର୍ଯ୍ୟାଳୟରେ ଦାଖଲ କରି କଲେ ମୋକଦ୍ଦମା । ଛଅଦିନ ଧରି ଚାଲିଲା ଶୁଣାଣି । ପ୍ରତିପକ୍ଷ ପଇଁତ୍ରିଶ ଜଣ ସାକ୍ଷୀଙ୍କୁ କରାଇଥିଲେ ଉପସ୍ଥିତ । ସେମାନଙ୍କ ମଧ୍ୟରେ ପ୍ରସିଦ୍ଧ ଔପନ୍ୟାସିକ ଇ.ଏମ୍. ଫରେଷ୍ଟର ଓ Dame Rebecca West ପ୍ରଭୃତି ପ୍ରଦାନ କରିଥିଲେ ସାକ୍ଷ୍ୟ । ଶେଷକୁ ବିଚାରରେ ବହିଟି ହୋଇଗଲା ନିଷିଦ୍ଧମୁକ୍ତ ।

ଭାରତରେ ଇଂରେଜ ସରକାର ଯେଉଁ ବହିକୁ ଉପଲବ୍ଧି କରୁଥିଲେ 'Seditious' ରାଜଦ୍ରୋହାତ୍ମକ ବା ଶାସନ ବିରୋଧୀ, ସେହି ବହିକୁ କରୁଥିଲେ ନିଷିଦ୍ଧ । ନିଷିଦ୍ଧ ବହିର ବିଖ୍ୟାତ ଲେଖକ ଥିଲେ ଔପନ୍ୟାସିକ ପ୍ରେମଚାନ୍ଦ, ବଙ୍ଗଳାର 'ଅଗ୍ନିବୀଣା' କବିତାର ସ୍ରଷ୍ଟା କବି ନଜରୁଲ ଇସଲାମ ପ୍ରଭୃତି । ଦେଶ ସ୍ୱାଧୀନ ହେଲା ପରେ ଜନସାଧାରଣଙ୍କ ଧାର୍ମିକ ଭାବନା ଉପରେ ଆଘାତ ସୃଷ୍ଟି କରୁଥିବା, ଜାତୀୟ ନିରାପତ୍ତା ପ୍ରତି ଆଞ୍ଚ ସୃଷ୍ଟି କରୁଥିବା ବହିଗୁଡିକ ପ୍ରସାରଣ ଓ ପ୍ରକାଶନ ଆଇନ ଦୃଷ୍ଟିରୁ ହେଲା ନିଷିଦ୍ଧ । ରାଜନୈତିକ ଦୃଷ୍ଟିକୋଣରୁ ପଣ୍ଡିତ ନେହେରୁ ଓ ଶିବାଜୀଙ୍କୁ ପ୍ରଶଂସା କରାଯାଇନଥିବାରୁ James Laine ଙ୍କ ରଚିତ 'Hindu king in Islamic India' ଏବଂ Stanley Wolpert ଙ୍କ ରଚିତ 'Nine Hours to Rama' ପୁସ୍ତକ ଧାର୍ମିକ ଭାବନା ପ୍ରତି ଆଞ୍ଚ ଓ ଗାନ୍ଧିଜୀଙ୍କ ପ୍ରତି ଗୋଟିଏ ଛାଡି ଅନ୍ୟ ଗୋଟିଏ ଚିତ୍ର ପ୍ରକାଶ

କରୁଥିବାରୁ ହୋଇଛି ନିଷିଦ୍ଧ। ସେହିପରି 'Dom Moraes ଙ୍କ ରଚିତ 'Bombay' ପୁସ୍ତକ ମଧ୍ୟ ବିକ୍ରୟ ନିଷେଧ।

କେନ୍ଦ୍ର ସରକାର ନିଷେଧ କରିଛନ୍ତି ସଲମାନ୍ ରୁସିଦ୍‌ଙ୍କ ପୁସ୍ତକ Satanic Verses ଏବଂ ଖୁବ୍ ନିକଟରେ ବଂଗ ସରକାର ତସଲିମା ନାସ୍ରେନ୍‌ଙ୍କ 'ଦ୍ୱିଖଣ୍ଡିତୋ'କୁ କରିଛନ୍ତି ଅଭିଯୁକ୍ତ। ସେହିପରି ଓଡ଼ିଶା ପୁଲିସ୍ 'ମିଛ ମହାତ୍ମା' ପୁସ୍ତକକୁ ଖୋଜୁଛି। ଭୁବନେଶ୍ୱରର ଗୋଟିଏ କ୍ଷୁଦ୍ର ପୁସ୍ତକ ଦୋକାନ 'ଶମ୍ଭୁନାଥ ମହାନ୍ତି ଷ୍ଟଲ୍' ଓ ତାଙ୍କ ଘର ସର୍ଚ୍ଚ କରିଛି। ସଲମାନ ରୁସିଦ୍‌ଙ୍କ 'ଦି ମୁରସ୍ ଲାଷ୍ଟ୍ ସାଇ' (The moor's last sigh) କେତେକ ରାଜନୈତିକ ବ୍ୟକ୍ତି ଓ କର୍ମୀ ପୋଡ଼ିଦେବା ପରେ ଏହାର ବିତରକ ବମ୍ବେର ଷ୍ଟ୍ରାଣ୍ଡ ବୁକ୍‌ଷ୍ଟଲ ମାଲିକ ଟି.ଏନ୍ ସାନ୍‌ଭାଗ 'ଟାଇମ୍ସ'କୁ କହିଥିଲେ - "I started the strand book store on November 20, 1949. So far, no government official or policeman has ever contacted me to say that so and so book has been banned and that I should not be stocking a particular book. For that matter, nobody has ever searched my shop for a banned book."

ବିଖ୍ୟାତ ନାଟ୍ୟକାର ବିଜୟ ତେନ୍ଦୁଲକର କହିଛନ୍ତି - 'The intention behind any ban is always political', ପ୍ରତ୍ୟେକ ନିଷିଦ୍ଧ ପୁସ୍ତକ ପଛରେ ରାଜନୈତିକ କାରଣ ଛପିଛି। ଗତ ସେପ୍ଟେମ୍ବର ୨୦୦୫ରେ ତସଲିମାଙ୍କ 'ଦ୍ୱିଖଣ୍ଡିତୋ' ଉପରେ ନିଷେଧ କଲିକତା ଉଚ୍ଚ ନ୍ୟାୟାଳୟ ଉଠାଇ ଦେବା ପରେ ମାତ୍ର ଦୁଇଟି ଦିନରେ ଏହାର ସମସ୍ତ କପି ହୋଇଥିଲା ଶେଷ। ସେଇଭଳି 'ଲେଡି ଚାଟାର୍ଲିସ୍ ଲଭର୍' ଗୋଟିଏ ବର୍ଷରେ ବିକ୍ରୟ ହୋଇଥିଲା ଦୁଇ ନିୟୁତ। ବିତର୍କ ଓ ନିଷେଧ ପୁସ୍ତକ ବିକ୍ରୟରେ ସହାୟକ ହୁଏ ପ୍ରବଳ।

ଜେ.ପି.ଏସ୍ ବର୍ମା କେନ୍ଦ୍ର ଗୃହ ମନ୍ତ୍ରଣାଳୟ ଡେପୁଟୀ ସଚିବ ଆଭ୍ୟନ୍ତରୀଣ ନିରାପତ୍ତା ବିଭାଗ, ଏକ ପ୍ରଶ୍ନର ଉତ୍ତରରେ ଗତ ଅକ୍ଟୋବରରେ 'ଟାଇମ୍ସ'କୁ କହିଛନ୍ତି - 'The Union home minister does not enforce the ban, nor does it maintain a list of banned books, The list is with the customs department. କଷ୍ଟମ ଅଫସରମାନେ ଜଗିବେ ବିଭିନ୍ନ ଉଡାଜାହାଜ ଅବତରଣ କେନ୍ଦ୍ର ଏବଂ ବନ୍ଦରମାନ। ଆମ ଭାରତ ମାଟିରେ ନିଷେଧ

ପୁସ୍ତକମାନଙ୍କୁ ପ୍ରବେଶ କରାଇ ନ ଦେବା ସେମାନଙ୍କ କାମ। ସେହିମାନଙ୍କ ପାଖରେ ରହୁଛି ନିଷିଦ୍ଧ ବହିମାନଙ୍କ ତାଲିକା।

ଆମେରିକାରେ ନିଷିଦ୍ଧ ପୁସ୍ତକ ସପ୍ତାହ ପାଳନ ପରିପ୍ରେକ୍ଷୀରେ 'ଟାଇମ୍ସ' ପ୍ରକାଶିତ କରିଥିଲେ ନିମ୍ନ ତାଲିକା : ଯେଉଁ ବହିଗୁଡିକର ଭାରତରେ ବିକ୍ରୟ ନିଷେଧ।

| କ୍ର.ନଂ | ବହି | ଲେଖକ |
|---|---|---|
| ୧. | ହିନ୍ଦୁ ହେଭେନ୍ | ମାକ୍ସ ୱାଲୀ |
| ୨. | ଅନଆର୍ମଡ଼ ଭିକ୍ଟ୍ରି | ବର୍ଟେଣ୍ଡ ରସେଲ |
| ୩. | ଦି ଲ୍ୟାଣ୍ଡ ଅଫ୍ ଲିଙ୍ଗମ୍ | ଅର୍ଥର ମାଇଲସ୍ |
| ୪. | ସୁଜେ ୱତନ | ପ୍ରେମଚାନ୍ଦ |
| ୫. | ଦି ଫେସ୍ ଅଫ୍ ମଦର ଇଣ୍ଡିଆ | କାଥେରିନ୍ ମାୟୋ |
| ୬. | ଓଲଡ଼ ସୋଲଜର ସାହେବ | ପି.ଏଫ୍ ରିଚାର୍ଡସ୍ |
| ୭. | ନେହେରୁ, ଏ ପଲିଟିକାଲ ବାୟୋଗ୍ରାଫୀ | ମାଇକେଲ୍ ଏଡ଼ୱାର୍ଡସ |
| ୮. | ହୁ କିଲଡ ଗାନ୍ଧି | ଲରେନ୍‌କୋ ଡି ସଦ୍‌ଭାଂଦୁର |
| ୯. | ଦି ହାର୍ଟ ଅଫ୍ ଇଣ୍ଡିଆ | ଆଲେକ୍‌ଜାଣ୍ଡାର କ୍ୟାଂପବେଲ |
| ୧୦. | ଆମେରିକାନ୍ ମିଲିଟାରୀ ଏଡ୍ ଟୁ ପାକିସ୍ତାନ | ସଲାହୁଦ୍ଦିନ୍ ଅହମ୍ମଦ |
| ୧୧. | କ୍ୟାପ୍‌ଟିଭ କାଶ୍ମିର | ଅଜିଜ୍ ବେଗ |
| ୧୨. | ଇଣ୍ଡିଆ ଇଣ୍ଡିପେଣ୍ଡେଣ୍ଟ | ଚାର୍ଲସ୍ ବେଟେଲ୍‌ହେମ୍ |
| ୧୩. | ଦି ରାମାୟଣ | ଔବ୍ରେ ମେନେନ୍ |
| ୧୪. | ସୁଫୀସ୍ ଅଫ୍ ବିଜାପୁର ୧୩୦୦-୧୭୦୦ | ଆର୍ .ଏମ୍. ଇଟନ |
| ୧୫. | ଦି କୋରାନ୍ ଏଣ୍ଡ୍ କାଫିର | ଅରବିନ୍ଦ ଘୋଷ |
| ୧୬. | କାମକଳା | ମୁଲକ ରାଜ ଆନନ୍ଦ |
| ୧୭. | ମିଥ୍ ଅଫ୍ ଦି ହୋଲି କାଓ | ଦ୍ୱିଜେଂନ୍ଦ୍ର ନାରାୟଣ ଝା |
| ୧୮. | ଅଣ୍ଡରଷ୍ଟାଣ୍ଡିଂ ଇସ୍‌ଲାମ ଥ୍ରୋ କୋରାନ୍ ଏଣ୍ଡ୍ ହାଦିଥ୍ | ସୀତାରାମ ଗୋଏଲ |

୧୯. ସାଟାନିକ୍ ଭର୍ସେସ — ସଲମାନ ରୁସିଦ

୨୦. ଏ ହିନ୍ଦୁ କିଙ୍ଗ ଇନ୍ ଆନ୍ ଇସଲାମିକ କିଙ୍ଗଡମ — ଜେମ୍ସ ଲାଇନ୍

ଏବଂ ଏହିପରି ଆଉ କିଛି ବହି।

୧୯୬୧ ରୁ ୧୯୯୧ ଭିତରେ କର୍ଗି ପ୍ରକାଶନୀ 'ଲୋଲିତା'ର ଉଣେଇଶଟି ଇଂରାଜୀ ସଂସ୍କରଣ ବିକ୍ରୟ କରିଛନ୍ତି। ବିଶ୍ୱର ବିଭିନ୍ନ ଭାଷାରେ ଅନୁବାଦିତ ହୋଇ ଏହି ବହିଟିର କୋଟି କୋଟି ସଂଖ୍ୟା ପାଠକଙ୍କ ଆଦୃତି ପ୍ରାପ୍ତ ହୋଇଛି। ସେହିପରି ବୋରିଶ୍ ପାଷ୍ଟରନାକଙ୍କ 'ଡକ୍ଟର ଜିଭାଗୋ' ବହିଟି; ଅଦ୍ୟାବଧି ଋଷୀୟ ଭାଷାରେ ଏହାର ପ୍ରକାଶନ ନିଷିଦ୍ଧ ହୋଇ ରହିଛି। ଉଇଲିମ୍ କୋଲିନ୍ ସନ୍ସ ଏଣ୍ଡ କୋ ସେପ୍ଟେମ୍ବର୧୯୫୮ ରୁ ୧୯୫୯ ଏପ୍ରିଲ୍ ମଧ୍ୟରେ ଏହାର ଚଉଦଟି ସଂସ୍କାରଣ ପ୍ରକାଶିତ କରିଛନ୍ତି। ସେଇଭଳି ଜେମ୍ସ ଜୟସ୍‌ଙ୍କ ବିତର୍କୀତ ଉପନ୍ୟାସ 'ୟୁଲିସିସ୍'। ୧୯୮୨ ଜେମ୍ସ ଜୟସ୍‌ଙ୍କ ଜନ୍ମ ଶତାବ୍ଦୀ ପାଳନ କଲା ସମଗ୍ର ଇଂଲିଶ୍ କଥିତ ମୂଳକ। ସେହି ପରିପ୍ରେକ୍ଷୀରେ ବିଭିନ୍ନ ବିଶ୍ୱବିଦ୍ୟାଳୟ ପାଠ୍ୟରେ ଅନୁପ୍ରବେଶ କରିଛି ବହି ଖଣ୍ଡିକ।

ଡିସେମ୍ବର ଛ' ତାରିଖ ଉଣେଇଶ ତେତିଶ ମସିହା, ୟୁନାଇଟେଡ ଷ୍ଟେଟ୍ ଜିଲ୍ଲା ଜଜ୍ John M. Woolsey 'ୟୁଲିସିସ୍' ଜଜ୍‌ମେଣ୍ଟର ପଞ୍ଚମ ପଏଣ୍ଟରେ ଉଲ୍ଲେଖ କରିଛନ୍ତି : 'I have mentioned above many words usually considered dirty, I have not found anything that I consider to be dirt for dirt's sake. Each word of the book contributes like a bit of mosaic to the detail of the picture' ସର୍କିଟ ବେଞ୍ଚର ବିଚାରକ ଦ୍ୱୟ ନିଜ ରାୟରେ ଉଲ୍ଲେଖ କରିଥିଲେ 'a realism characteristic of present' ହେତୁ ଅତ୍ୟନ୍ତ ଅଶ୍ଳୀଳ ଲାଗୁଛି।

ନିଜ ଆତ୍ମ ଜୀବନୀମୂଳକ ଉପନ୍ୟାସରେ ସମରସେଟ ମୋମ୍ କହନ୍ତି 'I would sooner a writer were valgar than mincing, for life is valgar and it is life he seeks'. ଜୀବନ ଅଶ୍ଳୀଳ। ଲେଖକ ଜଣେ ମଣିଷ ଏବଂ ସିଏ ଖୋଜୁଥାଏ ଜୀବନକୁ। ଜୀବନ ନିଜେ ତା' ପାଇଁ ଈଶ୍ୱର। ତା ପାଇଁ ଜୀବନ ସତ୍ୟ, ଶିବ ଓ ସୁନ୍ଦର। ହେଉ ବରଂ ଶିବାଳୟରେ ଆରାଧିତ ନଗ୍ନ ଲିଙ୍ଗପରି ଯୋନି ସଂଲଗ୍ନ ! ନିଜ ସୃଷ୍ଟିରେ ତାହାଙ୍କ ଆରାଧନା ନକରି କେମିତି ସେ ଫେରିପାରିବ ? ଜୀବନକୁ ନ ଜୀଇ କେମିତି କିଏ ପ୍ରତ୍ୟାଖ୍ୟାନ କରିବ ?



# ଅମୃତ ଅଭୀପ୍ସାର ଅନ୍ୟନାମ କବିତା

ଖ୍ରୀଷ୍ଟପୂର୍ବ ପଞ୍ଚମ ଶତକରୁ ଗୌତମ-ବୁଦ୍ଧ ଉପଲବ୍ଧି କରିଥିଲେ ମାନବ ଶାଶ୍ୱତ ଦୁଃଖୀ। ତା' ଦୁଃଖ, ବ୍ୟାଧି ଓ ବାର୍ଦ୍ଧକ୍ୟଠାରେ ନୁହେଁ ସୀମିତ; ଲମ୍ବିଛି ମୃତ୍ୟୁ ପର୍ଯ୍ୟନ୍ତ! ଅଦ୍ୱୈତ ସିଦ୍ଧାନ୍ତ ମୃତ୍ୟୁଠି ପ୍ରାଣର ସମାପ୍ତି ସ୍ଥିର କରିନାହିଁ। ଜୀବନ ଜନ୍ମ ନେଉଛି ସୃଷ୍ଟିର ପ୍ରାରମ୍ଭରୁ ଜୀବୋନ୍ମୁକ୍ତ ବା ନିର୍ବାଣ ପ୍ରାପ୍ତ ନହେବା ପର୍ଯ୍ୟନ୍ତ! ପଛ ଜନ୍ମର କର୍ମ ବା ପ୍ରାରବ୍ଧ ନିୟନ୍ତ୍ରଣ କରୁଛି ତା ଚଳିତ ଜନ୍ମ-ଜୀବନ। ଚଳିତ ଜନ୍ମର ସ୍ୱାଧ୍ୟାୟ, ଜପ ଓ ଦାନ ଆସନ୍ତା ଜନ୍ମ ପାଇଁ ହୁଏ ତା' ଅର୍ଜିତ ପୁଞ୍ଜି। ଏହି ତପତ୍ରୟ ଥାଆନ୍ତି ଆତ୍ମା ସହିତ। ମୃତ୍ୟୁ ପରେ ଆତ୍ମା ଭୋଗ କରନ୍ତି ସ୍ୱର୍ଗ, ପୁଣ୍ୟ କ୍ଷୀଣ ହେଲେ ବ୍ରହ୍ମଲୋକରେ ଥିଲେ ମଧ୍ୟ ସିଏ ଫେରନ୍ତି ମନୁଷ୍ୟଲୋକକୁ।

ସଂସାରକୁ ଭୋଗ କରିଲାବେଳେ - 'ସନ୍ତୋଷସ୍ତ୍ରିଷୁ କର୍ତ୍ତବ୍ୟଃ': ତାଙ୍କର ତିନି କଥାରେ ସନ୍ତୁଷ୍ଟ ରହିବା ଆବଶ୍ୟକ। ଏକ-ପ୍ରାପ୍ତ ସ୍ତ୍ରୀ, ଦୁଇ-ପ୍ରାପ୍ତ ଭୋଜନ ଓ ତିନି-ପ୍ରାପ୍ତ ଧନ। ଏହି ତ୍ରୟ ତାଙ୍କ ପୂର୍ବଜନ୍ମର କୃତକର୍ମ ବା ପ୍ରାରବ୍ଧର ଅଧୀନ। ମାନବ ଅଜ୍ଞାନ ଅନ୍ଧକାର ଦ୍ୱାରା ଆବୃତ। ଅଜ୍ଞାନ ତାଙ୍କୁ କରିଥାଏ ମୋହମୁଗ୍ଧ।

ମନର କାମ ହେଲା ଶିଳ୍ପୀର ଛବି ଅଙ୍କନପରି ସପ୍ନ ଦର୍ଶନ କରାଇବ! ମନ ମନୁଷ୍ୟକୁ ଦେଖାଇ ଚାଲିଥାଏ ଅହୋର୍ନିଶି ସ୍ୱପ୍ନ। ସୁଖ ସ୍ୱପ୍ନ! ବେଳେ ବେଳେ ମଧ୍ୟ ଦୁଃଖ ସ୍ୱପ୍ନ। ଏହି ମନଯୋଗୁ ମାନବ ସ୍ୱପ୍ନପ୍ରବଣ। ସ୍ୱପ୍ନପ୍ରବଣ ମାନବ ବିସ୍ମରିଯାଏ ତା କର୍ତ୍ତବ୍ୟ ଓ କର୍ମ। ଏହା ସଂସାରର ନିୟମ। ସୃଷ୍ଟିଲୀଳାର ଏହା ବୈଚିତ୍ର୍ୟ। ତାହା ନହେଲେ ମାନବ ମାନବ ନରହି ହୋଇଯିବ ଦେବ! କିମ୍ବା ପଶୁଟିଏ ହୋଇ ରହିଯିବ।

'ମନୁଷ୍ୟ ଦେହେ ଦିବ୍ୟଜ୍ଞାନ / ଦେଖି ସନ୍ତୋଷ ଭଗବାନ' ଏହି ପଂକ୍ତିଟି ଭୁଲ ହୋଇଯିବ। ମନୁ ପୁତ୍ରଙ୍କ ଅମୃତ ଅଭୀପ୍ସା ହେବ ବ୍ୟାହତ। ତେଣୁ ସତ୍ୟର ମୁଖକୁ ଏକ ସୁବର୍ଣ୍ଣପାତ୍ର ଦ୍ୱାରା ଆଚ୍ଛାଦନ କରାଯାଇଛି। ଅଦ୍ୱୈତ ସିଦ୍ଧାନ୍ତ ସେହି ସୁବର୍ଣ୍ଣର ଆବୁଆଳଟିକୁ କହିଛନ୍ତି ମାୟା।

ମାୟା ସତ୍ୟର ସହଚାରିଣୀ ସଖୀ। ମାୟା ନିଜେ ସତ୍ୟ ଓ ସତ୍ୟ ନିଜେ ସିଦ୍ଧି। ସେହି ସିଦ୍ଧି ବୈଦିକ କାଳରୁ ପ୍ରାପ୍ତ ହୋଇଛନ୍ତି କବି। ଅମୃତ ସେବିତ ସେହି କବିମାନେ

ଋଷି । ସେମାନଙ୍କ ବ୍ୟବହୃତ ଶବ୍ଦମାନ ମନ୍ତ୍ର ସଂଜୀବିତ ।... 'Which is the supreme form of prayer, ବୋଲି ମିଡିଲ୍‌ଟୋନ୍ ମୁରୀ ଉଲ୍ଲେଖ କରିଛନ୍ତି । ଜେମ୍‌ସ ରସେଲ ଲୋଓ୍ୱେଲ୍ ତାଙ୍କ ବକ୍ତୃତା 'ଦି ଫଙ୍କସନ୍ ଅଫ୍ ଦି ପୋଏଟ'ରେ କବି ଓ ପୁରୋହିତଙ୍କୁ ଅଦ୍ୱୈତ ବ୍ୟକ୍ତିତ୍ୱ ଭାବରେ ଉପଲବ୍ଧି କରିଛନ୍ତି । ଇମରସନ୍ କବିତାକୁ ହୃଦୟର ପୁଷ୍ପ ବା ମନ ଦ୍ୱାରା ପ୍ରସ୍ଫୁଟିତ କରାଯାଇଥିବା ପୁଷ୍ପ ବୋଲି ଅଭିହିତ କରିଛନ୍ତି । କବି ବ୍ୟବହୃତ କରିଥିବା ଭାଷା ସାଧାରଣ ମଣିଷଙ୍କ ଭାଷାପରି ବୋଧ୍ୟ କିନ୍ତୁ ତାହା ଜଣେ କାଳେସୀର ଉଚ୍ଚାରଣ ପରି ତାଙ୍କ କଣ୍ଠରୁ ଉଚ୍ଚାରିତ ହୋଇଥାଏ । ସେଇଥିପାଇଁ ସକ୍ରେଟିସ୍ କହିଥିଲେ - 'The gift which you posses.... is not an art, but... an inspiration; there is a divinity moving you' ।

ଈଶ୍ୱରଙ୍କର ଇତି ନାହିଁ । ତେଣୁ ତାଙ୍କୁ କୁହାଯାଇଛି 'ନେତି' । ଏହି 'ନେତି' ତତ୍ତ୍ୱର ନାଂଦନିକ ଅଭିବ୍ୟକ୍ତି ଅଟେ 'ଲୀଳା' । କବି ସେହି ଲୀଳାକୁ ଶବ୍ଦରେ ବାନ୍ଧି ପାଠକଙ୍କୁ ଉପଲବ୍ଧି କରାଇଥାନ୍ତି । କବିତାର ଶବ୍ଦ, ସ୍ଥିରବୌଦ୍ଧିକ ମୂଲ୍ୟବୋଧ, ତୀବ୍ର ଆବେଗ, ଉପଲବ୍ଧି ବା ପ୍ରାଣୀଙ୍କ ଆଭାସ ଅଭିବ୍ୟକ୍ତ କରେ ନାହିଁ । ଏହା ଊର୍ଦ୍ଧ୍ୱରେ ପ୍ରାଣର ଆଭାସ ଓ ଆତ୍ମାଙ୍କର ସୂଚନା ଦିଏ । କବିତା ଅବତରଣ କରେ ସ୍ଥିର ବୌଦ୍ଧିକ ଶବ୍ଦକୁ ଧାରଣ କରି । କବିତା ଏକ ଗଠନ; ଅଗଠିତଙ୍କ ଶବ୍ଦବିମ୍ବ । ଅଗଠିତ ବା ଅସତ୍ତା ସ୍ୱୟଂ ଅ-ଲେଖ ସେ ସ୍ୱୟଂ ବ୍ରହ୍ମ । ସେ ସ୍ୱୟଂ ପ୍ରାଣୀର ପ୍ରାଣ । ଜୀବର ଜୀବନ ।

କବିତାରେ ଆମେ ଜୀବନକୁ ଖୋଜୁଛୁ । ଜୀବନ ନଥାଏ କବିତାରେ; ଏହା ଥାଏ ନିଜ ପାଖରେ । ଏହା ଆମେ ନିଜ ପାଖରୁ ଖୋଜିବୁନି । କାରଣ - ଶହ ଶହ ବର୍ଷ ଧରି ଆମେ ଘୋଷି ଆସିଛୁ - 'ମରଣଶୀଳ ମାନବ ଓ ମିଛ ମାୟା ତାର ସଂସାର' । ଏଠି ସତ୍ୟ କାହିଁ ? ଈଶ୍ୱର କାହାନ୍ତି ? ଆନନ୍ଦ ନାହିଁ । 'ଦି ଲାଇଫ୍ ଡିଭାଇନ୍'ରେ ଶ୍ରୀଅରବିନ୍ଦ ଉଲ୍ଲେଖ କରିଛନ୍ତି (ପୃଷ୍ଠା -୮) - 'From delight all the beings are born, by delight they exist and grow, to delight they return' ପୁନଶ୍ଚ ଲେଖିଛନ୍ତି 'Delight is existence'. ମାତ୍ର ଆମେ ଭାବୁଛୁ ଆମ ବଞ୍ଚିବା ଯାତନାପୂର୍ଣ୍ଣ ଓ ଅତ୍ୟନ୍ତ କରୁଣ ।

ଗୋଟିଏ ପ୍ରତିକୂଳ ସ୍ରୋତର ଗତିରେ ଆମ କବିତାର ସୃଷ୍ଟି ଗତି କରିଛି । ଅମୃତର ଉଦ୍‌ଗାର ଅପେକ୍ଷା ମୃତ୍ୟୁର ଚିତ୍କାର ସୃଷ୍ଟି କରି ପୁଷ୍ପିତ ଜୀବନର ମଧୁମୟ ସୁବାସକୁ ଭୋଗ କରିପାରି ନାହୁଁ ।

ଆନନ୍ଦ ସୃଷ୍ଟିର ଗୋପନ ରହସ୍ୟ। ଜନ୍ମର ମୂଳ ଚେର ଉଲ୍ଲାସ। ମାନବ ବଞ୍ଚିଛି ଉଲ୍ଲାସ ହେତୁ। ଲୋଭ ଓ ଭୋଗ ମଦ ହେତୁ ନୁହେଁ। ଦିବସ ପରି ସ୍ପଷ୍ଟ କରି ଦେଇଛନ୍ତ ସୃଷ୍ଟିର ଗୋପନ ରହସ୍ୟ ଗୁରୁ ଶ୍ରୀ ଅରବିନ୍ଦ Delight is the secret of cre--tion, delight is the root of birth, Delight is the corse of remaining in existence delight is the end of birth and that in to which creation ceases' (ଦି ଲାଇଫ ଡିଭାଇନ୍ ପୃଷ୍ଠା -୯୫)

ମୃତ୍ୟୁରେ ବି ଆନନ୍ଦ ଅଛି। 'ଯସ୍ୟ ଛାୟାଽମୃତଂ ତସ୍ୟ ମୃତ୍ୟୁଃ', ଖେଳରେ ଶିଶୁର ଆନନ୍ଦ, ଶବ୍ଦ ଖେଳରେ କବିଙ୍କ ଆନନ୍ଦ, ଅଭିନୟରେ ଆନନ୍ଦିତ ହୁଅନ୍ତି ଅଭିନେତା। ମାନବ ଆତ୍ମା ଏକ ଚିରକାଳୀନ ଯୁବା। ସିଏ ନିଜେ ସୃଷ୍ଟି ଓ ପୁଣି ସ୍ରଷ୍ଟା। ସିଏ ନିଜେ ଅମୃତ ଓ ନିଜେ ଅଭୀପ୍ସିତ। କବିତା ନିମିତ୍ତ ମାତ୍ର। ଉର୍ଦ୍ଧ୍ୱରୁ ଅବ ତରିତ କରୁଣା 'Himself the play, Himself the player, Himself the playground' (ି ଲାଇଫ୍ ଡିଭାଇନ୍ ପୃଷ୍ଠା - ୯୬)।

ସୃଷ୍ଟି ଓ ସ୍ରଷ୍ଟାକୁ ଚିହ୍ନି ହେବ ନାହିଁ। କବିତା ଓ କବିଙ୍କୁ ଜାଣି ହେବ ନାହିଁ।ଶୁଣିହେବ ଝରଣାର କୁଳୁକୁଳୁ, ପାନକରି ହେବ ତାର ସୁଶୀତଳ ମଧୁର ଜଳ। ଦେଖି ହେବ ତାର ଛନ୍ଦ ଯୁକ୍ତ ଗତି। କିନ୍ତୁ ତଥାପି ରହିଥିବ କିଛି ଅଦେଖା, ଅବୁଝା ଓ ଅଜଣା। କାରଣ - ଏହା ମାୟା ଶକ୍ତିଙ୍କ ଲୀଳା, ବିପୁଳ ସର୍ଜନଶୀଳ ଉଜ୍ଜ୍ୱଳ ଶକ୍ତିଙ୍କ ନାନ୍ଦନିକ କର୍ମ।

ଶ୍ରୀ ଅରବିନ୍ଦ ବର୍ଣ୍ଣନା କରିଛନ୍ତି .... 'The universal spirit engaged in this game of creation and the enjoyment is Ishwara' । ସ୍ରଷ୍ଟା ନିଜେ ସୃଷ୍ଟି ଓ ସୃଷ୍ଟି ହିଁ ଆନନ୍ଦ। ଏଣୁ କବିତାର ସଂଜ୍ଞା ନିର୍ଦ୍ଧାରଣ ବେଳେ ସାମୁଏଲ୍ ଟେଲର କଲେରିଜ୍ ଘୋଷଣା କରିଥିଲେ - 'What is poetry? - Is so nearly the same question with, what is a poet'? ଏହାର ଉତ୍ତର ଓ ସମାଧାନ ପରସ୍ପର ମଧ୍ୟରେ ଜଡିତ ଏବଂ ଏକ। ଜଣେ କବି କବିତା ଲେଖିଥାନ୍ତି ନିଜର ଆନନ୍ଦ ପାଇଁକି। ସେହି ଅଶବ୍ଦମୟ ଆନନ୍ଦ ହିଁ ଈଶ୍ୱର। ଅଶବ୍ଦମୟଙ୍କ ଶବ୍ଦମୟ ଅବତରଣ ହିଁ ଅଟେ ଜଣେ କବିଙ୍କ ଅଭୀପ୍ସା। ତାହା ମାୟାର ଆଙ୍ଗିକରେ ସତ୍ୟଙ୍କ ଶିବମୟ ଉପସ୍ଥାପନା। ବୈଚିତ୍ର୍ୟର ଚିତ୍ରମୟ ଉପାସନା।

ସୁଖର ଶବ୍ଦରୂପ, ଶବ୍ଦମୟ ସଂସାରକୁ ଶ୍ରବଣ ମାତ୍ରକେ ସୁଖମୟ କରିଦେବ। ଅମୃତମୟ କରିଦେବ।

ଭାରତୀୟ ସୌନ୍ଦର୍ଯ୍ୟତତ୍ତ୍ୱ ପ୍ରସଙ୍ଗରେ ଶ୍ରୀଅରବିନ୍ଦ ବର୍ଣ୍ଣନା କରିଛନ୍ତି 'Beauty is Ananda taking form - but the form neednot be a physical shape. One speak of beautiful thought, a beautiful act, a beautiful soul. What we speak of as beauty is Ananda is manifestation; beyond manifestation beauty losses itself in ananda or you may say beauty and Ananda become indistinguishably one'. ସୌନ୍ଦର୍ଯ୍ୟ ଓ ଆନନ୍ଦ ପରସ୍ପର ଅବିଚ୍ଛେଦ୍ୟ। ସୌନ୍ଦର୍ଯ୍ୟ ଧାରଣ କରେ ଆନନ୍ଦ ରୂପ। ଆନନ୍ଦର ପ୍ରତିଷ୍ଠା ହିଁ ସୌନ୍ଦର୍ଯ୍ୟର ଲକ୍ଷ୍ୟ ଏବଂ ଧର୍ମ। ଆନନ୍ଦରେ ବିଲୀନ ହୋଇଥାଏ ସୌନ୍ଦର୍ଯ୍ୟ ଏବଂ ସୌନ୍ଦର୍ଯ୍ୟରେ ମହକି ଥାଏ ଆନନ୍ଦ।

ମହାକବି ଶେଲୀ ତାଙ୍କ କବିତା ତତ୍ତ୍ୱରେ ଦର୍ଶାଇଛନ୍ତି – 'Poetry is the record of the best and happiest moments of the happiest and best mind', କବିତା ଆନନ୍ଦପୂର୍ଣ୍ଣ ମନ ଓ ମୁହୂର୍ତ୍ତର ଦଲିଲ ନୁହେଁ, ବରଂ ଶ୍ରେଷ୍ଠ ଦଲିଲ। କାହିଁକି ଘଟେ ଶବ୍ଦ ଅଭିବ୍ୟକ୍ତି ? ମାନବ ହୃଦୟ ତରୁରେ କାହିଁକି ପଲ୍ଲବିତ ହୁଏ କବିତା ? ଶବ୍ଦର ପୁଷ୍ପ ପ୍ରସ୍ଫୁଟିତ ହୁଏ କାହିଁକି ? ଶ୍ରୀଅରବିନ୍ଦ ଉଲ୍ଲେଖ କରିଛନ୍ତି 'The word "expression", means only something that is manifested by the Ananda and of which Ananda is the essence, Love and Beauty are powers of Ananda as Light and knowledge are of consciousness".

ସୌନ୍ଦର୍ଯ୍ୟ ପ୍ରତିଷ୍ଠିତ ହେବା ପାଇଁ ଆବଶ୍ୟକ କରେ ଏକ ମାଧ୍ୟମ। ଶବ୍ଦ 'ଅଭିବ୍ୟକ୍ତ' ହୁଏ, ଅର୍ଥାତ୍ ଆନନ୍ଦ ଶବ୍ଦ ମାଧ୍ୟମରେ ହୁଏ ଉପସ୍ଥାପିତ ବା ଅଭିବ୍ୟକ୍ତିର ନିର୍ଯ୍ୟାସ ହେଲା ଆନନ୍ଦ। ଆନନ୍ଦର ଶକ୍ତି ଦୁଇଟି, ପ୍ରେମ ଓ ସୌନ୍ଦର୍ଯ୍ୟ। ଯେମିତି ଆଲୋକ ଓ ଜ୍ଞାନ ଚେତନାର ଐଶ୍ୱର୍ଯ୍ୟ। ପୁନଶ୍ଚ-ଶବ୍ଦ ଅଭିବ୍ୟକ୍ତି ସମ୍ବନ୍ଧରେ ଶ୍ରୀ ଅରବିନ୍ଦ ଲେଖିଛନ୍ତି – The word is a sound expression of the idea। କବିତା ଏକ ସବୁଜ ସ୍ରୋତ ନାନ୍ଦନିକ ସୌନ୍ଦର୍ଯ୍ୟ ଭିତରୁ ଉଭରି ଆସିଥାଏ। ଏକ ମାନସିକ ସର୍ଜନା ପ୍ରବାହିତ ହୋଇ ଆସିଥାଏ ବିଶୁଦ୍ଧ ଆନନ୍ଦ ମଧ୍ୟରୁ।

କବିତା କଳ୍ପନାର କଳା। ବରଂ ଶ୍ରେଷ୍ଠ କଳ୍ପନାର କଳା। ସୁନ୍ଦର ଗୋଟିଏ ବିମ୍ବରେ ଏହାକୁ ହୃଦବୋଧ କରାଇଛନ୍ତି ମହାକବି ଜନ୍ କୀଟସ୍। ଆଦାମ୍‌ର ସ୍ୱପ୍ନ ସହ ଏହି କଳ୍ପନାର ହେବ ତୁଳନା। ସୃଷ୍ଟିର ପ୍ରଥମ ଯୁବକ ଦେଖୁଥିବ ଯେଉଁ ସ୍ୱପ୍ନ ତାହା ହିଁ

କବିତା ! ... ' a vision in the form of youth' କବିତା ଗୋଟିଏ ଭୋଗମୟ ଓ ରହସ୍ୟମୟ ସୃଷ୍ଟି ଯାହା ଯୌବନ ଧାରଣ କରିଛି। କବି ଓ ପାଠକ- ଉଭୟ ସେହି ଯୌବନକୁ 'ତେନ ତ୍ୟକ୍ତେନ ଭୂଞ୍ଜୀଥା' ସ୍ୱଭାବରେ ଭୋଗ କରନ୍ତି।

ପରବର୍ତ୍ତୀ ସମୟର ସାହିତ୍ୟଶାସ୍ତ୍ରୀ ମାଥ୍ୟୁ ଆର୍ଣ୍ଣୋଲଡ୍ ଦର୍ଶାଇଛନ୍ତି 'The best poetry will be found to have a power of forming, sustaining and delighting us, as nothing else can', କବିତା ମଣିଷକୁ ମଣିଷପରି ଗଢ଼ି ତୋଳିବ, କବିତା ମାନବକୁ ଓ ମାନବିକତାକୁ କରିବ ଧାରଣ ଏବଂ ଦେବ ଆନନ୍ଦ। ଆଉ ଭିନ୍ନ କିଛି କରିପାରିବ ନାହିଁ। ଭିନ୍ନ ଆଉ କ'ଣ ଦରକାର ?

ଶ୍ରୀ ଅରବିନ୍ଦ ଉଲ୍ଲେଖ କରିଛନ୍ତି, 'ମାନବ ଚୈତନ୍ୟ ଚିର ଆଚ୍ଛନ୍ନ। କବିତା ସେହି ଚିଦାବରଣକୁ ଭାଙ୍ଗି ଦେବ। କବିତା ମାନବ ଚେତନାକୁ ମଜା ବାସନପରି ଚକ୍ ଚକ୍ କରିଦେବ।

କବିତା ନିଜେ ଏକ ଅମୃତ ଅଭୀପ୍ସା। ମାନବ ସଭ୍ୟତାର ଉନ୍ମେଷ ଠାରୁ ଅମୃତ ଅଭୀପ୍ସିତ। ଆଲୋକ ଅଭୀପ୍ସିତ , ଅସତ୍‌ରୁ ସତ୍ ଅଭୀପ୍ସିତ। ନିଜ ପ୍ରାର୍ଥନାର ଶିଖାକୁ ଉର୍ଦ୍ଧ୍ୱାୟିତ କରିବାକୁ କବି ପ୍ରାପ୍ତ କରିଥାନ୍ତି ଶବ୍ଦ- ସମୀଧ। ତାଙ୍କ ନିଜ ଜୀବନକୁ ଗଭୀର ଭାବେ ଆଚ୍ଛାଦିତ କରିଥାଏ କବିତା ଯେମିତି ଏକ ସ୍ଫଟିକ ଗହ୍ୱର ଏବଂ ତା ମଧ୍ୟରେ କବିଙ୍କ ଜୀବନ ରଚିଥାଏ ଘର। ନାନ୍ଦନିକ ତତ୍ତ୍ୱବିଦ୍ ଜେ.ଜି ହମାନ ଲେଖିଛନ୍ତି, Poetry is the mother tongue of the human race। ମାନବ ଜାତିର ମାତୃଭାଷା ଅଟେ କବିତା। ମାର୍ଟିନ ହାଇଡ୍‌ଗାର ତାଙ୍କ 'ଲାଙ୍ଗୁଏଜ୍'ରେ ଲେଖିଛନ୍ତି, କବିତାର ଭାଷା ହେବ ନାହିଁ ଦୈନନ୍ଦିନ ବ୍ୟବହୃତ ଶବ୍ଦରେ ନିର୍ମିତ। କବିତାର ଭାଷା ହେବ ସଙ୍ଗୀତମୟ। ଆବେଗପୂର୍ଣ୍ଣ ସୂକ୍ଷ୍ମ ସଙ୍ଗୀତରେ ବ୍ୟକ୍ତହେବ ବକ୍ତବ୍ୟ ବୋଲି ଥୋମାସ୍ କାର୍ଲିଲ୍ କହିଥାନ୍ତି। କବିତାର ଭାଷା ଓ ଶବ୍ଦ ହେବ କେମିତି, ଦୁଇଟି ଧାଡିରେ ଜଣେ ଇଂଲିଶ୍ କବି ବୁଝାଇ ଦେଇଛନ୍ତି:

'Speaking sweetly seaking meetly
Every word deserves a kiss'.

କବିତା ଏଭଳି ମଧୁର ହେବ ଯେମିତି ପାଚିଲା ଆମ୍ବ। ଖୋଜିଲେ ହଜିଲା ଜିନିଷ ହାତ ପାଖରେ ପହଞ୍ଚି ଯାଉଥିବ। ଏହାର ପ୍ରତ୍ୟେକ ଶବ୍ଦ ଚୁମ୍ବନଟିପରି ବୋଧ ହେଉଥିବ। ତା ନହେଲେ ପତ୍ର, ପୁଷ୍ପ ଓ ଫଳହୀନ ଶୁଷ୍କ ଲତା ହୋଇଯିବ ଏବଂ ଦିନେ ସମୟ ଚୁଲିରେ ତାହା ଜାଳ ହୋଇଯିବ। ସେ କବିତା ଆମର ଆଉ

କେଉଁ କାର୍ଯ୍ୟରେ ଆସିବ ? କବିତା ମଣିଷ ମନ ବଖରାରେ ଆସବାବପତ୍ରପରି ସବୁଦିନେ ସଜ୍ଜିତ ହୋଇଥିବ ।

ଭାବନା, କଳ୍ପନା ଓ ଛନ୍ଦର ସୁଷମା ପାଠକୀୟ ଚେତନାକୁ ପ୍ରସାଦରେ ପୂର୍ଣ୍ଣ କରିଦେବ । ସୌନ୍ଦର୍ଯ୍ୟ, ରସ ଓ ଆନନ୍ଦ ମାନବ ଅନ୍ତଃଚେତନାରେ ଭୋଗ ଭରିଦେବ ।

କବିତା ଚେତନାର ଏକ ଉତ୍ତରଣ । କବିତା ବିଦ୍ୟାର ଉପାସନା, 'ବିଦ୍ୟୟାଂ ଅମୃତମଶ୍ନୁତେ' । ଏହି ବିଦ୍ୟାନୁଷ୍ଠାନ ଦ୍ୱାରା କବି ଓ ପାଠକ ଦୁହେଁ ପ୍ରାପ୍ତ ହୋଇଥାନ୍ତି ଅମୃତ । ମୋହ ଓ ଶୋକ ରହେ ନାହିଁ । କବିତା ବିତରିଥାଏ ସୁଖ । 'ବାଚା ବଦାମି ମଧୁମଦ୍...' ମଧୁମୟ ହୋଇଥାଏ ବଚନ । ସମଗ୍ର ପରିବେଶକୁ ପରିବର୍ତ୍ତିତ କରି ଦେଇଥାଏ ଚେତନା: 'ମଧୁ ବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ' । ପବନ ବରଷିଥାଏ ମହୁ ! ନଦୀରେ ପ୍ରବାହିତ ହୋଇଯାଏ ମହୁ । 'ମଧୁ ମତ୍ ପ୍ରାର୍ଥିବ ରଜଃ ।' ପୃଥିବୀ ହୋଇଥାଏ ମଧୁମୟ ଲୋକ ।

ଇଲିୟଟୀୟ ୱେଷ୍ଟଲ୍ୟାଣ୍ଡ ଓ ପାଉଣ୍ଡଙ୍କ ମରୁଭୂଇଁ ଭାରତୀୟ ଜ୍ଞାନ ମଧୁସମ୍ପନ୍ନ ବିଦ୍ୟାର ଉପାସକ କବିଙ୍କଠାରେ ବିରଳ ।

ମଧୁବିଦ୍ୟାରେ ସିଏ ଘୋଷଣା କରିଛନ୍ତି - 'ମଧୋରସ୍ମି ମଧୁତରୋ ମଧୁଧାନ୍ ମଧୂମତ୍ତର । ମମି ତୁ କିଳ ତ୍ୱଂ ବନା ଶାଖାଂ ମଧୁମତୀମିବ' (ଅଥର୍ବ ୧/୩୪/୪) ଅର୍ଥାତ୍ ମୁଁ ମଧୁଠୁ ବି ଅଧିକ ପ୍ରିୟ ଅଟେ । ଜ୍ଞାନମଧୁ ସଂଚୟକାରୀ ବିଦ୍ୱାନଠୁ ମଧ ଅଧିକ ମଧୁର ଅଟେ । ମଧୁଯୁକ୍ତ ଶାଖା ଲତା ଯେପରି ବ୍ୟକ୍ତିକୁ ସୁଖ ଦେଇଥାଏ, ମୁଁ ସେହିପରି ସୁଖ ସେବା ଦେବି, ମୋ ସହିତ ସେହିପରି ମଧୁର ବ୍ୟବହାର କର ।

ଯାହାଙ୍କ ପାଖରେ ରହିଛି ମଧୁର ସମୁଦ୍ର, ସେ ହିଁ ସଂସାରକୁ ସମର୍ପି ପାରନ୍ତି ମଧୁ । ମଧୁ ରସରେ ରସାକୁ ପ୍ଲାବିତ କରି ଦେଇପାରନ୍ତି । ଆଦି କାଳରେ କବି ଚେତନାର ଏହି ବିଶ୍ଳେଷଣ କରି ସାହିତ୍ୟଶାସ୍ତ୍ରୀ ତାଙ୍କୁ 'କବିର୍ମନୀଷୀ ପରିଭୂଃ ସ୍ୱୟଂମ୍ଭୂ ବୋଲି ଉଲ୍ଲେଖ କରିଛନ୍ତି । କବି ଅର୍ଥାତ୍ ସର୍ବଦ୍ରଷ୍ଟା । ମନୀଷୀ ବା ସର୍ବଜ୍ଞ ବା ଜ୍ଞାନବାନ । ପରିଭୂ ଅର୍ଥାତ୍ ସର୍ବନିୟନ୍ତା ଏବଂ ସ୍ୱୟମ୍ଭୂ ଅର୍ଥାତ୍ ସ୍ୱେଚ୍ଛାରେ ଯିଏ ନିଜକୁ ଶବ୍ଦଶିଳ୍ପରେ ପ୍ରକଟ କରାଇ ପାରନ୍ତି । ନିଜର ଏହି ସ୍ୱରୂପକୁ ସ୍ମୃତିପଟରେ ସଚେତନ ଭାବେ ସାଇତି କବିତା ରଚନାରେ ଯଦି ବ୍ରତୀ ହେବେ କବି, ତାଙ୍କ କବିତା ମିଡିଲ୍‌ଟୋନ୍ ମୁରୀଙ୍କ ଭାଷାରେ ହେବ ପ୍ରାର୍ଥନାର ଉଚ୍ଚତମ ଆଙ୍ଗିକ, କବିତା ଶବ୍ଦଶିଳ୍ପ ନ ହୋଇ ହେବ ଉଚ୍ଚତର ଅଭୀପ୍ସା । ଦିବ୍ୟ ଆନନ୍ଦ ପ୍ରାପ୍ତିର ହେବ ମାଧ୍ୟମ ।



# ଭରତୀୟ ସାହିତ୍ୟଶିଳ୍ପ ଓ ଶିଳ୍ପୀ

ଜୀବନ ଉଚ୍ଚାରିତ ହେଉଚି ଗୋଟିଏ ବହୁଚର୍ଚ୍ଚିତ ଶବ୍ଦପରି ! କାମାତୁରା ସ୍ରୋତଟିଏ ରାସ୍ତା ଖୋଜୁଚି ଯେମିତି ସିକତାର ଗାଲିଚା ତଳେ ଅନ୍ତଃସଲିଳ ଫଲ୍‌ଗୁର ଧାର ! ସବୁ ହଜିଯାଉଚି ବୁନ୍ଦାବୁନ୍ଦା ଶିଶିର, ଶୀତର ଚାଦରରୁ ଖସିଥିବା ମୁକ୍ତାର ଝଲମଲ ଐଶ୍ୱର୍ଯ୍ୟ, ସୂର୍ଯ୍ୟକିରଣର ବିଂଚଣା ଘୂର୍ଣ୍ଣନରୁ ! ଘୁଞ୍ଚିଯାଉଚି ସକାଳ । ଘୁଞ୍ଚିଯାଉଚି ତାରୁଣ୍ୟର ଉତ୍ତାଳ । ଅପରାହ୍ନର ହାଇ ଭିତରେ ବାସୁଛି ଛାଇର ଦୁର୍ଗନ୍ଧ ! ବହୁ ଉଚ୍ଚାରିତ ଜୀବନକୁ ସୁଖ-ସଂପଦର ଠିକଣାଟିଏ ପ୍ରାପ୍ତ ହେବାକୁ ଆଉ କେତେକାଳ ଲାଗିବ ? ଆଉ କେତେକାଳ ଲାଗିବ ?

ପ୍ରଶ୍ନ ଯେମିତି ପ୍ରଣୟ, ତମାମ ଜୀବନ ଚହଟିଥାଏ । ଯେମିତି ସଂଦିଗ୍ଧ ବିମ୍ବଟିଏ ତମାମ ସମୟ ବାଣ୍ଟି ହୋଇଯାଏ । ଦେହ ତ ପାଚିଲା ପତ୍ରଟିଏ ପ୍ରଳୟ ସ୍ରୋତର କୋଳରେ ଭାସୁଥାଏ । ଲଙ୍ଗଳା ପତ୍ରକୁ ପ୍ରଳୟ ସ୍ରୋତ ନଚାଉଥାଏ ତାଣ୍ଡବ ! ଆର୍ଦ୍ର ହୋଇ ଯାଉଥାଏ ତରଙ୍ଗର ଧକ୍‌କାରେ ଦେହାଂଶ । ଦେହ ଭିତରେ ଚିତ୍କାର କରୁଥାଏ ସୁଖତୃଷିତ ମନର ପୁରୁଷ । ପ୍ରାଣର ପିଠିରେ ପିଟି ହେଉଥାଏ ଅସହାୟତାର ବେତ !

କେତେବେଳେ ଯେ ନଥାଏ ଦେହତଳେ ଚିତ୍କାରରତ ପ୍ରଳୟର ଅସ୍ତିତ୍ୱ ? ମହାଭାରତରେ ଯକ୍ଷ ଓଷ୍ଠରୁ ଉଚ୍ଚାରିତ ହୋଇଛି ସେହି ପ୍ରଶ୍ନ । ସେହି ପରମ ବିସ୍ମୟ । ଦେହ ଓ ସୁଖତୃଷିତ ମାନବ ଦେହ ଓ ସୁଖର ସଂଜ୍ଞା ଅଜ୍ଞାତ । ରାଜ୍ୟହୀନ, ବନବାସୀ ଅର୍ଥ ସଂପଦ ରହିତ ଦୁଃସ୍ଥ ସାଧକ ଯୁଧିଷ୍ଠିର, ସଂସାର ଗଣିତର ଜଣେ ଶ୍ରେଷ୍ଠ ଗାଣିତଜ୍ଞ ସେହି ବିସ୍ମୟଟିକୁ ସାହିତ୍ୟରେ ଚିହ୍ନାଇ ଦେଇଛନ୍ତି, 'ଅହନ୍ୟହନି ଭୂତାନି ଗଛନ୍ତୀହ ଯମାଳୟମ୍ । ଶେଷାଃ ସ୍ଥାବର ମିଛନ୍ତି କିମାଶ୍ଚର୍ଯ୍ୟମତଃ ପରମ' ।। ସରିତ ସମୁଦ୍ରଗାମୀ ହେବାପରି ସମସ୍ତ ଜୀବନ ମୃତ୍ୟୁ ସମୁଦ୍ର ଦିଗକୁ ଯାଉଛନ୍ତି । ଯମପୁରୀ ଠାରେ ପହଞ୍ଚି ରହିଯାଉଛନ୍ତି ସେଇଠି ! ଯେଉଁମାନେ ଅବଶିଷ୍ଟ ରହିଛନ୍ତି ଏଠି, ସେମାନେ ସମସ୍ତେ ଏଇଠି ଏମିତି ସବୁଦିନେ ରହିବେ ବୋଲି ଭାବୁଛନ୍ତି । ଏହାଠୁ ବିସ୍ମୟ ଅଛି ଅନ୍ୟ କିଛି ! 'ଫେଡ଼ି ଚିନ୍ତାର ଲୋଚନ କର କର ନିରୀକ୍ଷଣ, ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଚି କିପରି, ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରୀ' ! ଓଡ଼ିଶାରେ ଆଧୁନିକ ଯୁଗ ଅବତରଣ

ପୂର୍ବରୁ ଋଷି କବି ମଧୁସୂଦନ କରିଥିଲେ ସୂଚିତ। ଜୀବନର ସ୍ୱରବର୍ଣ୍ଣକୁ ଅମୃତ ସନ୍ଧାନୀ ସାହିତ୍ୟ ସାଧକ କରିଥିଲେ ବ୍ୟକ୍ତ।

ଜୀବନ ଗଣିତ ନୁହେଁ, ଜୀବନ ସାହିତ୍ୟ। ଗଣିତ ହୋଇଥିଲେ ତାହାର ସମାଧାନ କରିଦେଇଥାନ୍ତେ ଗାଲିଲିଓ, ନିଉଟନ୍, ଆଇନ୍‌ଷ୍ଟାଇନ୍ ଓ ରାମାନୁଜଙ୍କପରି ପଣ୍ଡିତ। ସାହିତ୍ୟ 'ସହିତୌ' ଶବ୍ଦରୁ ନିଷ୍ପନ୍ନ। ଯାହା ଦେହ ସହିତ, ମନ ସହିତ, ପ୍ରାଣ ସହିତ, ହୃଦୟ ସହିତ ରହିଥାଏ ମନୁଷ୍ୟ ସହିତ। ପୁନଶ୍ଚ ରହିଥାଏ ସମୟ ସହିତ। ସମୟ ସହିତ ପ୍ରବାହିତ ହୋଇଥାଏ ଜୀବନର ସ୍ରୋତ। ସମୟର ବନ୍ଧନରେ ବାନ୍ଧି ହୋଇ ରହିଥାଏ ଜୀବନ ସରିତ। ଦୁଃଖ ପରି ବନ୍ଧନ ବି ସତ୍ୟ। ସତ୍ୟର ନିଆରା ରୂପ ଦୁଃଖ। ଦୁଃଖ ସୁଖର ବିପରୀତ ପାର୍ଶ୍ୱ ନୁହେଁ, ବରଂ ସତ୍ୟର ପ୍ରକୃତ ସ୍ୱରୂପ। ସେହି ସ୍ୱରୂପକୁ ଚିହ୍ନାଇ ଦେଇଚି ସାହିତ୍ୟ। 'ଜନ୍ମଦୁଃଖଂ ଜରାଦୁଃଖଂ ଜାୟଦୁଃଖଂ ପୁନଃ ପୁନଃ। ଅନ୍ତକାଳେ ମହାଦୁଃଖଂ ତସ୍ମାତ୍ ଜାଗ୍ରହି ଜାଗ୍ରହି'। ଜନ୍ମ ଏକ ଦୁଃଖ, ବାର୍ଦ୍ଧକ୍ୟ ଏକ ଦୁଃଖ, ବ୍ୟାଧି ଏକ ଦୁଃଖ ଏବଂ ଶ୍ରେଷ ଓ ଶେଷ ଦୁଃଖ ମୃତ୍ୟୁ। ଏହି ଚୌ-ଦୁଃଖ ଅଟେ ବନ୍ଧନ। କି ଦୁଃସ୍ଥ, କି ଶ୍ରେଷ୍ଠ, କି ନିଃସ୍ୱ, କି ସମ୍ରାଟ, ସମସ୍ତଙ୍କୁ ବାନ୍ଧିଥାଏ ଏହି ବନ୍ଧନ। ନେଇଯାଇଥାଏ ନରକକୁ କିମ୍ବା ସ୍ୱର୍ଗକୁ, ପ୍ରେତକରି ଭ୍ରମଣ କରାଇଥାଏ ଲୋକରୁ ଲୋକକୁ କିମ୍ବା ବୃକ୍ଷଟିଏ କରି ମୃତ୍ତିକାରେ ବାନ୍ଧି ଦେଇଥାଏ ପାଦକୁ। ଶବ୍ଦ ଶିଳ୍ପରେ ଏହାକୁ ହିଁ କୁହାଯାଇଛି ବିଦ୍ୟା। 'ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ...'।

କବି ଲେଖିଛନ୍ତି, ଆଉ ଥରେ ଫେରିବିନି ତୁମ ପୃଥିବୀକୁ! 'ମମ ଅଂଶୋ ଜୀବଲୋକେ ଜୀବଭୂତଃ ସନାତନଃ'। ତୁଳସୀଦାସ ଲେଖିଛନ୍ତି, 'ସୋ ଜୀବନ ସତସଙ୍ଗ ପ୍ରଭାଉ। ଲୋକହୁଁ ବେଦ ନ ଆନ ଉପାଉ'। ସତ୍‌ସଙ୍ଗ, ସତ୍ ସହିତ ଯୁକ୍ତ, ଚିତ୍ ସହିତ ଯୁକ୍ତ ଜୀବନ। ଦେହରୁ ସତ୍ ଅଲଗା ହୋଇ ଗଲେ 'ଶବ'। ଶିବ ଥିବା ଯାଏ ତାହା ସୁନ୍ଦର। ଦର୍ପଣ ସାମ୍ନାରେ ନିଜ ମୁହଁଠୁ ନ ଥାଏ ଅନ୍ୟ କିଛି ରୁଚିର। ଯାହା ସତ୍, ତାହା ଶିବ ଏବଂ ତାହା ସୁନ୍ଦର। ସାହିତ୍ୟ ସତ୍ୟ, ଶିବ ଓ ସୁନ୍ଦରର ସମ୍ମିଶ୍ରିତ ସୃଜନ। ଯାହା ଜୀବନ, ତାହାରି ପ୍ରତିଫଳନ ସାହିତ୍ୟ।

ମଣିଷ ଖୋଜୁଚି ସୁଖ-ଶାନ୍ତି ନୁହେଁ, ସିଏ ଖୋଜୁଚି କୁବେରର ସମ୍ପତ୍ତି। ସଂପତ୍ତିରେ କ୍ରୟ କରି ହୁଏ, କେଉଁ ମାର୍କେଟର କେଉଁ ଦୋକାନରେ ମିଳେ ଶାନ୍ତି? କେତେ ଅର୍ଥ ବିନିମୟରେ କେଉଁ ଦୋକାନୀ ବିକ୍ରୟ କରିବ ସୁଖ? ସିଏ ନିଜେ ସୁଖୀ ତ? ତା ବିପଣୀରେ

ଅଛି ଗଚ୍ଛିତ ମାନବର ଅଭୀପ୍ସିତ ସୁଖ ? ସନ୍ଥ କବୀର ଅସୁଖୀ ମନୁଷ୍ୟ ଓ ଅସୁସ୍ଥ ସମାଜକୁ ଉପହାର ଦେଇଛନ୍ତି ଦୁଇଟି ପଂକ୍ତି, 'ଭଟକ ହୁଆ ଭେଦୁ ବିନା ପାଏ କୌନ ଉପାୟ । ଖୋଜତ ଖୋଜତ ଯୁଗ ଗୟେ ପାଓ କୋସ ଘର ଆୟ' । କବି ଜୀବନ ପଥର ଇଂଜିନିୟର । ଦର୍ଶାଇ ଦେଇଛନ୍ତି ବାଟଭୁଲା ବାଟୋଇର ସ୍ଥିତି । ଖୋଜିଖୋଜି ଯୁଗ ଗଲା ବିତି, ସିଏ ଆସିଛି କୋଶକରୁ ମାତ୍ର ପାଏ ବାଟ ! ଭେଦୁଆ ହିଁ କହିଦେବ ଜୀବନର ଚକ୍ରବ୍ୟୂହ ଭେଦ କରିବା ରାସ୍ତା । ତା ନହେଲେ ମାନବ ଘୂରୁଥିବ, ଘୂରିଘୂରି କ୍ଲାନ୍ତ ହେଉଥିବ, ପ୍ରାପ୍ତ ହେଉ ନଥିବ ବ୍ୟୂହ ଭେଦ କରିବା ରାସ୍ତା । ପୃଥିବୀ ପରି ଜୀବନ ମଧ ଏକ ଗୋଲକ । "ଯାବତ୍ ଜନମଂ ତାବତ୍ ମରଣଂ ତାବତ୍ ଜନନୀ ଜଠରେ ଶୟନମ୍..." ଜନ୍ମ ହେବ, ଜୀବନର ଯାତନାକୁ ଅରଣ୍ୟେ ଅଜଗର ପ୍ରାୟ ସହ୍ୟ କରିବ, ଲାଭ କରିବ ମୃତ୍ୟୁ ଏବଂ ମୃତ୍ୟୁ ପରେ ପୁଣି ଥରେ ପ୍ରାପ୍ତ ହେବ ଜନ୍ମ । ପ୍ରାପ୍ତ ହେବ ଜୀବନ, ଯାତନା ଓ ଶେଷକୁ ମୃତ୍ୟୁ । ମୃତ୍ୟୁ ଗଣିତର ଗୋଟିଏ ସମାଧାନ ନୁହେଁ, ବରଂ ଉତ୍ପାଦକର ଗୋଟିଏ ସାଧାରଣ ସଂଖ୍ୟା ! ଜୀବନର ଏକ ଅବସ୍ଥା । ଶ୍ରେଷ୍ଠ ଓ ଶେଷତମ ଅବସ୍ଥା । ମୃତ୍ୟୁ ହିଁ ଶ୍ରେଷ୍ଠତମ ଯାତନା । ଦେହକୁ ମୃତ୍ୟୁଠୁ ବଳି କରୁଣ, ଭୟାନକ ଓ ବୀଭତ୍ସ ବେଦନା ଅନ୍ୟ କେହି ପ୍ରଦାନ କରିପାରେନା ! ସେଇଥି ପାଇଁ ବୁଦ୍ଧିଯୁକ୍ତ କବି ଉଚ୍ଚାରଣ କରିଛନ୍ତି, 'ମୃତ୍ୟୁର୍ମାଂ ଅମୃତଂର୍ଗମୟଃ' । ମାଗି ନାହାନ୍ତି ମୁକ୍ତି, ମୋକ୍ଷ କି ବୈକୁଣ୍ଠ !

ନୂଆ ରାସ୍ତାର ବୈୟାକରଣିକ କରିଛନ୍ତି ପଥପ୍ରଦର୍ଶନ, 'ହରିସ୍ମୃତିଃ ସର୍ବବିପଦ୍ଧି ମୋକ୍ଷଣମ୍' ! ଭଗବାନ ଶ୍ରୀହରିଙ୍କ ସ୍ମରଣ ସର୍ବ ବିପତ୍ତିରୁ କରିଦିଏ ମୁକ୍ତ । ଶ୍ରୀକୃଷ୍ଣଙ୍କ ମୁଖରୁ କ୍ଷରିତ ହୋଇଚି, 'ଭଜତାଂ ପ୍ରୀତିପୂର୍ବକମ୍ । ଦଦାମି ବୁଦ୍ଧି ଯୋଗଂ ତଂ'... । କବି କବୀର ଲେଖିଛନ୍ତି, 'ନଥନୀ ଦିହ୍ଲୀ ୟାର୍ ନେ ସୁମିରତି ବାରଂବାର । ନାକ ଦିହ୍ନୋ କରତାର ନେ ତାକୋ ଦିୟା ବିସାର' । ଅର୍ଥାତ୍, ଝିଅଲୋ, ୟାର୍ ବା ତୋ ମନର ମଣିଷ, ତତେ ଦେଇଛି ଗୋଟିଏ ନାସାଳଙ୍କାର ! ତୁ ତାକୁ ସ୍ମରଣ କରୁଚୁ ବାରମ୍ବାର । ହାୟ କି ଜୁଲମ ତୁ ନକରୁଚୁ ତୋ ନିଜ ସହିତ ଲୋ ମା' ! ତୁ ସ୍ମରଣ କରୁ ନାହୁଁ ସେହି ଦାତାକୁ ଯିଏ ତତେ ଦେଇଚି ଏଇ ନାକଟି ! ତୁ ତାକୁ ଗଲୁ ବିସ୍ମରି ! ଯିଏ ତୋର, ତୋର ହୋଇ ରହିବ, ସେଇ ତୋ ହୃଦୟର ପୁରୁଷ ! ଯାହାକୁ ତୁ ଛାଡି ରହିପାରିବୁନି, ତାକୁ ତୁ ସ୍ମରଣ କର । ଅଳଙ୍କାର ଦେଇଥିବା ଅଳୀକ ପୁରୁଷକୁ ଭାବୁଚୁ କ'ଣ ?

'ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା...' ପରବର୍ତ୍ତୀ ଅସ୍ତିତ୍ୱକୁ ବର୍ଣ୍ଣନା କରିଛନ୍ତି ଶ୍ରୀମଦ୍‌ଗୀତା: 'ସ ତରତି ସ ତରତି ଲୋକାଂସ୍ତାରୟତି'। ସିଏ ତରନ୍ତି, ଯାତନାର ଯମୁନାକୁ ପାରହୋଇ ଯାନ୍ତି। ଅନ୍ୟମାନଙ୍କୁ ମଧ୍ୟ ଯନ୍ତ୍ରଣାର ଜତୁଗୃହରୁ ତାରିଥାନ୍ତି। 'ସାଧତେ ପରମଂ କାର୍ଯ୍ୟଂ ଇତି ସାଧୁଃ।' ସେଇ ସାଧୁ, ଯିଏ ପରମ କାର୍ଯ୍ୟ କରନ୍ତି ସାଧନ। ସେହି ସାଧକ ସଂସାର ତ୍ୟାଗୀ ଭିକ୍ଷାର୍ଥୀ ଅର୍ଦ୍ଧନଗ୍ନ ବିଶୃଂଖଳିତ ଜୀବନଯାପନ କରୁଥିବା ଅ-ଶ୍ରମୀ ବାସ୍ତୁହରା ଶୃଙ୍ଖଳ ନୁହନ୍ତି, ସିଏ ସ୍ୱୟଂ କବି। ସଂସାରର ଶ୍ରେଷ୍ଠ ଶବ୍ଦ ଶିଳ୍ପୀ। ପରମ ସାରସ୍ୱତ ସାଧକ। ତା ନହେଲେ ଅନ୍ୟ ଆଉ କିଏ ଅସୁନ୍ଦର ଓ ଅସଜଡ଼ା ଜୀବନ ସ୍ରୋତକୁ ସଜାଡି ସୁନ୍ଦର କରିଦେବ ? ଲୁକ୍‌କାୟିତ ପରମ ପ୍ରଫୁଲ୍ଲ ଗତିକୁ ଅନ୍ଧ ସମାଜର ଶୂନ୍ୟପାତ୍ରରେ ଅମୃତର ଆହାରପରି ପୂର୍ଣ୍ଣ କରିଦେବ ?

ପିଣ୍ଡରୁ କଦାପି ଦୂର ହୁଏ ନାହିଁ ଦୁଃଖ, ଯେତେବେଳେ ପର୍ଯ୍ୟନ୍ତ ଉଦୟ ହୋଇ ନଥାଏ ବ୍ରହ୍ମଜ୍ଞାନର ସୂର୍ଯ୍ୟ। ସମଗ୍ର ଜୀବନ ଭୋଗି ଆସିଥିବା ଦୁଃଖ, ଯାତନା ଓ ଅସୁବିଧା ସହିତ ଚୌରାଅଶୀ ଲକ୍ଷ ଜନ୍ମ ଦୁଃଖରୁ ଦେହୀକୁ, ସତ୍ୟଂ ଶରଣଂ ଗଚ୍ଛାମି, ଜ୍ଞାନଂ ଶରଣଂ ଗଚ୍ଛାମି, ଓ ଈଶଂ ଶରଣଂ ଗଚ୍ଛାମି, କରି ଦେଇଥାଏ ମୁକ୍ତ। ତା ନହେଲେ ନାନ୍ୟ ପନ୍ଥା ବିଦ୍ୟତେ ଅୟନାୟ। ଋଷି-କବି ସତ୍ୟଦ୍ରଷ୍ଟା। ପଥସ୍ରଷ୍ଟା। ପଥ ଓ ପରିଣାମ ପରିଷ୍କାର ଭାବେ କରିଛନ୍ତି ପଦ୍ୟରେ ସୂଚିତ। 'ଯୋ ଏବଂ ବ୍ରହ୍ମୋବ ଜାନାତି ତେଷାଂ ଦେବାନାଂବଳିଂ ବିହତି ବଳିଂ ବିହତି'। ଯିଏ ନିଜର ବ୍ରହ୍ମ ସ୍ୱଭାବକୁ ଜାଣିଯାନ୍ତି, ତାଙ୍କ ଉପରେ ଦେବଗଣ ପ୍ରୀତ ହୋଇଯାନ୍ତି, ତାଙ୍କୁ ନମସ୍କାର କରିଥାନ୍ତି।

ମନୁଷ୍ୟର ସଂଜ୍ଞା-ମନସା ସୀବ୍ୟତି ଇତି ମନୁଷ୍ୟଃ। ଯିଏ ମନ ଦ୍ୱାରା ଚୈତନ୍ୟ ସହିତ ସଂଯୁକ୍ତ ସିଏ ମନୁଷ୍ୟ। ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ। ଦେଖି ସନ୍ତୋଷ ଭଗବାନ। ଦେବ ଓ ଦୈତ୍ୟ ସୃଷ୍ଟିର ମୂଳ ସଂଜାତ। ଦୁହିଁଙ୍କ ସମନ୍ୱୟ ଓ ସମ୍ମିଶ୍ରଣରୁ ଉଦ୍‌ଭବ ମାନବ। ସିଏ ଅର୍ଦ୍ଧେକ ଦେବ, ଅର୍ଦ୍ଧେକ ଦାନବ। ସମସ୍ତ ସ୍ୱର୍ଗୀୟ ଗୁଣର ଅଧିକାରୀ। ଦେବ ଏବଂ ପାଶବିକ ଗୁଣର ଅଧିକାରୀ ଦାନବ। 'ଆହାରଂ ନିଦ୍ରା ଭୟଂ ମୈଥୁନଂ ଚ ଚତୁର୍ଭି ଏତଦ୍ ପଶୁଭିର୍ନରାଣାମ୍। ଧର୍ମଃ ଏକୋଽଧିକଂ ନରାଣାମ୍। ଭୋଜନ, ଶୟନ, ଭୟଭୀତ ହେବା ଏବଂ ମୈଥୁନ କରିବା ଏହି ସମସ୍ତ କର୍ମ ପଶୁ ସହିତ ସମାନ ଭାବରେ କରିଥାଏ ମାନବ। ମନୁଷ୍ୟର ଅନ୍ୟ ଏକ ମହତ୍‌ଗୁଣ ହେଲା ଧର୍ମ। ଯାହା ଦ୍ୱାରା ସିଏ ପଶୁଠୁ ଭିନ୍ନ। ଈଶ୍ୱରଙ୍କ ସୃଷ୍ଟିର ଶ୍ରେଷ୍ଠ ଆର୍ଟ ରୂପେ ହୋଇଥାଏ ବିବେଚିତ।

ଲୁଗାକୁ ସଫା କରେ ସାବୁନ। ମନୁଷ୍ୟକୁ ସଫା କରେ ବ୍ରହ୍ମଚର୍ଯ୍ୟ। ବ୍ରହ୍ମଚର୍ଯ୍ୟ ବୀର୍ଯ୍ୟ ସ୍ତମ୍ଭନ ନୁହେଁ, ବ୍ରହ୍ମଚର୍ଯ୍ୟ ସର୍ବୋଚ୍ଚ ସତ୍ୟ, ଶକ୍ତି, ଚିନ୍ମୟ ଓ ଆନନ୍ଦଙ୍କୁ ଉପଲବ୍ଧିର ନାମ। ବିଦ୍ୟା ହି ସା ବ୍ରହ୍ମଚର୍ଯ୍ୟେଣ ଲଭ୍ୟା। ପୁନଶ୍ଚ ଛାଂଦୋଗ୍ୟରେ କୁହାଯାଇଛି ବ୍ରହ୍ମଲୋକ ବ୍ରହ୍ମଚର୍ଯ୍ୟେଣାନୁବିଂଦତି। ବ୍ରହ୍ମଚର୍ଯ୍ୟ ଦ୍ୱାରା ଯାହା ଲବ୍ଧ ହୁଏ ତାହା ବିଦ୍ୟା ଏବଂ ବ୍ରହ୍ମଚର୍ଯ୍ୟ ଦ୍ୱାରା ହୋଇଥାଏ ବ୍ରହ୍ମଲୋକ ପ୍ରାପ୍ତି। କିନ୍ତୁ ବିଷୟ ବାସନା ଦ୍ୱାରା ମାନବ ହୋଇଥାଏ ବନ୍ଦୀ। ଗାଈ ପାଇଁ ପଘାଟିଏପରି ମାନବ ପାଇଁ ଆବଶ୍ୟକ ବାସନା ଓ ବିଷୟର ପଘା। ତା ନହେଲେ ସବୁଜ ସୃଷ୍ଟି ଲୀଳା ହୋଇଯିବ ଇଲିୟଟଙ୍କ ୱେଷ୍ଟଲ୍ୟାଣ୍ଡ। ଧରିତ୍ରୀ ଆଙ୍କିବ ନାହିଁ ଆଉ ନୂତନ ଚିତ୍ର। କେଦାରରେ ଫଳିବ ନାହିଁ ପକ୍ୱ ଶସ୍ୟ। ବସନ୍ତ ଆସିବ ନାହିଁ ଆଣି ସହକାର ଶାଖାରେ ପକ୍ୱ ଆମ୍ର ଓ ସୁମଧୁର ପଣସ। ଆଷାଢ଼ର ଆକାଶ ହୋଇଯିବ ବନ୍ଧ୍ୟା ଓ ମେଘମୁକ୍ତ। ସେଇଥି ପାଇଁ ବ୍ରହ୍ମା ସର୍ଜନା କଲେ ପ୍ରେମ।

'ନାତଃ ପରତରୋ ମଂତ୍ରଃ ନାତଃ ପରତରଃ ସ୍ତବଃ। ନାତଃ ପରତରା ବିଦ୍ୟା ତୀର୍ଥଂ ନାତଃ ପରାତ୍ ପରମ୍'। ପ୍ରେମଠୁ ବଳି ନାହିଁ ମଂତ୍ର କିଛି, ପ୍ରେମଠୁ ବଳି ନାହିଁ କୌଣସି ଉତ୍କୃଷ୍ଟ ସ୍ତୋତ୍ର, ନାହିଁ କିଛି ଉତ୍କୃଷ୍ଟ ବିଦ୍ୟା ଏବଂ ନା ଅଛି କୌଣସି ଉତ୍କୃଷ୍ଟ ତୀର୍ଥ। ପ୍ରେମ ଦୈହିକ ହେଲେ କାମ, ପ୍ରେମ ଈଶ୍ୱରୀୟ ହେଲେ ବ୍ରହ୍ମ ଏବଂ ପ୍ରେମର ଗୁଣ ହେଲା ଆନନ୍ଦ। ପ୍ରେମର ଧର୍ମ ହେଲା ସମର୍ପଣ ଓ ଅହଂର ପ୍ରତ୍ୟାଖାନ। ସେକ୍ସପିୟର ଲେଖିଛନ୍ତି, 'Love looks not with eyes but with the mind'. ପ୍ରେମ ଚର୍ମର ଚକ୍ଷୁରେ ଦେଖେ ନାହିଁ, ପ୍ରେମ ଦେଖେ ମନର ଆଖିରେ। ପ୍ରେମ ପାଇଁ ଆଖି ଦରକାର ନାହିଁ, ଦରକାର ଏକ ହୃଦୟର ଚକ୍ଷୁ। ହୃଦୟର ଝରକା ଦେଇ ପ୍ରେମର ମଳୟ ଆସିଥାଏ। ସେହି ମଳୟର ସ୍ପର୍ଶରେ ସୁଧୁ ପିତା ନିମ୍ବ ବି ଚନ୍ଦନରେ ବଦଳି ଯାଇଥାଏ। ଜୀବନ ମହମହ ବାସି ଉଠିଥାଏ। ମରୁଭୂମି ସାରା ପାରସ୍ୟ ଗୋଲାପର ହସ ଢେଉ ମାରିଥାଏ। ପଞ୍ଚତନ୍ତ୍ରରେ ଉଲ୍ଲେଖ ରହିଚି, ନାସ୍ତି କିଂଚିତ୍ ସ୍ୱଭାବେନ ସୁନ୍ଦରଂ ଅପି ବା ଅସୁଂଦରମ୍, ଯଦ୍ ଯସ୍ମୈ ରୋଚତେ ତତ୍‌ଭାବେନ ତସ୍ୟ ସୁନ୍ଦରମ୍।

ସଂସାରରେ ନାହିଁ କିଛି ସୁନ୍ଦର ବା ଅସୁନ୍ଦର। ସମସ୍ତଙ୍କର ସ୍ୱଭାବ ପ୍ରାକୃତିକ। ଯିଏ ଯାହାକୁ ଆକର୍ଷକ ବା ରୋଚକବୋଧ ହେଲା, ସିଏ ତା' ପାଇଁ, ତା' ଆଖିରେ ସୁନ୍ଦର। ଯିଏ ବୋଧ ହେଲା ଅରୋଚକ, ସିଏ ତା' ପାଇଁ ଅସୁନ୍ଦର। ସୁନ୍ଦର ଓ ଅସୁନ୍ଦର ମାନବ ରୁଚିବୋଧର ଖେଳ। କିନ୍ତୁ ସୌନ୍ଦର୍ଯ୍ୟ ଆତ୍ମାର ଅନ୍ୟନାମ। ସୁଖର ଅନ୍ୟନାମ

ଆତ୍ମଜ୍ଞାନ। ସଂସାର, ସୁଖ ଓ ସମୟ ସାହିତ୍ୟର ସାଧକ ଉଲ୍ଲେଖ କରିଛନ୍ତି; 'ଆତ୍ମ ଲାଭାତ୍ ପରଂ ଲାଭଂ ନ ବିଦ୍ୟତେ ଆତ୍ମ ସୁଖାତ୍ ପରଂ ସୁଖଂ ନ ବିଦ୍ୟତେ। ଆତ୍ମଜ୍ଞାନାତ୍ ପରଂ ଜ୍ଞାନଂ ନ ବିଦ୍ୟତେ'। ଆତ୍ମଲାଭଠୁ ବଳି କୌଣସି ଲାଭ ନାହିଁ। ଆତ୍ମସୁଖଠୁ ବଳି ଶ୍ରେଷ୍ଠ ସୁଖ ନାହିଁ ଏବଂ ଆତ୍ମଜ୍ଞାନଠୁ ବଳି ଅଧିକ ଜ୍ଞାନ ଆଉ କାହିଁ ?

ମନୁଷ୍ୟତ୍ୱଂ, ମୁମୁକ୍ଷୁତ୍ୱଂ, ମହାପୁରୁଷ ସଂଶ୍ରୟଃ - ଏହି ତ୍ରୟ ଯାହାଙ୍କର ଆସିଥାଏ, ସିଏ ଆତ୍ମତତ୍ତ୍ୱ ପ୍ରାପ୍ତ ହୋଇଯାଏ। ଆତ୍ମତତ୍ତ୍ୱବିଦଙ୍କ ପାଇଁ ଜୀବନ ଜୀଇ ରହିବାର କଳା ଉପଲବ୍ଧି ଅମୃତମୟ ହୋଇଥାଏ। ତାଙ୍କର ଅବବୋଧ ନଥାଏ। ମହାପୁରୁଷ ସଂଶ୍ରୟରେ ବଚନ ନଥାଏ, ଯତୋ ବାଚୋ ନିବର୍ତନ୍ତି... ଥାଏ ଅବଗାହନ। ଖୋଜୁଥିବା ଜୀବନ ସ୍ରୋତ ଭିତରକୁ ସିଏ ହାତ ଧରି ଓହ୍ଲାଇ ଆଣନ୍ତି। ଗଙ୍ଗା, ଯମୁନା ଓ ସରସ୍ୱତୀ ସଙ୍ଗମ ତୀର୍ଥ ଜଳରେ ଅବଗାହନ କରାଇ ମାତ୍ର ଗୋଟିଏ ମିନିଟରେ ଯୁଗଯୁଗର ଶୋଷ, ଚୌରାଅଶୀ ଜନ୍ମର ପାପ ବୁନ୍ଦାଏ ଜଳରେ ଲୁଣ ମିଳାଇ ଯିବାପରି ଯାଏ ମିଳାଇ ଏବଂ ସମସ୍ତ ଶୁପ୍ତ ଅସ୍ତିତ୍ୱକୁ ଜୀବନ୍ତ କରିଦିଅନ୍ତି। ବଞ୍ଚିବାର ସାର୍ଥକତା ପୂର୍ଣ୍ଣମୀର ଚନ୍ଦ୍ରାଲୋକ, ଚର୍ମରେ ମଳୟର ସ୍ପର୍ଶ ବା ନାସାରେ ଚନ୍ଦନର ସୁବାସ ଆଘ୍ରାଣପରି ପ୍ରାଣ କରିଥାଏ ଉପଲବ୍ଧି। ଇନ୍ଦ୍ରିୟଗତ କ୍ଷୁଧା, ତୃଷା, ଅଭାବ, ହତାଶା, ଅସହାୟତା ଓ ଲୋଭ ଆଦି ପ୍ରାଣର ପରିବେଶରୁ ହୋଇ ଯାଇଥାଏ ବିଦୂରିତ। ଚତୁର୍ଦ୍ଦିଗ ଅମୃତ, ସୁବାସ, ସୁଖ ଓ ସୌନ୍ଦର୍ଯ୍ୟରେ ହୋଇଥାଏ ଉଦ୍‌ଭାସିତ। ଯେଉଁଠି କିଛିକାଳ ବିତାଇବାକୁ ଭବିଷ୍ୟତର ଭାରତକୁ ଗର୍ଭରେ ଧାରଣ କରି ସ୍ୱୟଂ ସୀତା ସନ୍ନ୍ୟାସିନୀ ବେଶରେ ହୁଅନ୍ତି ଉପସ୍ଥିତା। ହିରଣ୍ୟକଶିପୁର ସନ୍ତାନ ସେହି ପରିବେଶର ଯାଦୁକାରୀ ସ୍ପର୍ଶରେ ହୋଇଯା'ନ୍ତି ବିଷ୍ଣୁଭକ୍ତ।

ବିଦ୍ୟା ସେଇ, ଯିଏ ମୁକ୍ତି ଦିଏ। ବିଦ୍ୟା ସେଇ, ଯିଏ ତୃପ୍ତି ଦିଏ। ବିଦ୍ୟା ସେଇ, ଯିଏ ଦୀପ୍ତି ଦିଏ। ବିଦ୍ୟା ସେଇ ଯିଏ ଜ୍ୟୋତି ହୋଇ ହୃଦ୍‌ଗୁହାରେ ଜଳୁଥାଏ। ବିଦ୍ୟାସେଇ ଯାହାର ବିଲୟରେ ମୃତ୍ୟୁ ଘଟିଥାଏ। ପ୍ରାଚୀନ ଭାରତୀୟ ସମସ୍ତ ଲେଖକ ଥିଲେ ବିଦ୍ୟାର ସାଧକ। ଏପରି କି ରବୀନ୍ଦ୍ରନାଥ, ଶ୍ରୀଅରବିନ୍ଦଙ୍କ ପର୍ଯ୍ୟନ୍ତ ! ଅବିଦ୍ୟାର ସାଧକ ବି ଆର୍ଯ୍ୟାବର୍ତ୍ତରେ ଜନ୍ମିଥିଲେ ଅନେକ। କାମନା ଓ ବାସନାର ମାର୍ଗ ଦେଇ ପରମ ଲକ୍ଷ୍ୟଠି ହୋଇଥିଲେ ଉପସ୍ଥିତ।

କିନ୍ତୁ ବ୍ରହ୍ମା ତାଙ୍କର ଜ୍ୟେଷ୍ଠପୁତ୍ର ଅଥର୍ବାକୁ କହିଥିଲେ- 'ସ ବ୍ରହ୍ମବିଦ୍ୟାଂ ସର୍ବବିଦ୍ୟା ପ୍ରତିଷ୍ଠାମ୍...। ପୁନଶ୍ଚ କୁହାଯାଇଛି, 'ଯସ୍ମିନ୍ ବିଜ୍ଞାତେ ସର୍ବବିଜ୍ଞାତଂ ଭବତି'। ଯେଉଁ

ବିଦ୍ୟାକୁ ଜାଣିଲେ ସମସ୍ତ ବିଦ୍ୟାକୁ ଜାଣିହୁଏ ଏବଂ ଅବଶିଷ୍ଟ କିଛି ଜାଣିବାକୁ ନ ଥାଏ।। ସମସ୍ତ ପୁଣ୍ୟ ଓ ଶ୍ରେୟର ସାଧନା ତାହା ବହୁ ଜନ୍ମର ପୁଣ୍ୟ ଫଳରେ ସେପରି ବିଦ୍ୟାବନ୍ତ ମହାତ୍ମା ଜଣେ ଜଣେ ଜନ୍ମ ନେଇଥାନ୍ତି। ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ମାଂ ପ୍ରପଦ୍ୟତେ। ସେହି ମହାତ୍ମା ସର୍ବଘଟରେ ବାସୁଦେବଙ୍କୁ ଉପଲବ୍ଧି କରିଥାନ୍ତି। ସମସ୍ତେ ଜାଣନ୍ତି କବିତା କବିଙ୍କ ହୃଦୟ ଭିତରେ ସବୁବେଳେ ଛପି ରହିଛନ୍ତି। କିନ୍ତୁ କାଳ ଅଶ୍ୱ ନିର୍ଦ୍ଦିଷ୍ଟ ଦ୍ରାଘିମା ଉପରେ ଉପସ୍ଥିତ ହେଲେ ତାହା ସପ୍ତରଶ୍ମିପରି ନିର୍ଝରି ଆସନ୍ତି। ସେହି ସପ୍ତରଶ୍ମି ବିକିରଣ ମୁହୂର୍ତ୍ତର ନାମ ଜୀବନ! ତାହାକୁ କେବଳ ସଫଳ କବିମାନେ ହିଁ ଉପଲବ୍ଧି କରିଥାନ୍ତି।

କବିତା କେଉଁଠି ଥାଏ? ପବନ କେଉଁଠିଥାଏ? ଗୋଟିଏ ଆଠବର୍ଷର ଝିଅକୁ ଧର୍ଷଣ କଲାବେଳେ ଔପନ୍ୟାସିକ ଡଷ୍ଟୟଭସ୍କିଙ୍କ ପାଖରେ ଈଶ୍ୱର ନଥିଲେ? ତେବେ 'କ୍ରାଇମ୍ ଏଣ୍ଡ୍ ପନିଶମେଣ୍ଟ' ଲେଖିଲା ବେଳେ ଯୌନକର୍ମୀ ସୋନିଆ ଠାରେ କମ୍ରେଡ୍ ରାସ୍କୋଲନିକୋଭ କ'ଣ ଦେଖି ତାକୁ ସାଲ୍ୟୁଟ ମାରେ? ତାର ଯାତନା! ଯାତନା ନିଜେ ଏଠି ଈଶ୍ୱର! ସେଥିପାଇଁ ସିଏ ତାକୁ କହିଚି, 'ସୋନିଆ, ମତେ ଦେଖେଇ ଦେ', କେଉଁଠି ଅଛି ସେ ପୁନର୍ଜୀବିତ ଲାଜାରସ୍ କାହାଣୀ। ମତେ ଟିକିଏ ପଢ଼ି ଶୁଣାଇ ଦେ'।

ଶ୍ରୀମଦ୍ ଗୀତା କହୁଛନ୍ତି, 'ଈଶ୍ୱରଃ ସର୍ବଭୂତାନାଂ ହୃଦେଶେଽର୍ଜୁନ ତିଷ୍ଠତି'। କେତେବେଳେ ଯେ ସିଏ ନାହାନ୍ତି? ଯେତେବେଳେ ସିଏ ନାହାନ୍ତି ଦେହ ଶବ। ଶବ ଗନ୍ଧାଇବ। ଶବ ଅଶୁଭ। ଶବ ପଡିରହିଲେ ପଡିଶା ଲୋକେ ଅନ୍ନଜଳ ଗ୍ରହଣ କରିବା ଅବିଧେୟ। ଜୀବ ଶିବ। ଜୀବନ୍ତ ମଣିଷ-ନରନାରାୟଣ! ନଭ, ଜଳ, ସ୍ଥଳ ସର୍ବତ୍ର ଶ୍ରୀହରିଙ୍କ ବାସ। ଶ୍ରୀହରିଙ୍କ ବାସହେତୁ ତହିଁରେ ହୀରକର ଦିବ୍ୟଦ୍ୟୁତି ହୋଇଥାଏ ପ୍ରକାଶ। ଅଙ୍ଗାରରେ ବି ସୌନ୍ଦର୍ଯ୍ୟର ଉପଲବ୍ଧି କରିଥାଏ ଚେତନା। କ୍ଷମା, ପ୍ରେମ, ଉଦାରତା, ପରଦୁଃଖ ଦେଖି ଦୁଃଖି ହେବା ବେଦନା ଜୀବନକୁ କରିଥାଏ ଆହୁରି ଜୀବନ୍ତ। ଦୟା ଦାନ, କରୁଣା ଓ ମହିମାଙ୍କ ଗୁଣଗାନ ଜୀବନକୁ କରିଥାଏ ଧନ୍ୟ। ଏହା ଦ୍ୱାରା ଅନ୍ତଃକରଣ ହୋଇଥାଏ ପ୍ରସନ୍ନ। ଆନନ୍ଦ, ଶାନ୍ତି ଓ ସୁଖ ଅନ୍ତଃକରଣ ଚିରି ଶ୍ରଦ୍ଧାବାନ ପୁରୁଷଟିକୁ କରିଥାଏ ତୃପ୍ତ।

ନିରବ ମନ ଭିତରେ, ନିଥର ସବୁଜପତ୍ରର କମ୍ପନରେ, ଥାଏ କବିତା ଓ ପବନ। 'ଜ୍ଞାନଂ ଲବ୍ଧା ପରାଂ ଶାନ୍ତି ଅଚିରେଣା ଅଧିଗଚ୍ଛତି'। ଜ୍ଞାନ ଲାଭ ହେଲେ ଶାନ୍ତି ହୃଦୟରେ

ପ୍ରତିଷ୍ଠିତ ହୁଏ। 'ବାସୁଦେବଃ ସର୍ବମିତି... ସା ବିଦ୍ୟା ଯା ବିମୁକ୍ତୟେ'। ମଣିଷ ଚିରନ୍ତନ ଦୁଃଖି। ତା' ଦୁଃଖର କାହାଣୀ ସମସ୍ତେ ଲେଖି ଚାଲିଛନ୍ତି। ସୁଖର କାହାଣୀ କ୍ୱଚିତ୍। ଜୀବନ ତ ଇମିତି ଅମେଳ ଏକ ଅନନ୍ୟ ଓ ଅନନ୍ୟୋପାୟ ଗତି। ଏହି ଗତିକୁ ସାହିତ୍ୟ ମାପି ନାହିଁ, ଯୁଗେ ଯୁଗେ କେବଳ ବିଚାର କରିଆସିଛି। ଭର୍ତ୍ତୃହରି ଲେଖିଛନ୍ତି, 'ଭୋଗା ନ ଭୁକ୍ତା ବାୟମେବ ଭୁକ୍ତାଃ, ତପୋ ନ ତପ୍ତଂ ବୟମେବ ତପ୍ତାଃ। କାଳୋ ନ ଯାତୋ ବୟମେବ ଯାତଃ, ତୃଷ୍ଣା ନ ଜୀର୍ଣ୍ଣା ବୟମେବ ଜୀର୍ଣ୍ଣା'। ଅର୍ଥାତ୍ ତୃଷ୍ଣା ତ ବୃଦ୍ଧା ହେଉନାହିଁ, ଆମେ ବୃଦ୍ଧ ହୋଇଯାଉଛୁ। ଭୋଗ ନଷ୍ଟ ହେଉ ନାହିଁ, ଆମ ଆୟୁଷ ନଷ୍ଟ ହୋଇଯାଉଛି। କର୍ମ ଏପରି କରିବା ଯେପରି ତାହାର ସମାପ୍ତି ଆସିବ, ବିଚାର ଏପରି କରିବା ଯେପରି ବିଚାରର ଅନ୍ତ ଘଟିବ।



# ସାହିତ୍ୟ

'ସହିତୌ' ଭାମହଙ୍କ ଏକ ଗୁଣବାଚକ ବିଶେଷଣ ପଦ, ଯେଉଁଥିରୁ ସାହିତ୍ୟ ଶବ୍ଦ ବ୍ୟୁତ୍ପନ୍ନ। 'ଶବ୍ଦାର୍ଥୌ ସହିତୌ କାବ୍ୟମ୍'। କାଳିଦାସଙ୍କ ଭାଷାରେ ସାହିତ୍ୟ 'ବାଗାର୍ଥ ବିବ ସଂପୃକ୍ତୌ ବାଗାର୍ଥ ବିବ ପ୍ରତିପତୟେ'। ଅର୍ଥାତ୍ ଶବ୍ଦ ରମଣୀୟ ଅର୍ଥ ପ୍ରତିପାଦନ ସହିତ ରସାତ୍ମକ ବାକ୍ୟ ଅଟେ ସାହିତ୍ୟ। ସାହିତ୍ୟ ଶବ୍ଦର ଉଲ୍ଲେଖ ଭାରତୀୟ ଭାଷା ସାହିତ୍ୟରେ ସର୍ବପ୍ରଥମ ରାଜଶେଖରଙ୍କ 'କାବ୍ୟ ମୀମାଂସା'ରୁ ଜଣାଯାଏ। ଏଥିରେ ଏହାର ଅର୍ଥ କାବ୍ୟ ଓ ସାହିତ୍ୟଶାସ୍ତ୍ର ଭାବେ ପ୍ରତିପାଦିତ। ରୁୟକ ଓ ମଙ୍କଙ୍କ ଦ୍ୱାରା ତତ୍ପରେ ରଚିତ ହେଲା 'ସାହିତ୍ୟ ମୀମାଂସା'। ସାହିତ୍ୟ ନାମ ଧାରକ ସାହିତ୍ୟ ଶାସ୍ତ୍ର ସଂପର୍କୀୟ ପ୍ରଥମ ଗ୍ରନ୍ଥ। ଏହା ପରେ ସାହିତ୍ୟ ଶବ୍ଦର ବ୍ୟବହାର ଘଟିଛି ପ୍ରଚୁର ଏବଂ ଦିନେ ସାହିତ୍ୟର ଶ୍ରେଷ୍ଠ ଗ୍ରନ୍ଥ 'ସାହିତ୍ୟ ଦର୍ପଣ' ବିଶ୍ୱନାଥ କବିରାଜଙ୍କ ଦ୍ୱାରା ହୋଇଛି ସର୍ଜନ।

ସାହିତ୍ୟ ସହିତ ବ୍ୟାକରଣ ଚିନ୍ତାର ଯୋଗ ରାଜଶେଖରଙ୍କ ଠାରୁ ରହିଆସିଛି ଭୋଜଙ୍କ ପର୍ଯ୍ୟନ୍ତ। କୁନ୍ତକ ସେହି ସମୟରେ ବୟାକରଣ ଅନୁସଙ୍ଗରୁ ସାହିତ୍ୟକୁ ମୁକ୍ତ କରି ଶବ୍ଦ ଓ ଅର୍ଥ ମଧ୍ୟରେ ଥିବା ସଂପର୍କର ଏକ ଶ୍ରେଷ୍ଠଗୁଣ ବୋଲି କଲେ ପ୍ରତିପାଦନ। ତେବେ 'ଶବ୍ଦାର୍ଥୌ ସହିତୌ' ସାହିତ୍ୟ, ଏହା ନିଶ୍ଚିତ। ଶବ୍ଦ ବସାଣର କାରିଗରୀ ଓ ଭାବ ସୃଷ୍ଟିର ଅନୁପମ କଳା ସାହିତ୍ୟ। ସାହିତ୍ୟ ଯୁଗାଶ୍ରୟୀ ବା ଯୁଗଧର୍ମୀ। ସମୟାନୁଯାୟୀ ସୃଷ୍ଟି ହୁଏ ସାହିତ୍ୟ। ସାହିତ୍ୟ ବଦଳେ ସମୟ ବଦଳିବା ସହିତ। ସବୁ ସର୍ଜନ କଳାର ମୂଳ ଉଦ୍ଦେଶ୍ୟ ଆତ୍ମପ୍ରକାଶ। ଆତ୍ମପ୍ରକାଶ ହିଁ ସମସ୍ତ କଳାର ମୂଳକେନ୍ଦ୍ର। ଲେଖକ ସାହିତ୍ୟ ଲେଖେ କାହିଁକି ? ନିଜ ସୃଷ୍ଟି ଜରିଆରେ ନିଜକୁ ଆବିଷ୍କାର କରିବା ପାଇଁ ଜଣେ ଲେଖେ। ମୁଁ କିଏ ? ଏହି ଅନ୍ୱେଷା ସାହିତ୍ୟ ସୃଷ୍ଟି ତୃଷ୍ଣାର ମୂଳ ପାବଚ୍ଛ। ସତ୍ୟଟିକୁ ଆବିଷ୍କାର କରିବାର ତୃଷ୍ଣା ସାହିତ୍ୟ। ସାହିତ୍ୟ କ'ଣ ? ଏହି ପ୍ରଶ୍ନର ଉତ୍ତରରେ କହନ୍ତି, ସାହିତ୍ୟିକ ଚିତ୍ତରଂଜନ ଦାସ, 'ସାହିତ୍ୟ ଏକ ଆଗ୍ରହ। ସାହିତ୍ୟ ଏକ ଆକାଂକ୍ଷା। ସାହିତ୍ୟ ଏକ ସ୍ୱପ୍ନ। ଭବିଷ୍ୟତ ବିଷୟରେ ଏକ ସ୍ୱପ୍ନ। ଆମ ସମସ୍ତଙ୍କୁ ନେଇ ଏକ ସୁନ୍ଦର ଭବିଷ୍ୟତର ସ୍ୱପ୍ନ' ସାହିତ୍ୟ।

ପୁଣି ସେ କହନ୍ତି, 'ସାହିତ୍ୟ କହିଲେ ସବା ଆଗ ଏକ ସଖ୍ୟକୁ ବୁଝାଏ। ଆପଣା ସହିତ ସ୍ଥାପିତ ହୋଇଥିବା ଏକ ସଖ୍ୟକୁ ବୁଝାଏ। ବିଶ୍ୱ ଭୁବନ ସହିତ ସ୍ଥାପିତ ହୋଇଥିବା ଏକ ସଖ୍ୟକୁ ବୁଝାଏ। ସତ୍ୟର ଭୂମି ଉପରେ ଦେଖିଲେ ସବୁକିଛି ସୁନ୍ଦର ଦେଖାଯାଏ; ଦୂରଗୁଡାକ ନିକଟ ହୋଇ ଆସନ୍ତି; ଦୁଃଖଗୁଡାକ ବି ଅଶ୍ରୁରେ ଧୋଇ ହୋଇ ଯାଇ ଭାରି ସୁନ୍ଦର ଦିଶନ୍ତି। ଭିତରେ ଥିବା ସଖ୍ୟଟି ଯେତେବେଳେ ସାରା ସଂସାରକୁ ସଂଖୋଳିବ ବୋଲି ସାହସ କରି ବାହାରେ, ସେତେବେଳେ ଆମେ ଅଙ୍ଗେ ନିଭାଉଥିବା କାଳଟା ମଧ୍ୟ ସତ ଥିବା ଏକ ପ୍ରତିଶ୍ରୁତିରେ ପରିଣତ ହୋଇଥାଏ। ସାହିତ୍ୟ ଆପଣାକୁ ସେହି ପ୍ରତିଶ୍ରୁତି ପାଖରେ ଉତ୍ସର୍ଗ କରି ଧନ୍ୟ ହୁଏ, ପୂର୍ଣ୍ଣ ହୁଏ'।

'ସାହିତ୍ୟ ଏକ ବେଦନା। ଆପଣାକୁ ଅଧିକରୁ ଅଧିକ ଦେବାକୁ ଇଚ୍ଛା କରୁଥିଲେ ଭିତରେ ଯେଉଁ ଅସନ୍ତୋଷଟା ଆମକୁ ନିତ୍ୟସଚଳ କରିରଖିଥାଏ, ସେହି ଅସନ୍ତୋଷ ଜନିତ ବେଦନା। ଅଭିବ୍ୟକ୍ତ କରିବା ହିଁ ଯେଉଁଠି ଜୀବନର ଧର୍ମ ରୂପେ ସ୍ୱୀକୃତ ହୋଇଥାଏ, ସେଇଠି ବେଦନା ହେଉଛି ଆମ କାହାଣୀର ଏକ ଅଙ୍ଗ ସ୍ୱରୂପ। ଅନେକ କୁହାକୁହି, ତଥାପି ଆହୁରି ଅନେକ ବାକି ରହିଥାଏ। ନିଜକୁ ନେଇ ବି ହୃଦୟଭିତରେ ସଂପୂର୍ଣ୍ଣ ରୂପଟିଏ ଗଢ଼ିହୁଏ ନାହିଁ। ତାହା ହିଁ ବେଦନା ଦିଏ। ସେଇ ବେଦନା ଆଗକୁ ଆଗକୁ ନେଇଯାଉଥାଏ। ବୃତ୍ତଗୁଡାକ ସ୍ୱତଃ ବଢ଼ିବାରେ ଲାଗିଥାଏ। ସଂସାର ତୀର୍ଥପରି ଲାଗେ। ଅସନ୍ତୋଷଗୁଡାକ ଈଶ୍ୱରୀୟ ଅସନ୍ତୋଷରେ ପରିଣତ ହୁଏ। ଆହ୍ୱାନଗୁଡାକରେ ଡେଣା ଲାଗେ। ପୁରୁଣା ସତ୍ୟଗୁଡାକ ନୂତନ ପଥରେ ପରିଣତ ହୋଇଯାଆନ୍ତି। ତେଣୁ ଅନ୍ତଃପ୍ରବେଶ ଲାଗିରହିଥାଏ'।

ସାହିତ୍ୟ ଜାତି, ସମାଜ ଓ ସଂସ୍କୃତି ସହିତ ସଂପୃକ୍ତ। ସାହିତ୍ୟର ମୂଳ ଉପାଦାନ ଭାଷାହିଁ ଜାତି ଓ ସଂସ୍କୃତି ସଂଗଠନର ଏକ ମୌଳିକ ସୂତ୍ର। ଜାତିର ସାଂସ୍କୃତିକ କ୍ରିୟାକଳାପ ମଧ୍ୟରେ ଏକ ବିଶିଷ୍ଟ କର୍ମ ହେଉଛି ଭାଷାର ବ୍ୟବହାର। ସାହିତ୍ୟ ସୃଷ୍ଟି ଏହି ବ୍ୟବହାରର ଅନ୍ୟତମ ପ୍ରକୃଷ୍ଟ ପର୍ଯ୍ୟାୟ' ବୋଲି ଭାବନ୍ତି ସାହିତ୍ୟ ଓ ସଂସ୍କୃତିବିଦ୍ ଡକ୍ଟର ଖଗେଶ୍ୱର ମହାପାତ୍ର।

'ଫରାସୀ ସମାଜ ବିଜ୍ଞାନୀ ସମୀକ୍ଷକ Taine ସାହିତ୍ୟ ସୃଷ୍ଟିର ଏକ ସୂତ୍ର ଦିଅନ୍ତି ଯେ, ସାହିତ୍ୟର ମୂଳତତ୍ତ୍ୱ 'The race, the miliem, the moment' ଅର୍ଥାତ୍ ସାହିତ୍ୟ ହେଉଛି ଦେଶକାଳ - ପାତ୍ର ସନ୍ନିହିତ ସୃଷ୍ଟି। ଗୋଟିଏ ଯୁଗର ସାହିତ୍ୟ ସେ ଯୁଗର ସାଂସ୍କୃତିକ ଇତିହାସର ଉପାଦାନରେ ହୋଇଥାଏ ପରିପୂର୍ଣ୍ଣ। ଏଣୁ Renam କହନ୍ତି ଯେ

'A writer belongs to his race and time even if he reacts against them' । ସାହିତ୍ୟକାର 'କ୍ରାନ୍ତିଦର୍ଶୀନଃ' କିଂବା 'ଅପାରେ କାବ୍ୟ ସଂସାରେ ପ୍ରଜାପତିଃ' ସଦୃଶ ମାତ୍ର ତାଙ୍କ ଭିତ୍ତି ହୋଇଥାଏ ସଂସ୍କୃତିର ଭୂତଳ ।'

ବରିଷ୍ଠ ସାହିତ୍ୟିକ ନିତ୍ୟାନଂଦ ମହାପାତ୍ର କହନ୍ତି, ଯେଉଁ ବିଳାସ ମନୁଷ୍ୟକୁ ଆତ୍ମରତିର ଆନଂଦ ଦେଇ ଅଧିମାନବତ୍ୱ (superman)ର ସ୍ତରକୁ ଉନ୍ନୀତ କରେ ତାହା ହିଁ କଳା । କଳାର ବିଭିନ୍ନ ଭାଷା ମଧ୍ୟରୁ ସାହିତ୍ୟ ଗୋଟିଏ ।

ମନୁଷ୍ୟର ଉର୍ଦ୍ଧ୍ୱଗ ହେବାର ଦୁଇଟି ଧାରା - ସାହିତ୍ୟ ଓ ସାଧନା । ସାଧନା ବଳରେ ମାନବିକ ବ୍ୟକ୍ତି ଦେବତ୍ୱ ଲାଭ କରେ । କିନ୍ତୁ ସାହିତ୍ୟ ସମଷ୍ଟିଗତ ଭାବରେ ମନୁଷ୍ୟ ମଧ୍ୟରେ ଦେବତ୍ୱର ଆବାହନ କରିଥାଏ । ସାଧନାର ରସୋତୀର୍ଣ୍ଣ ଧାରା ହିଁ ସାହିତ୍ୟ । ସାହିତ୍ୟ କେବଳ ହୃଦୟର ଗୋଟିଏ ଉଚ୍ଛ୍ୱାସ ନୁହେଁ - ଏହା ବିଚାର ବୁଦ୍ଧି ଓ ହୃଦୟର ପରିପକ୍ୱ ରୂପ । ଏଥିରେ ପ୍ରଜ୍ଞା, ଚିନ୍ତନ ସହ ହୃଦୟ ମଧ୍ୟ ସନ୍ନିହିତ' ।

ସାହିତ୍ୟ ଓ କଳାବିଦ୍ ଅଧାପକ ତାରିଣୀ ଚରଣ ଦାସଙ୍କ ବକ୍ତବ୍ୟ ହେଲା - 'ଭାଷା ହିଁ ସାହିତ୍ୟ ଅଭିବ୍ୟକ୍ତିର ମାଧ୍ୟମ । ସାହିତ୍ୟ ସଦୃଶ ଲଳିତ କଳାର ଅଭିବ୍ୟକ୍ତିର ଆଧାର ହେଉଛି ବାଣୀ । ବସ୍ତୁତଃ ସାହିତ୍ୟ ଶ୍ରଦ୍ଧାଶ୍ରୟୀ । ସାହିତ୍ୟର ଆନ୍ତରିକ ଉପାଦାନ, ଭାବ, ବା ଭାବନା ଏବଂ 'ଭାବ' ଯେକୌଣସି ମନୋସ୍ଥିତି 'ରସ' ବା ସମ୍ବେଗ ବିଶେଷ୍ୟର ପରିପକ୍ୱ ଚରମ ପରିଣତି' । ସେ କହନ୍ତି, ସତ୍ୟର ଆବେଗାତ୍ମକ ପ୍ରକାଶ ଅଥବା ଅନୁଭୂତିର ତୀବ୍ରତା ଜନିତ ସ୍ୱଚ୍ଛନ୍ଦ ପ୍ରକାଶ ଶ୍ରଦ୍ଧାଶ୍ରୟୀ ହେଲେ ପ୍ରକୃତ ସାହିତ୍ୟର ଜନ୍ମ ହୁଏ ।

ସାହିତ୍ୟ ଭିତରେ ସତ୍ୟାନୁଭୂତି, ସୌନ୍ଦର୍ଯ୍ୟାନୁଭୂତି ଅଥବା ଯେକୌଣସି ଅନୁଭୂତ୍ୟାତ୍ମକ ସତ୍ୟର ପୂର୍ଣ୍ଣ ବ୍ୟାଖ୍ୟା ଦେଖାଯାଏ । ସାହିତ୍ୟର ଗତି ସର୍ବଦା ପୂର୍ଣ୍ଣତା ଆଡକୁ । ତେଣୁ ଆଂଶୀକତାକୁ ସାହିତ୍ୟରୂପୀ କଳାର ଅମରତ୍ୱ ପ୍ରଦାନ କରିବା ହେଉଛି ସାହିତ୍ୟର ଧର୍ମ । ସାହିତ୍ୟର ସତ୍ୟ, ଦର୍ଶନର ସତ୍ୟଭଳି ଅନୁମେୟ ବା ଚିନ୍ତ୍ୟ ନୁହେଁ । ଏହା ଉପଭୋଗ୍ୟ ଓ ଅନୁଭବ୍ୟ । ପୁନଶ୍ଚ ସାହିତ୍ୟ ଚେତନ ଓ ଅଚେତନର ମିଳନ; ଗୋଟିଏ ଖେଳ ।

ତାରିଣୀ ଚରଣ ଦାସ କହନ୍ତି, **'ଆଜି ସାହିତ୍ୟ ସଂପୂର୍ଣ୍ଣ ଜ୍ଞାନରାଶିର ଭଣ୍ଡାର'** । ସେ ସାହିତ୍ୟକୁ ତିନି ଭାଗରେ କରିଛନ୍ତି **ବିଭକ୍ତ** । **୧-ବୈଷୟିକ**, ୨- ବୈଚାରିକ ଓ ୩-

କଳାତ୍ମକ। ଏହି ତ୍ରୟପ୍ରକାର ସାଂସାରିକ ଯାବତୀୟ ଘଟଣା, ସ୍ଥିତି, ଲୟ-ପ୍ରଳୟର କାହାଣୀ, ଅନ୍ତର ନାମରେ ବାହାରର ଏବଂ ବାହାରର ନାମରେ ବାସ୍ତବିକ ସତ୍ୟ ଇତିହାସର ପ୍ରକାଶ।

ସାହିତ୍ୟ ହୃଦୟର ଏକ ଉଚ୍ଛ୍ୱାସ। ସାହିତ୍ୟ ମଣିଷର ବିଚାର ବୁଦ୍ଧି ଓ ହୃଦୟର ପରିପକ୍ୱ ରୂପର ପ୍ରକାଶ। ପ୍ରଜ୍ଞା ଓ ଚିନ୍ତନ ସହିତ ହୃଦୟ ମଧ୍ୟ ଏଥିରେ ସନ୍ନିହିତ। ହୃଦୟର ଅନ୍ତସ୍ଥଳକୁ ଯେଉଁ ରଚନା ଯେତେ ମାତ୍ରାରେ ସ୍ପର୍ଶ କରେ, ତାର ବିଚାରଧାରା ଯେତିକି ସୂକ୍ଷ୍ମ ଓ କୈନ୍ଦ୍ରିକ ତାହା ସେତିକି ମାତ୍ରାରେ ବ୍ୟାପକ, ବିରାଟ ଓ ଅମର ସାହିତ୍ୟ। ଯେଉଁ ସାହିତ୍ୟକୃତି ବିଶ୍ୱଜନସାଧାରଣଙ୍କ ଯେତିକି ନିକଟସ୍ଥ ଓ ହୃଦୟସ୍ପର୍ଶୀ, ତାହା ସେତିକି ମହାନ ବୋଲି ବିଚାରି ସାହିତ୍ୟ ଅମୃତ। ଏହା ମାନବକୁ ପ୍ରଦାନ କରେ ଦେବତ୍ୱ। ସାହିତ୍ୟ ମାନବ ଜୀବନର ଆଲୋଚନା। ସାହିତ୍ୟ ଜୀବନର ଅଭିବ୍ୟକ୍ତି। ସାହିତ୍ୟ ଜୀବନସମସ୍ୟାର ମୀମାଂସା। ଏଣୁ ସାହିତ୍ୟ ମାନବଜୀବନର ବ୍ୟାଖ୍ୟା। ପୁରୁଷ ନାରୀ ଭଳି ଗଦ୍ୟ ଓ ପଦ୍ୟ। ଚୁମ୍ବନପରି ସାହିତ୍ୟର ଅଭିବ୍ୟକ୍ତିରେ ଥାଏ ସ୍ୱାଦ। ସ୍ୱର୍ଗତ ଶଶିଭୂଷଣ ରାୟ 'ଓଡିଆ ସାହିତ୍ୟର ପ୍ରକୃତି' ଶୀର୍ଷକରେ ଆଲୋଚନା କରିଛନ୍ତି, ଜଣେ କାହିଁକି ଲେଖିବ ?

'ଅନ୍ୟକୁ ନିଜ ନିଜ ଅଭିପ୍ରାୟାଦି ଜ୍ଞାପନ କରିବା ସକାଶେ ହିଁ ଲୋକେ କଥା କହିଥାନ୍ତି। ସାଧାରଣତଃ ଏହି ହେତୁରୁ ମଧ୍ୟ ଲୋକେ ଲେଖିଥାନ୍ତି। ... ନିଜ ମନର ଆବେଗରେ ଲେଖିବା କିଂବା ନିଜର ତୃପ୍ତି ସାଧନ ସକାଶେ ଲେଖିବାର ଅଧିକାର ଲେଖକର ରହିଅଛି, ଏହା ସ୍ୱୀକାର କଲେ ଅତି ଜଘନ୍ୟ'। ପୁନଶ୍ଚ 'ଧାନ ଚାଉଳର ହିସାବ, ଝୋଟର ଅଥବା ଛଣପଟର ଭାଉ; ଜମିଦାରୀର ଜମା ଖରଚ, ମାଲେରିଆ ନିବାରଣର ଉପାୟ, ଛାରପୋକ ଅଥବା ମଶା ମାରିବାର କୌଶଳ ପ୍ରଭୃତି ସୁନ୍ଦର ଭାବରେ ଲିଖିତ ହେଲେ ହେଁ ତାହା କେବେ ହିଁ ସାହିତ୍ୟ ହେବନାହିଁ'।

ମନସ୍ତତ୍ତ୍ୱ କହେ, ମନୁଷ୍ୟ ସ୍ୱାର୍ଥପର। ଏଣୁ ସେ ନିଜର କଥା କହିବାକୁ ଉତ୍ସୁକ। ଅନ୍ୟ ପକ୍ଷରେ ମନୁଷ୍ୟ ପରାର୍ଥପର। ପରର କଥା ଶୁଣିବାକୁ ଆଗ୍ରହୀ। ପୁନଶ୍ଚ ମନୁଷ୍ୟ ଆତ୍ମପ୍ରକାଶ ନକରି ରହିପାରେ ନାହିଁ ଏବଂ ଆତ୍ମପ୍ରକାଶ କରିଥାଏ ବୋଲି ମନୁଷ୍ୟଟିଏ ସେ। ପୁଣି ଅନ୍ୟର କଥା ମଧ୍ୟରେ କରିଥାଏ ଆତ୍ମୋପଲବ୍ଧି। ପ୍ରାପ୍ତ ହୋଇଥାଏ ଆନନ୍ଦ। ତେଣୁ ସେ ଶୁଣେ, ସିଏ ପଢ଼େ। ସେହି ଆତ୍ମପ୍ରକାଶରେ ନିଜ ମନୋଭାବର ଉତ୍ତର ଦିଏ।

ସମସ୍ତ କଳାଭଳି ସାହିତ୍ୟ ମଧ୍ୟ ମନୁଷ୍ୟର ସୁପ୍ତ ଚେତନା ମଧ୍ୟରେ ନିହିତ ଥାଏ। ଆତ୍ମିକ ବିକାଶ ସଙ୍ଗେ ସଙ୍ଗେ ସାହିତ୍ୟର ମଧ୍ୟ କ୍ରମେ କ୍ରମେ ଉନ୍ନତି ହୋଇଥାଏ। ଅନ୍ତର୍ବୋଧ ବିକଶିତ ହୋଇ ହୋଇଥାଏ ଅଭିବ୍ୟକ୍ତ। ପୁନଶ୍ଚ ଯେଉଁ ବାକ୍ୟ ଶ୍ରବଣରେ  ବା ତାହା ପଠନରେ ରସାବିର୍ଭାବ ହୁଏ, ତାହାକୁ କୁହାଯାଏ ସାହିତ୍ୟ। ସାହିତ୍ୟ ଅନୁଶୀଳନରେ ଉଦାର ହୋଇଥାଏ ହୃଦୟ। ସାହିତ୍ୟହିଁ ବ୍ୟବହାର ଶିକ୍ଷାର ପ୍ରଧାନ ଅବଲମ୍ବନ। ମାନବ ଜୀବନର ଅପାର୍ଥିବ ଧନ। ଅସଭ୍ୟତା ମୂଳରେ କୁଠାରାଘାତ କରି ସାହିତ୍ୟହିଁ ମାନବୀୟ ସଭ୍ୟତା ବିସ୍ତାରର ପଥ କରିଥାଏ ପ୍ରଶସ୍ତ। ମାନବଜୀବନ ସହିତ ସାହିତ୍ୟର ସମ୍ବନ୍ଧ ଅବିଚ୍ଛେଦ୍ୟ ଏବଂ ଅନାଦି। ଶଶିଭୂଷଣ ରାୟ କହନ୍ତି, ସାହିତ୍ୟ ମନୁଷ୍ୟର ଜୀବନ ବିଶେଷ। ଯେଉଁ ହୃଦୟରେ ସାହିତ୍ୟର କମନୀୟ କୁସୁମ ବିକଶିତ ହୁଏନାହିଁ, ସେ ହୃଦୟ ନୁହେଁ ମନୁଷ୍ୟର। ପଶୁର କିଂବା ପାଷାଣର।



,

# ଗଳ୍ପ ସାହିତ୍ୟରେ ଭୂମି ଓ ଦେବାଶିଷ ପାଣିଗ୍ରାହୀଙ୍କ 'ଅତୀନ୍ଦ୍ରିୟ'ର ବ୍ୟାପ୍ତି

*'... the aim of short story is to instruct or to delight or both'.*

- R.A.Scott-James

ପ୍ରାଚୀନ ସାହିତ୍ୟଶାସ୍ତ୍ରୀ ନିର୍ଦ୍ଧାରଣ କରିଛନ୍ତି, 'କଥୟାଂ ସରସଂବସ୍ତୁ ଗଦ୍ୟୈରେବ ବିନିର୍ମିତଃ' । କେଉଁ ଆଦିମ କାଳରୁ କୁହାଯାଇ ଆସିଛି ଗପ ଗଦ୍ୟରେ ହେବ ଏବଂ ତାହା ସୁଖ ଲାଗିବ । ଗଳ୍ପ ଭଲ ଲାଗିବ, 'ସରସଂ ବସ୍ତୁଃ' । ଏହି ତତ୍ତ୍ୱଟି ପୁରୁଣା ହୋଇ ଗଲାଣି । ମୁହୂର୍ତ୍ତକର ଚକିତ ଉଦ୍‌ଭାସ ହିଁ ଗଳ୍ପ; ଏହି ତତ୍ତ୍ୱ ଉପରେ ଗତ ଶତକର ପ୍ରଥମାର୍ଦ୍ଧର ଗଳ୍ପ ହୋଇଥିଲା ନିର୍ମିତ । ଶତକର ଦ୍ୱିତୀୟ ଅର୍ଦ୍ଧେକ ବେଳକୁ ଗଳ୍ପ ସୃଷ୍ଟିର ଆଭିମୁଖ୍ୟ ହୋଇଯାଇଛି ପରିବର୍ତ୍ତିତ ।

ଜଣେ ଗଳ୍ପ ଲେଖେ, କାରଣ 'his desire for self expression'! ଆମେ ଗଳ୍ପ ଲେଖୁ, କାରଣ - Our interest in people and their doings' । ତୃତୀୟ କାରଣଟି ହେଲା – 'Our interest in the world of reality in which we live and in the world of imagination which we conjure in to existence' ଏବଂ ଚତୁର୍ଥ କାରଣ ହେଲା – 'Our love of form as form' ଏହି ସବୁ କାରଣଗୁଡ଼ିକୁ ସାମ୍ନାରେ ରଖି ଲେଖାଯାଏ ଗଳ୍ପ । ସୃଷ୍ଟି ହୁଏ ସାହିତ୍ୟ ।

ଜୀବନର ବିବିଧତା ଓ ଜଟିଳତାକୁ ଉପସ୍ଥାପିତ କରେ ଯେଉଁ ସୁଠାମ ନବୀନ ଶଇଶିଳ୍ପ, ତାହାର ନାମ କ୍ଷୁଦ୍ରଗଳ୍ପ । ଏହାକୁ ଭବିଷ୍ୟତ କାଳ ଗଦ୍ୟର ଆଙ୍ଗିକ ବୋଲି ବିଂଶ ଶତକ ମଧ୍ୟ ଭାଗରେ କହୁଥିଲେ ସମାଲୋଚକ । ଏଡ୍‌ଗାର ଆଲାନ୍ ପୋ କ୍ଷୁଦ୍ରଗଳ୍ପର ଇସ୍ତାହାରରେ ଦର୍ଶାଇଛନ୍ତି କ୍ଷୁଦ୍ରଗଳ୍ପ କ୍ଷୁଦ୍ରହେବ, ହେବ ସୁଖପାଠ୍ୟ । ଗୋଟିଏ ନିଃଶ୍ୱାସରେ ଗଳ୍ପଟିକୁ ପଢ଼ିସାରି ହେଉଥିବ ।

ସମସାମୟିକ କ୍ଷୁଦ୍ରଗଳ୍ପ ଆଉ 'କମିଂ ଫର୍ମ ଅଫ୍ ଫିକ୍ସନ୍' ହୋଇନାହିଁ । ଏହା 'କମନ୍ ଫର୍ମ ଅଫ୍ ଫିକ୍ସନ୍'ରେ ହୋଇଯାଇଛି ପରିବର୍ତ୍ତିତ । ଗୋଟିଏ ଗଳ୍ପ କାହାଣୀ ଉପରେ ଆଧାରିତ ହେଲେ ମଧ୍ୟ ଏହାର ସଫଳତା ନିର୍ଭର କରେ ଗାଳ୍ପିକଙ୍କ କହିବା

ନୈପୁଣ୍ୟ ଉପରେ। ଗଳ୍ପର ବିଷୟ ସାଧାରଣ ଜନଜୀବନର ବୃହତ୍ ପରିବେଶ ମଧ୍ୟରୁ ସଂଗୃହୀତ ସୀମିତ ଛବିଟିଏ ହେବ ମାତ୍ର ! ତାହାର ରହିଥିବ ନିର୍ଦ୍ଦିଷ୍ଟ ପ୍ରଭାବ। ଗୋଟିଏ ଲକ୍ଷ୍ୟ, ଗୋଟିଏ ପଦ୍ଧତି, ଗୋଟିଏ ଧାରଣା ବା ଗୋଟିଏ ଦୃଷ୍ଟି ତିଆରି କରିଥାଏ ଗଳ୍ପର ଚିତ୍ରଟି ! ସେ ଚିତ୍ରର ସୁଷମା ହେବ ବୈଚିତ୍ର୍ୟ ଓ ନାନ୍ଦନିକ ତୃପ୍ତିପୂର୍ଣ୍ଣ। ଗୋଟିଏ ନିର୍ଦ୍ଦିଷ୍ଟ ଭାବବତାପୂର୍ଣ୍ଣ ସନ୍ତୋଷ ପାଠକକୁ ସମର୍ପି ପାରୁଥିବ ଓ ପାଠକକୁ ଉପଲବ୍ଧ କରାଇ ଦେଉଥିବ ଅବ୍ୟକ୍ତ ଜୀବନର ଯନ୍ତ୍ରଣାକୁ ! ସାହିତ୍ୟ କୁହାଯାଏ ସେହି ଶବ୍ଦଶିଳ୍ପକୁ; ଯେଉଁ ଶବ୍ଦ ବସାଣକୁ ପଢ଼ି ପାଠକ ଉପଭୋଗ କରୁଥିବେ ନିଜ ନିଜ ଅନୁଭବକୁ : Literature is a vital record of what men have seen in life, what they have experienced of it, what they have tought and felt about those aspects of it'(W.H. Hudson)

କ୍ଷୁଦ୍ରଗଳ୍ପ ଶବ୍ଦରେ ତିଆରି କଥାଶିଳ୍ପ। ଏହା ସାମାଜିକ ଓ ଅସାମାଜିକ ମଣିଷମାନଙ୍କ ଅନ୍ତଃ ଓ ବାହ୍ୟ ଜୀବନର ପ୍ରତିବିମ୍ବ। ଆବେଗ, ଅନୁଭବ ଓ କର୍ମମୟର ଶବ୍ଦବିମ୍ବ ! ଯାହା ସର୍ଜିଛନ୍ତି ଗାଳ୍ପିକ ଦେବାଶିଷ ! କ୍ଷୁଦ୍ରଗଳ୍ପ ସମୟର ଦର୍ପଣରେ ପ୍ରତିଫଳିତ ଜଣେ ଶବ୍ଦଶିଳ୍ପୀଙ୍କ ସୃଷ୍ଟିର ବିମ୍ବ ! ନାଟ୍ୟକାର ଡବ୍ଲ୍ୟୁ.ବି. ଇଏଟସ୍ ନିର୍ଣ୍ଣୟ କରିଥିଲେ ନାଟକ ଆମ ଯୁଗର ଦର୍ପଣ। ତହିଁରେ ପ୍ରତିଫଳିତ ହୋଇଥାଏ ସମାଜର ମୁହଁ। ଠିକ୍ ସେହିପରି ସମାଜର ମୁହଁ ସହିତ ନିଜ ଅନ୍ତର୍ଚେତନାର ମୁହଁ ମଧ୍ୟ ପ୍ରତିଫଳିତ ହୋଇଥାଏ କ୍ଷୁଦ୍ରଗଳ୍ପ ଆଙ୍ଗିକରେ। ଯାହା ଦେଖିବାକୁ ମିଳେ ଦେବାଶିଷ ପାଣିଗ୍ରାହୀଙ୍କ ଗଳ୍ପର ଦର୍ପଣରେ।

ମହର୍ଷି ବ୍ୟାସ ଲେଖିଛନ୍ତି, 'ଅତୀନ୍ଦ୍ରୀୟୋ ମହାମାୟୋ ମହୋତ୍ସାହୋ ମହାବଳଃ'; ଶ୍ରୀବିଷ୍ଣୁ ସହସ୍ରନାମ ! 'ଅତୀନ୍ଦ୍ରିୟ' ଅର୍ଥାତ୍ ଇନ୍ଦ୍ରିୟର ଉର୍ଦ୍ଧ୍ୱରେ ଯାହା ! ଯାହା ଇନ୍ଦ୍ରିୟ ଚେତନାର ଆରପଟ ! ଏମିତି ଗୋଟିଏ ଗଳ୍ପ ଗଳ୍ପଗ୍ରନ୍ଥ 'ଅତୀନ୍ଦ୍ରିୟ'ରେ ଦେବାଶିଷ ପାଣିଗ୍ରାହୀ କରିଛନ୍ତି ଉପସ୍ଥାପିତ।

ଆରମ୍ଭରୁ ସାମ୍ନାକୁ ଆସେ 'ଅତୀନ୍ଦ୍ରିୟ' ଏବଂ ଶେଷ ଗଳ୍ପର ଶୀର୍ଷକ 'କାହିଁମୁକ୍ତି' ! ମଝିରେ ଯେଉଁ ଗଳ୍ପମାନ, ରହିଲେ, ସେମାନେ ହେଲେ, ୧-ବନ୍ଦ ଝର୍କାର ଘର, ୨-ସୁର ମହ୍ଲାର, ୩-ପଙ୍ଗୁ, ୫-ପ୍ରବ୍ରଜ୍ୟା, ୬-ଅପମୃତ୍ୟୁ, ୭- ଶୁଭାକାଂକ୍ଷୀ, ୮- ନିର୍ବୋଧ ଏବଂ ୯-ସ୍ୱୀକାରୋକ୍ତି।

ଏହି ଗଳ୍ପଗୁଡିକ ଏକତ୍ର ସଂକଳିତ ହେବାପୂର୍ବରୁ ଓଡ଼ିଶାର ପ୍ରସିଦ୍ଧ ସାହିତ୍ୟ ପତ୍ରିକାମାନଙ୍କ ପୃଷ୍ଠା ମଣ୍ଡନ କରିଛନ୍ତି। ପାଠକୀୟ ଅମାପ ଶ୍ରଦ୍ଧା କରିଛନ୍ତି ହାସଲ।

ପ୍ରବୀଣ ଗଳ୍ପଶିଳ୍ପୀ ଶାନ୍ତନୁ ଆଚାର୍ଯ୍ୟ, ଦେବ୍ରାଜ ଲେଙ୍କା, ଆର୍ଯ୍ୟ ଯକ୍ଷଦତ୍ତ, ରାମଚନ୍ଦ୍ର ବେହେରା ଓ ସଦାନନ୍ଦ ତ୍ରିପାଠୀ ପ୍ରଭୃତି ଭୂୟସୀ ପ୍ରଶଂସାର ବାକ୍ୟମାଲ୍ୟରେ ଦେବାଶିଷଙ୍କ ଶିଳ୍ପୀ ପ୍ରତିଭାକୁ କରିଛନ୍ତି ସମ୍ବର୍ଦ୍ଧିତ। ପୁସ୍ତକ ପୃଷ୍ଠ ପ୍ରଚ୍ଛଦରେ ଏହାର ଏକ ସଂକ୍ଷିପ୍ତ ସଂକଳନ ବା ଦେବାଶିଷଙ୍କ ଗାଳ୍ପିକ ପ୍ରତିଭାର ରହିଛି ଆକଳନ। ପ୍ରଚ୍ଛଦ ଓଲଟାଇଲେ ଆଠଟି ଗଳ୍ପର ଶ୍ରେଷ୍ଠ ଧାଡିମାନଙ୍କ ମନୋଜ୍ଞ ଉପସ୍ଥାପନା ପାଠକଙ୍କୁ କରେ ଗଳ୍ପ ତୃଷିତ।

ଦେବାଶିଷ ଧୀର ଓ ଗମ୍ଭୀର ପ୍ରକୃତିର ଗାଳ୍ପିକ। କିନ୍ତୁ ତାଙ୍କ ଗଳ୍ପର ଆରମ୍ଭ ଆକସ୍ମିକ। ହଠାତ୍ ସିଏ ଉପସ୍ଥାପିତ କରି ଦିଅନ୍ତି ପ୍ରଥମ ବାକ୍ୟ ଏବଂ ତା' ପରେ ଧୀରେ ଧୀରେ ସମୁଦ୍ର ଜୁଆରପରି ବ୍ୟାପି ଯାଆନ୍ତି। ଗଳ୍ପର ଚିତ୍ରଟି ପିକାଶୋଙ୍କ 'ଗୁର୍ଣ୍ଣିକା' ପରି ଉଠେ ଫୁଟି । ସନ୍ଧିକ୍ଷଣ ସଭ୍ୟତା ଓ ସଂସ୍କୃତି ସମକାଳୀନ ଦଲିଲ୍ ହୋଇ ନେଇଥାଏ ଗଳ୍ପ ଆକୃତି।

ସମକାଳୀନ ଋଣ ସଭ୍ୟତା, ବଣିକ ସଂସ୍କୃତି, ନୀତି ଅନୀତି ପ୍ରଶ୍ନ ରହିତ ଜୀବନ ଓ ଲକ୍ଷ୍ୟ ହାସଲ ବଡ଼କଥା; ମଧ୍ୟବିତ୍ତ ମାନସିକତାକୁ ଦୋହଲାଇ ଦେଇଛି। ଏହି ପୃଷ୍ଠପଟ୍ଟ ଉପରେ ସିଏ ତାଙ୍କ ଗଳ୍ପର କାନ୍‌ଭାସ ପ୍ରସ୍ତୁତ କରିଛନ୍ତି।

ଆରିଷ୍ଟଟଲ୍‌ଙ୍କଠାରୁ ଗଡି ଆସିଛି – କଳା ସୃଷ୍ଟି ପଛରେ ଥାଏ ଈଶ୍ୱରଙ୍କ ପ୍ରେରଣା। ସୃଷ୍ଟିର ପୁଷ୍ପଟିଏ ପ୍ରସ୍ଫୁଟିତ ହେବାକୁ ଦରକାର କରେ ସ୍ରଷ୍ଟାଙ୍କ ଅତୀନ୍ଦ୍ରିୟ ଚେତନା। ଏହି ଧାରଣାକୁ ଆଧାର କରି ଘଟିଛି ତାଙ୍କ ପ୍ରଥମ ଗଳ୍ପର ଅବତାରଣା। 'ଅତିବେଶୀ ଦୁଃଖ ବା ଅତିବେଶୀ ସୁଖରେ ଆଉ କିଛି ହେଉ କି ନହେଉ, ଅନ୍ତତଃ ଗପ ଲେଖା ହୁଏ ନାହିଁ।' ଦେବାଶିଷ ପାଣିଗ୍ରାହୀଙ୍କ ଦ୍ୱିତୀୟ ଗଳ୍ପଗ୍ରନ୍ଥ 'ଅତୀନ୍ଦ୍ରିୟ' ମଲାଟ ଫିଟାଇଲେ ସାମ୍ନାରେ ପଡେ ଏହି ଉଦ୍ଧୃତିଟି ଏବଂ ଏହା ତାଙ୍କ 'ଅତୀନ୍ଦ୍ରିୟ' ଗଳ୍ପର ଅନ୍ତିମ ବାକ୍ୟ ଓ ଜ୍ୟାମିତିର ଯେମିତି ସିଦ୍ଧାନ୍ତ।

ଗଳ୍ପ ପୃଷ୍ଠାରେ ନିଜ ଅନୁଭବର ଅଙ୍କ କଷିଛନ୍ତି ଦେବାଶିଷ: 'ବେଗରେ ଆବେଗ ନଥାଏ। ଜୀବନ ଏତେ ବେଶୀ କ୍ଷିପ୍ର ଓ ଗତିଶୀଳ ହୋଇଗଲାଣି ଯେ, ତା' ଭିତରେ ଆବେଗର ନଈ ଅନ୍ତଃସଲିଳା ଫଲ୍‌ଗୁର ରୂପ ନେଇ ଗଲାଣି। ଆଉ ଆବେଗର ସ୍ୱତଃସ୍ଫୁର୍ତ୍ତତା ଯେଉଁଠି ନାହିଁ ସେଠି କି ସାହିତ୍ୟ।... ସତରେ ଏ ସମୟ କେତେ ନିଷ୍ଠୁର। ନିଷ୍କରୁଣ। କେତେ ବେଶୀ ଅନ୍‌ରୋମାଣ୍ଟିକ୍ ସତେ।... ଏବେକାର ଜୀବନ ଏତେ ବେଶୀ ଅନିଶ୍ଚିତ ଯେ, ବଞ୍ଚିରହିବାଟା ହିଁ ଏକ ପରମ ଆଶ୍ଚର୍ଯ୍ୟ। କାଲିକୁ କିଛି ଭଲ ମନ୍ଦ

ହେଲେ ଆମ ପିଲାଛୁଆ ରାସ୍ତାରେ ଛିଡା ହେବେ।... ଜୀବନର ତିକ୍ତ ସତ୍ୟକୁ ସାମ୍ନା କରି ଶିଖ।'କଥା ନାୟକ ଫାଲ୍‌ଗୁନୀ ସୋସିଓଲଜିର ଫିଲୋସଫର୍ ନୁହେଁ, ଜଣେ ସମକାଳୀନ ରୁଧିରାକ୍ତ ନିମ୍ନ ମଧ୍ୟବିତ୍ତ ମଣିଷ। ଚେତନା ପ୍ରବାହଶୈଳୀକୁ ଆଶ୍ରୟ କରି ଉପସ୍ଥାପିତ କରିଛି ତା' ଅନୁଭୂତିର ଗଳ୍ପ। ବଣିକ ସଂସ୍କୃତିର ନିଷ୍ଠୁର ଦିଗ ପ୍ରତି ସିଏ ସଚେତନ। କିନ୍ତୁ ପତ୍ନୀ ସୁନନ୍ଦା! ସାମ୍ନାରେ ନୀତି ଅନୀତିର ପ୍ରଶ୍ନ ନାହିଁ। ବଡ଼ ତାଙ୍କର ଲକ୍ଷ୍ୟ। ଲକ୍ଷ୍ୟ ହାସଲ !

ଫାଲ୍‌ଗୁନୀ ଭଲ ଗପ ଲେଖୁଥିଲେ। ଏବେ ଆଉ ଲେଖୁନାହାନ୍ତି ! କାହିଁକି ଲେଖୁ ନାହାନ୍ତି ? ଏହି ପ୍ରଶ୍ନର ଜାଲ ଭିତରେ ସିଏ ଅଣନିଃଶ୍ୱାସୀ। କିଛିଟା ଆଶ୍ୱସ୍ତି ପାଇଁ ପୁସ୍ତକମେଳା ଭିତରେ ପ୍ରବେଶ କରିଛନ୍ତି। ସେଠି ବି ସେଇ ପ୍ରଶ୍ନର ଭୂତ ତାଙ୍କୁ ଗୋଡାଇଛି।

କଥା ସମ୍ରାଟ ଫକୀରମୋହନ ଉତ୍କଳ ସାହିତ୍ୟ ସମ୍ପାଦକ ବାଗ୍ମୀ ବିଶ୍ୱନାଥ କରଙ୍କୁ ୧୯୧୪ ମସିହାରେ ଖଣ୍ଡିଏ ଚିଠିରେ ଲେଖିଛନ୍ତି; 'ଗଳ୍ପ ଲେଖିବା କିଛି ଗୁରୁତର କାର୍ଯ୍ୟ ନୁହେଁ, ପୃଥିବୀ ଗଳ୍ପମୟ, ମାତ୍ର ଅଭାବ ଚିନ୍ତା ଆଉ ଦେହ ବଳ। ବାସ୍ତବିକ ଆପଣଙ୍କ ନୋଟିସ ପାଇଲେ ରାତ୍ରରେ ଆହୋରାତ୍ରେ ଶୟନ ସମୟରେ ଘଣ୍ଟେ ଦୁଇ ଘଣ୍ଟା ଜାଗ୍ରତ ରହି ଗଳ୍ପର ଫଂଜର (Plot) ଠିକ୍ କରିବାକୁ ହୁଏ, ତାହା ବାଦ୍ ଲେଖାରମ୍ଭ। ଏହି ତୁଚ୍ଛ କାର୍ଯ୍ୟଟା ସକାଶେ ମଧ ବର୍ତ୍ତମାନ ମୁଁ କ୍ଳାନ୍ତ।' (ଫକୀରମୋହନ ସମୀକ୍ଷା, ପୃ ୨୨୬୫/ ସୁରେନ୍ଦ୍ର ମହାନ୍ତି)।

ପୃଥିବୀ ଗଳ୍ପମୟ, କିନ୍ତୁ ଗଳ୍ପ ରଚନା ଗର୍ଭଯାତନା କେତେ ବେଦନାମୟ ତାହା ବେଶୀ ଉପଲବ୍ଧି କରିଛନ୍ତି ଫାଲ୍‌ଗୁନୀ। ଆଧୁନିକ ସାମାଜିକ ଜୀବନରେ ଘରର ସଂଜ୍ଞା ଗାଣିତିକ। କିନ୍ତୁ ଚରିତ୍ର ଗାଳ୍ପିକ ଗଣିତ କଷାରେ ଅନାଡ଼ି ଓ ଆବେଗ ତା' ଚଳନ୍ତି ଖାତାର ପୁଞ୍ଜି। ଅପରପକ୍ଷରେ ଅତୀତର ଫୁଲଫୁଟା ସ୍ମୃତି 'ଶୁଭଲକ୍ଷ୍ମୀ'କୁ ସାମ୍ନାକୁ ଅଣାଯାଇଛି। ଚରିତ୍ର ଇଲିୟଟ୍‌ଙ୍କ ପ୍ରୁଫ୍ରକ୍ ପରି ବଡ଼ ଅନ୍‌ହିରୋଇକ୍ ନିଜକୁ ବୋଧ କରୁଛି। ମଝିରେ ଅଠରଟି ବର୍ଷ ତା' ସବୁ ରୋମାନ୍ସକୁ ୱେଷ୍ଟଲ୍ୟାଣ୍ଡରେ ବଦଳାଇ ଦେଇଛି। ରସାଳ ଶୁଭଲକ୍ଷ୍ମୀ ଟାକୁଆଟିଏ ହୋଇଯାଇଛି। 'ବନ୍ଦ ଝର୍କାର ଘର' ଗଳ୍ପଟିର ପ୍ଲଟ ଯାହା, ତାକୁ ଅଭିଜିତ୍‌ର ଆତ୍ମନେପଦୀରେ ଉପସ୍ଥାପିତ କରାଇ ଦେଇଛନ୍ତି ଗାଳ୍ପିକ। ତେଲ ଲୁଣ ସଂସାର ଭିତରେ ସୀମାବଦ୍ଧ ମଣିଷର ଦୃଷ୍ଟି। ଜୀବନର କୌଣସି ସୂକ୍ଷ୍ମ ଜିନିଷକୁ ଦେଖିବାକୁ ଅଭିଜିତ୍‌ଙ୍କ ପାଖରେ ନାହିଁ ଆଖି(vision)। ଗତାନୁଗତିକ ଜୀବନକୁ ନେଇ ବଂଚୁଥିବା ଅସ୍ତିତ୍ୱ। ସିଏ ଉପଲବ୍ଧି କରିଛନ୍ତି ସମ୍ବାଦପତ୍ରର ସମ୍ବାଦମାନ ଦେଖି

'ଏହା ସମ୍ବାଦପତ୍ର ବା ଦୁଃସମ୍ବାଦପତ୍ର' ! ଅସୁସ୍ଥ ସଭ୍ୟତାର ପ୍ରତୀକ ! ଏଥିରେ ରହିଛି ମାନବିକତାର ସଂକଟ, ସଂସ୍କୃତିର ସନ୍ଧିକ୍ଷଣ ଚିତ୍ର !

ମେଜର ଜେନେରାଲ ଅମରେନ୍ଦ୍ର ମହାନ୍ତିଙ୍କ ଜୀବନକୁ ଦେଖିବାର ଦୃଷ୍ଟିଭଙ୍ଗୀ ବଦଳିବା ସହିତ ଅଭିଜିତ୍‌ର ବି ବଦଳିଛି। ତାଙ୍କର ମନେ ପଡ଼ିଛି - 'ସତରେ ବାର୍ଦ୍ଧକ୍ୟ ହିଁ ଦ୍ୱିତୀୟ ଶୈଶବ। ଆଉ ଯଦି ଦ୍ୱିତୀୟ ଶୈଶବର ପ୍ରଥମ ଶୈଶବ ସହ ମହାମିଳନ ହୁଏ ତେବେ ସ୍ୱର୍ଗ ଆଉ କେତେଦୂର' ? ତେଣୁ ଅଭିଜିତ୍ ଶାୟିତା ପତ୍ନୀ ମିତାଲି କାନ ପାଖରେ ଯାଇ କହିଛି, 'ଆମକୁ ବି ତୁରନ୍ତ ଆମ ମନର ସବୁ ବନ୍ଦ ଝର୍କା, ଅଳିନ୍ଦର ପଥକୁ ଉନ୍ମୁକ୍ତ କରିବାକୁ ପଡ଼ିବ। ତାକୁ ଖୋଲିବାର ଚାବିକାଠି ଅଛି ସୋନୁ (ସେମାନଙ୍କ ଟିକିପୁଅ) ପାଖରେ। ଆସ, ସୋନୁର ଗୋଟିଏ ହାତ ଧରିବ ତୁମେ, ଆର ହାତ ଧରିବି ମୁଁ ଏବଂ ସାଥୀ ହୋଇ ଆମେ ଯିବା ମେଜର୍ ଜେନେରାଲ୍ ମହାନ୍ତି ଓ ରୂପାର ଘରକୁ; ଜହ୍ନ ଆଲୁଅ ଖୋଜି, ସୂର୍ଯ୍ୟର କିରଣ ଖୋଜି, ପକ୍ଷୀର କାକଳି ଖୋଜି, ଘାସର କାକର ଖୋଜି, ଗୁଣ୍ଡୁଚି ମୂଷା ଓ ପ୍ରଜାପତିର ଦୁନିଆ ଖୋଜି !' ଜୀବନର ଅତୀନ୍ଦ୍ରିୟ ଉପଲବଧିକୁ ବି ଏହି ଗଳ୍ପରେ ବଢ଼ାଯାଇଛି ଏବଂ ବିତରିତ କରାଯାଇଛି।

'The wild Duck' ନାଟକରେ Henrik Ibsen ଙ୍କ ଚରିତ୍ର 'Hjalmar' ସଂଳାପଟିଏ କହିଚି, 'She has lived in there so long now that she has forgotten her natural wild life and it all depends on that' ! ଏବଂ ସେହିଭଳି Gregers' ବି ମନେପକାଇ ଦେଇଛି 'You have much of the wild duck in you'! ମେଜର ଜେନେରାଲ ମହାନ୍ତିଙ୍କପରି ପତ୍ନୀ ଓ କନ୍ୟାହରା ମନର ଝରକା ଓ ଅଳିନ୍ଦ ବନ୍ଦ କରି ଅଭିଜିତ୍ ଯେମିତି ବଞ୍ଚୁଛନ୍ତି। ଶେଷକୁ ସିଏ ଉପଲବ୍ଧି କରିପାରିଛନ୍ତି। ଇବ୍‌ସେନ୍‌ଙ୍କ ଚରିତ Mr. Wehrle ନିଜକୁ Wing-broken victim ବୋଲି ଅନୁଭବ କଲାପରି ଅଭିଜିତ୍ ବି ଉପଲଧି କରିଛନ୍ତି ଯେମିତି ସିଏ ନିଜେ ବନ୍ଦ ଝର୍କାର ଘରେ ରହିଛନ୍ତି। ଜହ୍ନ ଆଲୁଅ, ଘାସର କାକର, ଗୁଣ୍ଡୁଚିମୂଷା ଓ ପ୍ରଜାପତିର ପ୍ରକୃତ ଆନନ୍ଦମୟ ସଂସାର ଏହା ପୂର୍ବରୁ ସିଏ କିଛି ଉପଭୋଗ କରି ପାରିନାହାନ୍ତି ! !

ସିମ୍ବଲିଜିମ୍ ଭିତରେ ଗଳ୍ପଟି କଳାଗତ ପୂର୍ଣ୍ଣତାପ୍ରାପ୍ତ ହୋଇଛି। ପାଠକୀୟ ସୁଖ ଅପେକ୍ଷା ଏଥିରେ ମିଳେ ସ୍ରଷ୍ଟାର ସୂକ୍ଷ୍ମ ଦ୍ରଷ୍ଟାପଣ ଅଧିକ !

ପରବର୍ତ୍ତୀ ଗଳ୍ପ 'ସୁର ମହ୍ଲାର' ରଙ୍ଗ୍ ନମ୍ବରରୁ ଆରମ୍ଭ ଗୋଟିଏ ପ୍ରେମଗଳ୍ପ ନୁହେଁ, ମଧ୍ୟବୟସର ସଂକଟ ! ମନସ୍ତତ୍ତ୍ୱବିଦ୍‌ଙ୍କ ଭାଷାରେ 'ମିଡ୍ ଲାଇଫ୍ କ୍ରାଇସିସ୍' । ବୈଚିତ୍ର୍ୟ ବା କିଛି ଉନ୍ମାଦନା ଚରିତ୍ର ଦୁହେଁ ଖୋଜୁଥିଲେ । ହଜିଲା ସ୍ୱପ୍ନକୁ ଖୋଜି ପାଇବାର ସୂତ୍ରର ଥିଲେ ଅନ୍ୱେଷଣରତ । ଜୀବନକୁ ଗଭୀର ଭାବେ ଜୀଇ ରହିବାର ସ୍ପୃହା ଓ ଆବେଗ ସରିଗଲାବେଳେ ଭୀମସେନ୍ ଯୋଶୀଙ୍କ ସଂଗୀତ ଦେଇଛି ସେମାନଙ୍କୁ ନୂତନ ଉଦ୍ଦୀପନା । ଜୀବନକୁ ମୁଗ୍ଧ ଭାବେ ଜୀଇବାରେ ଆସିଛି ମୋହ । କେମିତି ଆସିଛି ? ମନସ୍ତାତ୍ତ୍ୱିକ ନିଦାନରେ ନୁହେଁ, ସୁଜତାର ଯୁବତୀ ବୟସର ଅସଙ୍କୋଚ ନୃତ୍ୟରେ ଓ ନାୟକ ଅନିରୁଦ୍ଧର ଅର୍ଦ୍ଧଅଙ୍କିତ କାନ୍‌ଭାସ୍‌ରେ ନୂଆ ତୁଳି ଚାଳନାରେ ! ସୃଜନଶୀଳତା ସେମାନଙ୍କ କ୍ରାଇସିସ୍‌ର ସମାଧାନ କରିଛି । ପୁଣି ଥରେ ସ୍ୱପ୍ନ ସରାଗ ଓ ଶୃଙ୍ଗାର ଫେରି ଆସିଛି । ଜୀବନ ମହମହ ବାସି ଉଠିଛି ।

ଏହା ଏକ ମାମୁଲି ଗଳ୍ପ ନୁହେଁ । ବର୍ଣ୍ଣାଡ୍‌ଶ'ଙ୍କ 'ବ୍ୟାକ୍ ଟୁ ମେଥୁସେଲା' ନାଟକ ପରି ଏକ Modern tragedy । ଦେବାଶିଷଙ୍କ ଏକ Master piece ସୃଷ୍ଟି । ବର୍ଣ୍ଣାଡ୍ ଶ' ଲେଖିଛନ୍ତି 'You use a glass mirror to see your face: you use works of art to see your soul . But we who are older use neither glass mirrors nor works of art. We have a direct sense of life' ! ଏହି ଗଳ୍ପରେ ଦେବାଶିଷ ଆବିଷ୍କାର କରିଛନ୍ତି ଏଇ 'Direct sense of life' । ନାୟକ ଓ ନାୟିକାଙ୍କ କ୍ଷଷଚେତନାର ଜାଗରଣ ଫଳରେ ଜୀବନ ଉତ୍ତୀର୍ଣ୍ଣ ହୋଇଛି ଅତୀନ୍ଦ୍ରିୟ ସ୍ତରକୁ । ଟ୍ରାଜେଡି ସରିଛି, ରୋମାନ୍ସ ନାହିଁ, କିନ୍ତୁ ସୃଷ୍ଟିର ଅମୃତତ୍ୱ ସେମାନଙ୍କୁ ଅତୀନ୍ଦ୍ରିୟ ଭାବେ କରିଚି ଯୁଗଳବନ୍ଦୀ ।

'ପଙ୍ଗୁ' ଗଳ୍ପରେ ଗୋଟିଏ ଭୀତିପ୍ରଦ ଶୂନ୍ୟତା ଅତନୁ ଅନୁଭବ କରୁଥିବା ବେଳେ ପ୍ରକୃତ ମାନସିକ ପଙ୍ଗୁତ୍ୱ ମଧ୍ୟବୟସରେ ଅନୁଭବ କରୁଥିଲେ 'ସୁର ମହ୍ଲାର'ର ଚରିତ୍ର । କିନ୍ତୁ ଅତନୁ ବୃଦ୍ଧ ହେଲେ ବି ଥିଲେ ରୋମାଣ୍ଟିକ୍ । ବହୁ ଦିନର ଅନୁକୂଳ ଜୀବନାନୁଭୂତି ତାଙ୍କୁ ମଣିଷ ଜୀବନର ଅସହାୟତା, କ୍ଷଣ ଭଙ୍ଗୁରତା ପ୍ରତି ଇନ୍‌ସେନ୍‌ସିଟିଭ୍ କରି ଦେଇଥିଲା । ନିର୍ଜନତା ଓ ଏକାକୀତ୍ୱ ଦ୍ୱାରା ନିଜ ସହ ନିଜର ଅନ୍ତରଙ୍ଗ ଆଳାପ କରି ସିଏ ପାଇଥିଲେ ଶାନ୍ତି ଓ ମାନସିକ ସ୍ଥିରତା । ବିରଳ 'ପଙ୍ଗୁ' ଚରିତ୍ରଙ୍କ ଆସିଥାଏ ଏଇ ଅତୀନ୍ଦ୍ରିୟ ଉପଲବ୍ଧି । 'ପଙ୍ଗୁ' ବି ଗୋଟିଏ ଟ୍ରାଜେଡି ! ଅତନୁଙ୍କୁ ଆକର୍ଷିତ କରିଥିବା ଅନ୍ୟ ଏକ ଯୁବାରୋଗିଣୀ 'ଆଶାବରୀ'ର କରୁଣ ଜୀବନୀ ।

ବିଖ୍ୟାତ ନାଟ୍ୟକାର Luigi Pirandello ନିଜ ନାଟକ 'Six characters In Search of an Authors' ର ଆଲୋଚନା ପ୍ରସଙ୍ଗରେ କହିଛନ୍ତି – 'When a man lives, he lives and does not see himself' ନିଜ ଅବସ୍ଥାକୁ ଆଶାବରୀ ଦେଖିପାରିନାହିଁ। ସ୍ୱପ୍ନ ଓ ନକ୍‌ସା ତିଆରିରେ ସିଏ ମାତିଛି। କିନ୍ତୁ କାଫ୍‌କାଙ୍କ ଅସ୍ତିତ୍ୱବାଦୀ ଚରିତ୍ର ଜାଣିଥିଲା ଗାଧୁଆକୁଣ୍ଡରେ ବନ୍‌ଶୀ ଖେଳାଇଲେ ମାଛ ମିଳିବ ନାହିଁ। ଜୀବନବାଦୀ ଓ ଅସ୍ତିତ୍ୱବାଦୀ ଚରିତ୍ର ମଧ୍ୟରେ ପାର୍ଥକ୍ୟ ଏଇଠି।

ଡାକ୍ତର ମହାନ୍ତିଙ୍କ ଶବ୍ଦର ଦର୍ପଣରେ ଆଶାବରୀର ପଙ୍ଗୁତ୍ୱକୁ ଉପଲବ୍‌ଧି କରୁଛନ୍ତି ଅତନୁ। ବାଲ୍‌କୋନି ଉପରୁ ହାତ ହଲାଉଥିବା ସେଇ ପଙ୍ଗୁ ଝିଅ ପାଇଁ ଗୋଟିଏ ମିରାକ୍ଲେ ଘଟିବାକୁ କରିଛନ୍ତି ପ୍ରାର୍ଥନା। ସେଇ ମିରାକ୍ଲେ ତାକୁ କରିଦେବ ନିରାମୟ। ତା' ସ୍ୱପ୍ନ ଓ ନକ୍ସା ସବୁ ସଫଳ ଓ ସବୁଜ ହୋଇଯିବ। ସାର୍ଥକ ହୋଇଯିବ ଜୀବନ। ସେମିତି କ'ଣ ଘଟିବ ? ଘଟିଲେ ଜୀବନର ସଂଜ୍ଞା ବଦଳିଯିବ। 'ପ୍ରବ୍ରଜ୍ୟା' ଗୋଟିଏ ଗପ ନୁହେଁ, ଶବ୍ଦରେ ତିଆରି ଅଙ୍କ। ଛଳନାବିହୀନ ଜଣେ ନାରୀର ଜୀବନ ଗଣିତ କଷା ଯାଇଛି। ତାରି ସ୍ମୃତିକୁ ସୁଶାନ୍ତ ଉଚ୍ଚାରିତ କରିଛି। 'ମୁଁ ଆପଣଙ୍କୁ ସାହାଯ୍ୟ କରିପାରେ କି ?' ପ୍ରତ୍ୟୁତ୍ତରରେ କହିଥିଲା ନାରୀଟି – 'ଯାହାକୁ ଈଶ୍ୱର ହିଁ ସାହଯ୍ୟ କରିବାକୁ କୁଣ୍ଠିତ, ତାକୁ ଆପଣ କି ସାହାଯ୍ୟ କରିପାରିବେ ?' ଦେବାଶିଷଙ୍କ ପୂର୍ବ ଗଳ୍ପରେ ଥିଲା 'ଆଶାବରୀ' ସେହିପରି ଏକ ଚରିତ୍ର। ପ୍ରବ୍ରଜ୍ୟାରେ ଶାରଦା ନଟରାଜନ୍‌। ବଡ଼ ବାସ୍ତବବାଦିନୀ। ସୁଶାନ୍ତକୁ ଧନ୍ୟବାଦଟିଏ ଦେଇପାରିନି। ଛଳନା ମୁକ୍ତ ସ୍ୱରରେ କହିଛି – 'ଧନ୍ୟବାଦ ଏକ ନିର୍ବୈୟକ୍ତିକ ଉଚ୍ଚାରଣ, ଯାହା ସଭ୍ୟ ମାର୍ଜିତ ସମାଜରେ ମଣିଷ ହୁଏତ ଶହେବାର ବ୍ୟବହାର କରିଥାଏ ଶାଳୀନତାର ଏକ ଯାନ୍ତ୍ରିକ ପ୍ରକ୍ରିୟାରେ, ଯଦିଓ ଅଧିକାଂଶ କ୍ଷେତ୍ରରେ ଏହା ପଛରେ କୌଣସି ଆନ୍ତରିକ ବା ମାର୍ମିକ ଭାବନା ବା ଆବେଦନ ନଥାଏ'।

ସନ୍ନ୍ୟାସକୁ ଏକ ଭଲ ବୃତ୍ତି ବୋଲି କେତେକ ଧର୍ମଧ୍ୱଜୀ ଗ୍ରହଣ କଲାବେଳେ ଶାରଦା କହିଛି – 'ସନ୍ନ୍ୟାସ କେବଳ ପାହାଡର ନିର୍ଜନତା ଭିତରେ ଯୋଗ ସାଧନା ବା କଠୋର ତପସ୍ୟା ଭିତରେ ସୀମାବଦ୍ଧ ନୁହେଁ। ଏହା ଏକ ମାନସିକ ଅବସ୍ଥା ମାତ୍ର'। ସେହି ମାନସିକ ଅବସ୍ଥା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲାପରେ ତା'ର ହୋଇଛି ଆହୁରି ପ୍ରାଣବନ୍ତ। ତା' ଶାନ୍ତି ଓ ପ୍ରାପ୍ତିର ମୁଗ୍ଧ ଅନୁଭବ ସଂଜୀବିତ। ଚକାଆଖିରେ ଆଖି ମିଶାଇବାବେଳେ ସିଏ ହୋଇଛି ଈଶ୍ୱରଙ୍କ ସହ ଖୁବ୍‌ ଅନ୍ତରଙ୍ଗ। ବ୍ୟକ୍ତିଗତ

ଭାବେ ଖୁବ୍ ନିକଟରୁ କରିଛି ଆଳାପ ! ନିଜ ତ୍ରିକାଳର ହିସାବ କରିବାର ସୁଯୋଗ ପାଇଛି !

ବିଷାଦର ମୂର୍ତ୍ତି ପୁରୀରୁ ଫେରିଲାବେଳେ ଯାଉଛି ସାଥିରେ ନେଇ ଶାଶ୍ୱତ ସନାତନ ଅନିର୍ବଚନୀୟ ଶାନ୍ତି ଓ ପୂର୍ଣ୍ଣତାର ପ୍ରାପ୍ତି !

ସିଏ ଦେଇଥିଲା ସୁଶାନ୍ତକୁ ଚିକାଗୋସ୍ଥ ନିଜର ଇ-ମେଲ ଆଡ୍ରେସ୍ ଏବଂ କହିଥିଲା ମନିଅର୍ଡର କରି ସିଏ ଦେଇଥିବା ଧାର ପଠାଇ ଦେବ। ମାତ୍ର ସୁଶାନ୍ତ ଠିକଣାରେ ଆସିନଥିଲା କିଛି ! ନିଜେ ପ୍ରବଂଚିତ ହୋଇଛି ? ଭଦ୍ରମହିଳା ତାକୁ ଠକି ଦେଇଛନ୍ତି ? ସିଏ ସ୍ଥିର ଭାବେ କହିପାରୁନାହିଁ। ବିଷାଦ ଓ ଶାନ୍ତିର ମୂର୍ତ୍ତିମତୀରୂପ କେବଳ ତା' ସ୍ମୃତିର ପରଦାରେ ଉଙ୍କି ମାରୁଛି।

ଗଳ୍ପ ସରିଛି। ଇଲିଯଟ୍‌ଙ୍କ 'Murder in the cathedral' ର ଚରିତ୍ର ପରି ବୋଧ ହୋଇଛି। ସୁଶାନ୍ତ ଯେମିତି 'For as, the poor, there is no action, But only to wait and witness. ହୋଇ ରହିଛି। ସଂକଳନର ଷଷ୍ଠ ଗଳ୍ପ 'ଅପମୃତ୍ୟୁ' ପୂର୍ଣ୍ଣଚ୍ଛେଦ ପରି ଏକ ସାଦାସିଧା ଓ ସରଳ ଗପ। ସମକାଳୀନ 'ବୋଲ୍‌ବମ୍' ଆଧ୍ୟାତ୍ମିକ ପ୍ରଚଳନୀ ଉପରେ ଆଧାରିତ ଏହାର ପ୍ଲଟ୍। ବଡ଼ କରୁଣ। ପ୍ଲଟ ସଜାରେ ସମକାଳୀନ ଯୁଗ ଓ ଯୁବ ସଂସ୍କୃତିର ଚିତ୍ର ଖୁବ୍ ବାସ୍ତବବାଦୀ। ଜୀବନ ଓ ସମାଜର ସମାଲୋଚନା। ସାମ୍ନାକୁ ଅଣାଯାଇପାରେ ଏଇ ଧାଡ଼ି: 'ଅର୍ଥ ଉପାର୍ଜନର ପନ୍ଥା ସତ୍ ବା ଅସତ୍ ହେଉ; ଯାଏ ଆସେ ନାହିଁ। ଅର୍ଥ - ପ୍ରଚୁର ଅର୍ଥ ହିଁ ଲକ୍ଷ୍ୟ। କାରଣ ଅର୍ଥ ହିଁ ପ୍ରତିଷ୍ଠାର ଭିତ୍ତିଭୂମି, ସଫଳତାର ମାପକାଠି...।' ପୁନଶ୍ଚ 'ଜୀବିକା ପାଇଁ ଅଗ୍ରାଧିକାର କ୍ରମରେ ସର୍ବପ୍ରଥମେ ସରକାରୀ ଚାକିରୀ xxx। ଉତ୍କୋଚ ହେଲେ ବା ରାଜନୈତିକ ସୁପାରିଶ ବଳରେ ସରକାରୀ ଚାକିରି ମିଳିପାରିବ ଏବଂ ଥରେ ସରକାରୀ ଚାକିରି ମିଳିଲେ ଚାହିଁଲେ ବି ଯାଏ ନାହିଁ xxx ନା କୌଣସି ଉତ୍ତର ଦାୟିତ୍ୱ ନା କଠିନ ପରିଶ୍ରମର ଆବଶ୍ୟକତା, ଦରମାଛଡ଼ା ଉପୁରି ମିଳିବା ନିଜର ହକ୍ ବା ଚାକିରିର ସର୍ତ୍ତାବଳୀର ଏକ ପ୍ରମୁଖ ସର୍ତ୍ତ.....'।

ସମାଜର ପ୍ରତିନିଧିମୂଳକ ଚରିତ୍ର ଗଳ୍ପ ନାୟକ। ପ୍ଲଟ୍‌ରେ ତାର ନିଖୁଣ ଚିତ୍ର; 'ସରକାରୀ ଚାକିରି ମିଳିବା ପାଇଁ ଅକ୍ଷୟର ଶିକ୍ଷାଗତ ଯୋଗ୍ୟତା କେବଳ ଥିଲା, କିନ୍ତୁ କୌଣସି ପ୍ରତିଯୋଗିତାମୂଳକ ପରୀକ୍ଷାରେ କୃତକାର୍ଯ୍ୟ ହେବାର ଆବଶ୍ୟକୀୟ ପ୍ରତିଭା ବା ମେରିଟ୍ ନଥିଲା, ସରକାରୀ ଚାକିରିଟିଏ ମିଳିବ ବୋଲି ମାନସିକ କରି ସିଏ ବୋଲ୍‌ବମ୍

ନେଇଯାଇଛି । ବାଟମଙ୍ଗଳାଠାରେ ଜଳଭାର ଥୋଇ ରେଳ ଲାଇନ୍ ଉପରକୁ ଝାଡା ଯାଇଛି । ଝାଡା ବସିଛି, ଆଉ ଉଠିପାରି ନାହିଁ । ଅସୀମ କ୍ଳାନ୍ତି । ସିଏ ଅନ୍ୟ ମନସ୍କ । ତା' ଚେତନା ଫେରିଲା ନିକଟରେ ଟ୍ରେନ୍ ଇଂଜିନ୍ ଶବ୍ଦଶୁଣି । ଆକୁଳରେ ମନେ ପକାଇଲା ତା' ନନା ସବୁଦିନେ ପଢୁଥିବା ମହାମୃତ୍ୟୁଞ୍ଜୟ ମନ୍ତ୍ର । ମନେ ପଡିଲା ପ୍ରଥମ ଧାଡି । ଯେତେ ଚେଷ୍ଟା କଲେ ବି ତା'ର ସ୍ମରଣ ହେଲା ନାହିଁ – 'ଉର୍ବାରୁକମିବ ବନ୍ଧନାତ୍ ମୃତ୍ୟୋର୍ମୁକ୍ଷୀୟ ମାମୃତ୍ ।' ଉର୍ବାରୁକ୍ (ଫୁଟିକାକୁଡି) ଯେମିତି ବୃନ୍ତର ବନ୍ଧନରୁ ଖସିପଡେ ସେମିତି ମୃତ୍ୟୁର ବନ୍ଧନରୁ ମୋତେ ମୁକ୍ତି ଦିଅନ୍ତୁ – ଧାଡିଟି ! କେବଳ ଗୋଟିଏ ଆର୍ତ୍ତଚିତ୍କାର ଇଂଜିନ୍ ଶବ୍ଦରେ ହୋଇଗଲା ବିଲୀନ ! ଯେମିତି 'ରେବତୀ' ଗଳ୍ପରେ ଅନ୍ଧାରରେ ଗୋଟିଏ ଢ଼ୋ' କିନା ଶବ୍ଦ ମିଳାଇ ଯାଉଛି ।

ଗଳ୍ପର ଉପସଂହାର ଏତେ କରୁଣ ଯେ ସ୍ୱତଃ ମନକୁ ଆସେ 'ମର୍ଡ଼ର ଇନ୍ କାଥେଡ୍ରାଲ୍'ର ଚରିତ୍ର ଥୋମାସ୍‌ର ଉକ୍ତି: I give my life/ To the law of God above the Law of man' କିମ୍ୱା – 'It is not in time that my death shall be known;' ତେଣୁ 'ଅପମୃତ୍ୟୁ' ଗଳ୍ପର ଶୀର୍ଷକ ବଡ଼ ଯଥାର୍ଥ । ମଣିଷ ହତଭାଗ୍ୟ ଓ ମୃତ୍ୟୁ ସାମ୍ନାରେ ତା'ର ଅସହାୟତା ଚିରନ୍ତନ । ଗଳ୍ପର ପରିଣତିରେ ଯେଉଁ 'ଆଧ୍ୟାତ୍ମିକତା ଓ କାରୁଣ୍ୟ ପରସ୍ପର ଆଲିଙ୍ଗନବଦ୍ଧ, ତାହାହିଁ ଗଳ୍ପଟିର ନାଂଦନିକ ତତ୍ତ୍ୱ । ଗଳ୍ପଟି ସରଳ କିନ୍ତୁ ଏଥିରେ ଗାଳ୍ପିକ ଅତି ବିଶ୍ୱସ୍ତ ଭାବେ ଉପସ୍ଥାପିତ କରିଛନ୍ତି 'Mirror of manners and of life' ।

ଆଧୁନିକ ସଂସ୍ଥିତିବାଦୀ ଶୂନ୍ୟତା ଓ ଅସହାୟତାର ଏକ ଗଭୀର ଚିତ୍ର ଗଳ୍ପଟି । ଠିକ୍ ଏହିପରି ସାମୁଏଲ୍ ବେକେଟ୍‌ଙ୍କ ବହୁ ଚର୍ଚ୍ଚିତ ଖ୍ରୀଷ୍ଟିଆନ୍ ସିଂବଲିଜିମ୍ ଉପରେ ଆଧାରିତ ନାଟକ 'Waiting for Godot' ରଚିତ ହୋଇଛି । Didi ଓ Gogo ଦୁଇଟି ଚରିତ୍ର, ଗୋଟିଏ 'indefinite place' ରେ ଜଣେ (local landlord) ମହାଜନଙ୍କୁ ଅପେକ୍ଷା କରିଛନ୍ତି, ଯାହାଙ୍କ ନାମ 'Godot' ! ଶେଷ ପର୍ଯ୍ୟନ୍ତ ସାହାଯ୍ୟ ଓ ସହାୟତା ପ୍ରଦାନ କରିବାକୁ 'ଗୋଦୋ' ଆସିନାହାନ୍ତି ! ଦୁଇଅଙ୍କ ବିଶିଷ୍ଟ ନାଟକଟି, ସିଏ ଆସିବେ ଆସିବେ ବୋଲି ସରିଯାଇଛି । ଠିକ୍ ସେମିତି ଗୋଟିଏ indefinite place 'ଅନାବନା ଗଛର ଜଙ୍ଗଲ ସାପ ସରୀସୃପ ବି ଥାଇ ପାରନ୍ତି' ତେଣୁ ରେଲ୍ ଲାଇନ୍ ଉପରକୁ ଅକ୍ଷୟ ଝାଡା ବସିଛି । ମଂତ୍ରର ଦ୍ୱିତୀୟ ପଂକ୍ତି ତା'ର ସାହାଯ୍ୟ ଓ ସହାୟତା ପାଇଁ ଆସିବାକୁ ଥିବା 'ଗୋଦୋ'ଙ୍କପରି ବୋଧ ହୋଇଛି, ଯିଏ ଶେଷ ପର୍ଯ୍ୟନ୍ତ ତା' ସ୍ମୃତିର ତ୍ରାଣପୀଠକୁ

ଆସିନାହାନ୍ତି। ବେକେଟ୍‌ଙ୍କ 'ଗୋଗୋ' ଦେହର ପ୍ରତୀକ ଏବଂ 'ଦିଦି' ଆତ୍ମର ପ୍ରତୀକ, 'ଅକ୍ଷୟ' ହୋଇ ରେଲ୍ ଇଂଜିନ୍ ଧକ୍‌କାରେ ଛିନ୍‌ଛତ୍ର ହୋଇଯାଇଛି। ନର୍ମାନ୍ ମେଲର୍ ତାଙ୍କ 'ଆଡ୍‌ଭେଟାଇଜ୍‌ମେଣ୍ଟ ଫର୍ ମାଇଁସେଲ୍‌ଫ'ରେ 'ୱେଟିଂ ଫର୍ ଗୋଦୋ'ର ଆଲୋଚନା ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି, ଯେଉଁମାନେ କେମ୍ବ ଜୟସୀୟ ଭାବନା ଶୈଳୀ କବଳିତ ସେମାନେ ଏହିପରି ଗଳ୍ପ ବା ପ୍ଲଟ୍‌ମାନ୍ ସୃଷ୍ଟି କରିଥାନ୍ତି।

ଗଳ୍ପ ଆଙ୍ଗିକ ଗଠନ ଦୃଷ୍ଟିରୁ ଗଳ୍ପଟି ସୁଠାମ ହୋଇଛି ଏବଂ ପ୍ଲଟ୍ ନିର୍ମାଣରେ ନିଖୁଣ। ପ୍ରସିଦ୍ଧ କଥାଶିଳ୍ପୀ ଚେଖୋଭ୍ (Anton Chekhov) ତାଙ୍କ ନାଟକ 'The Seagull'ର ଚରିତ୍ର ଟ୍ରିଗୋରିନ୍ ସଂଳାପରେ କହନ୍ତି – 'A subject for a short story, A girl - like yourself, say - lives from her childhood on the shores of a lake. She loves the lake like a seagull. and is happy and free like a seagull. But a man comes along bychance and sees her and ruins her, like this seagull, just to amuse himself'. ସମୁଦ୍ର ପକ୍ଷୀପରି ଅଲିଅଳରେ ବଢ଼ି ଉଠିଥିବା ବାଳିକା 'ନିନା' (ନାଟକର ନାୟିକା)କୁ ଲୁଣ୍ଠିତ କରାଯାଇଛି; ଯେମିତି ପକ୍ଷୀଟିକୁ ମାରିଛି। ଠିକ୍ ସେମିତି – ସରକାରୀ ଚାକିରି ପ୍ରାପ୍ତି ପାଇଁ ବୋଲ୍‌ବମ୍ ନେଇ ଯାଇଥିବା ଅକ୍ଷୟ ରେଲ୍‌ଇଂଜିନ୍ (ସମୟ) ହସ୍ତରେ ଲୁଣ୍ଠିତ ହୋଇଯାଇଛି।

ଗାନ୍ଧିଜୀ ଗୁଳିମାଡ଼ ଖାଇଲାବେଳେ ଉଚ୍ଚାରଣ କରିଥିଲେ, 'ହେ ରାମ'! ସେହି ରାମ ସର୍ବମୟ କର୍ତ୍ତା ତାଙ୍କୁ ବଞ୍ଚାଇ ପାରି ନଥିଲେ ! ମଣିଷ ଆଶାବାଦୀ, ତେଣୁ ମଂତ୍ରୋଚାରଣ କରିବାକୁ ଚେଷ୍ଟା କରିଛି ଅକ୍ଷୟ, ମାତ୍ର ତାହା ତା'ର ମନେପଡିନାହିଁ। ମନେ ପଡିଥିଲେ କ'ଣ ସିଏ ଟ୍ରେନ୍ ଚକତଳୁ ବଞ୍ଚି ଯାଇଥାନ୍ତା ? ସେଇଥିପାଇଁ 'Godot'ର ବ୍ୟାଖ୍ୟାରେ ମେଲର୍ ଲେଖିଛନ୍ତି, 'Go Dough! (Go, life!)

ପରବର୍ତ୍ତୀ ଗଳ୍ପ 'ଶୁଭାକାଂକ୍ଷୀ'। ନାୟକ ଅନୁପମ ମଧ୍ୟବିତ୍ତ ପରିବାରର ଉଚ୍ଚ ଶିକ୍ଷିତ ଓ ଉଚ୍ଚ ଆୟକାରୀ ଯୁବକ। ପରିବାର ସହିତ ତା'ର ସମ୍ପର୍କ ବଦଳିଯାଇଛି, ଯେତେବେଳେ ସିଏ କହିଛି, ତା'ର ସ୍ଥାବର ଓ ଅସ୍ଥାବର ସମ୍ପତ୍ତିକୁ ସିଏ ଶାରୀରିକ ଅକ୍ଷମ ଓ ଅନାଥ ପିଲାଙ୍କ ଅନୁଷ୍ଠାନକୁ କରିବ ଦାନ। ଶକ୍ତ ଧକ୍‌କାରେ ଗୃହ ତ୍ୟାଗ କରି ଚାଲିଗଲାବେଳେ ପଡିଛି ଡ୍ରଗ୍‌ସର ମାୟାଜାଲରେ। ନିଶାରେ ଥିବାବେଳେ ଆରବ୍ୟ ରଜନୀର ନବାବ ନିଜକୁ କରେ ବୋଧ ! ନିଶା ଛାଡି ଗଲେ ରାସ୍ତା କରର

ବୁଲା ଭିକାରୀ ବା ନଅଙ୍କ ଦୁର୍ଭିକ୍ଷର ଛତରଖିଆ ! ସର୍ବହରା କାଙ୍ଗାଳ ! ସିଏ ବୋଧ କରିଛି ସାଂଘାତିକ ଶୂନ୍ୟତା ଓ ଅସହାୟତା, ସେଇ ଶୂନ୍ୟତା ଓ ଅସହାୟତାରୁ ତାକୁ ସୁରକ୍ଷା ଦିଏ ନିଶା।

'ନିଶାର ଅନ୍ଧକୂପ ଭିତରେ ଥାଇ ବି ହୁଏତ କେହି ଜଣେ ମୋର ନିଜର ଥାଆନ୍ତା' । ସିଏ ଭାବେ। 'ଅସହାୟତାର କାରଣ ଅନ୍ୟକୁ ବୁଝାଇ ହୁଏ ନାହିଁ। ଅନୁଭବୀ ହିଁ ଜାଣେ କାହିଁକି ସେ ଅସହାୟ। କାହିଁକି ସେ ନିରାଶ୍ରୟ !' ଅନ୍ୟ ସାଥିରେ ଏହି ଅସହାୟତାକୁ ବାଣ୍ଟି ହୁଏ ନାହିଁ, ତେଣୁ ତା'ର ଆସେ ଅବସନ୍ନତା ଓ ସିଏ ସଂସାରରେ ଏକାକୀ !

ସେଇ ନିଃସଙ୍ଗତାବୋଧର ଶିକାର ହୋଇଛି ଅନୁପମ। ଏଣେ ପୋଲିଓ ରୋଗଗ୍ରସ୍ତ। ଅନାଥ ଟିକି ଝିଅଟି ଗେଟ୍ ପାଖକୁ ଆସେ ! ତାକୁ ଗୀତ ବୋଲିବାକୁ ଅନୁରୋଧ କରେ।

ସେଦିନ ଥାଏ ରାକ୍ଷୀ ପୂର୍ଣ୍ଣିମା। ସିଏ କହିଛି, ମଧ୍ୟାହ୍ନରେ ଗେଟ୍ ପାଖକୁ ତାକୁ ଆସିବାକୁ, ଅନୁପମ ଆସିଛି। ତାକୁ ଅସ୍ପଷ୍ଟ ଭାବେ ଦୂରରୁ ଦେଖାଯାଉଛି, ଆଶାବାଡ଼ି ! ସାହାରାରେ ରାକ୍ଷୀ ବାନ୍ଧିବା ମୁଦ୍ରାରେ ଆସୁଛି ରୂପା ! ସିଏ ଗେଟ୍ ଫାଙ୍କ ଭିତରେ ହାତ ଗଳାଇଛି। ତା' ହାତକୁ ରୂପାହାତ ଲାଗୁଛି ଉଷୁମ ଏବଂ ନିଜ ହାତ ହିମ ଶୀତଳ। ଟଳି ପଡିଛି ସିଏ। ବୋଲିଥିବା ଗୀତର ଗେଣ୍ଡାଳିଆ ଉଠିଯାଉଛି ଝାଡି ଦେଇ ପର। 'ରହ ରହ ଗେଣ୍ଡାଳିଆ, ଯିବୁ ବହୁ ଦୂର। ରଜାଝିଅ ବାହୁନୁଛି ଦେଖି ବୁଢ଼ାବର, ଆହା ଦେଖି ବୁଢ଼ା ବର।' ସରିଯାଇଛି ଗଳ୍ପ।

କାମ୍ୟୁଙ୍କ 'Nausea' (ଉପନ୍ୟାସ)ର ନାୟକ Rocquentin ପରି ଅନୁପମ ଜୀବନର ସାମ୍ନା କରିପାରିନାହିଁ। ସଂସାର ଓ ସମାଜ ତାକୁ nauseates କରିଛି। Yury Oleshaଙ୍କ ଉପନ୍ୟାସ 'Enevy' ନାୟକ Karalerov ପ୍ରକାଶ କରିଛି - How hard it is for me to live in the world. Nobody understands me'. ।

ଅନୁପମକୁ କେହି ବୁଝିପାରିନାହାନ୍ତି ! ବରଂ ସମସ୍ତେ ଭଲ ବୁଝିଛନ୍ତି ତା' ସମ୍ପତ୍ତିକୁ ଓ ତାକୁ ନିଷ୍କଣ୍ଟକ ଦଖଲ କରିବାକୁ। ଅନୁପମ ବି ବହୁ ନିନ୍ଦାର ଶରବ୍ୟ ହୋଇଯାଇଛି। William Golding ଲେଖିଛନ୍ତି ଉପନ୍ୟାସ 'Darkness Visible(1979)। ଏହିପରି ସ୍ଥିତିର ଶିକାର ତାଙ୍କ ଚରିତ୍ର Pedigree ବୃତ୍ତିରେ ଜଣେ ଶିକ୍ଷକ, ହୋଇଯାଇଛି ଅପରାଧୀ। ଚରିତ୍ର Sophie, ଅବହେଳିତ ଶୈଶବ ଓ ନଷ୍ଟପ୍ରେମ, ହୋଇଛି ବିବେକହୀନ ଅପରାଧୀ।

ତାଙ୍କର ଅନ୍ୟ ଏକ ଚରିତ୍ର Matty ସର୍ବଦା ବାଇବେଲ୍ ପଢୁଛି ଏବଂ ପୂର୍ଣ୍ଣତା ପଥରେ ଘୂରୁଛି ତା' ସ୍ୱୟଂସତ୍ତା । ତେଣୁ ସେ ହିଁ ପ୍ରାପ୍ତ ହୋଇଛି ଜୀବନର ସାର୍ଥକତା ! ଟିକି ବିକଳାଙ୍ଗ ଝିଅ ରୂପାର ସେଇ ଝାପ୍‌ସା ସଙ୍ଗ ହିଁ ଅନୁପମ ପାଇଁ ଅମୃତ । ତା' ଜୀବନକୁ କରିଛି ସାର୍ଥକ । ପରବର୍ତ୍ତୀ ଗଳ୍ପର ଶୀର୍ଷକ 'ନିର୍ବୋଧ' । ବାପାଙ୍କ ଏକାଦଶାହ ରାତ୍ରିରେ ମାଟି ଆଟିକାକୁ ମହାନଦୀରେ ବିସର୍ଜନ କରି ପିତୃସ୍ମୃତି ରୋମନ୍ଥନ କରୁଛି ଉପମନ୍ୟୁ ।

ବାପା ଖ୍ୟାତନାମା କମ୍ପାନୀର ଥିଲେ ଉଚ୍ଚପଦସ୍ଥ କର୍ମକର୍ତ୍ତା । ନିର୍ଦ୍ଦେଶକ ପଦବୀ ପର୍ଯ୍ୟନ୍ତ ଯାଇଥିଲେ । କିନ୍ତୁ ହାତୀ ସୁନାକଳସ ଢ଼ାଳିଥିଲା କମ୍ପାନୀ ମାଲିକ ଶ୍ରୀଯୁକ୍ତ ଅଗ୍ରୱାଲଙ୍କ ଅର୍ଦ୍ଧଶିକ୍ଷିତ ଓ ଅପଦାର୍ଥ ଜାମାତା ମସ୍ତକରେ । ଯୌତୁକ ସୂତ୍ରରେ ସିଏ ପ୍ରାପ୍ତ ହୋଇଥିଲେ ବାପାଙ୍କ ହକ୍ ପଦବୀଟିକୁ । ନିଜ ଭାଇଟିକୁ ନିର୍ଦ୍ଦେଶକ ପଦବୀରେ ବସାଇବା ପାଇଁ ମିଥ୍ୟା ଅର୍ଥ ତୋଷାରପାତ ଅଭିଯୋଗଟିଏ ଆଣିଥିଲେ ବାପାଙ୍କ ନାମରେ । ଅବଶ୍ୟ ଅଭିଯୋଗ ପ୍ରମାଣିତ ହୋଇନଥିଲା ।

ଉପମନ୍ୟୁ ପଢୁଥିଲା ଦିଲ୍ଲୀରେ, ହଠାତ୍ ଖବର ଗଲା, ବାପାଙ୍କ ହାର୍ଟ ଆଟାକ୍ ଓ ବାମପଟ ଶରୀର ହୋଇଯାଇଛି ପାରାଲିସିସ୍ ।

ବାପାଙ୍କ ବଦ୍ଧମୂଳ ଧାରଣା ଥିଲା, ସିଏ ପରର ଉପକାର କରିଛନ୍ତି ଜୀବନ ତମାମ । ତେଣୁ ତାଙ୍କ ଦୁର୍ଦ୍ଦିନରେ ଈଶ୍ୱର ତାଙ୍କୁ ସାହାଯ୍ୟ କରିବେ । ବାପାଙ୍କ ଏଇ ଜ୍ୟାମିତିକ ସିଦ୍ଧାନ୍ତ ବାସ୍ତବରେ ପ୍ରମାଣିତ ହେଲା ଭୁଲ୍ । ତାଙ୍କ ଜୀବନଦର୍ଶନ ପ୍ରତି ନିୟତିର ଏହି ନକାରାତ୍ମକ ପରିହାସ ତାଙ୍କ ଆତ୍ମାକୁ ଦେଲା ଗଭୀର ଧକ୍‌କା । ପୀଡିତ ଆତ୍ମା ଶରୀର ପଞ୍ଜୁରୀକୁ କଲା ତ୍ୟାଗ । ମୂଲ୍ୟବୋଧର ମୃତ୍ୟୁପରେ ଆଉ କ'ଣ ଦରକାର ଥିଲା ତାଙ୍କର ତୁଚ୍ଛା ଏଇ ବଞ୍ଚିବା ?

ରକ୍ତ ନିଗାଡି କାମ କରିଥିବା ନିଷ୍ଠାପର ଲୋକଟିକୁ ଦିଆଯାଇନାହିଁ ପଦୋନ୍ନତି । ମିଥ୍ୟା ଅଭିଯୋଗରେ କରାଯାଇଛି ଅଭିଯୁକ୍ତ । ଅବସର ପରେ ମିଳିନାହିଁ ନ୍ୟାଯ୍ୟପ୍ରାପ୍ୟ । ତାଙ୍କ କାର୍ଯ୍ୟ ଦକ୍ଷତାକୁ ଦିଆଯାଇନାହିଁ ସ୍ୱୀକୃତି । ଚିକିତ୍ସା ପାଇଁ ଅର୍ଥର ଆବଶ୍ୟକତା ଥିଲା; ତାହା ମିଳିନାହିଁ ।

ବିଦ୍ରୋହ କରି ଉଠିଛି ଉପମନ୍ୟୁ ମନ: 'ମୁଁ ବାପାଙ୍କ ପରି ଭଲ ମଣିଷ, ସାଧୁ ସଚ୍ଚୋଟ ମଣିଷ, ସରଳ ମଣିଷ କେବେବି ହେବି ନାହିଁ କାରଣ ସେମିତି ମଣିଷ କୌଣସି ଶାସ୍ତ୍ର ପୁରାଣ ବା ଗଳ୍ପ ଉପନ୍ୟାସର ନାୟକ ହୋଇପାରେ । ଘୋଡା

ଦୌଡରେ ସାମିଲ୍ ହୋଇଥିବା ରକ୍ତମାଂସର ମଣିଷ ପାଇଁ ତାର କୌଣସି ଯୁଗୋପଯୋଗିତା ନାହିଁ।'

ରାତି ପାହିଯାଇଛି। ଘରକୁ ଫେରିଲାବେଳେ ଶୁଣୁଛି ଗୋଟିଏ ସ୍କୁଲରେ ପିଲାମାନେ କରୁଛନ୍ତି ପ୍ରାର୍ଥନା: 'ଏତିକି ମାଗୁଛି ଠାକୁରେ କିଛି ମାଗୁନି ଆଉ/ ଭଲ କାମ କରି ସଭିଙ୍କ ମୋର ଜୀବନ ଯାଉ'।

ସିଏ ପ୍ରବେଶ କରିଛି ପ୍ରଧାନ ଶିକ୍ଷକଙ୍କ କକ୍ଷରେ ଏବଂ ପ୍ରଶ୍ନ କରିଛି - ଆପଣ କ'ଣ ସତ୍ୟଯୁଗର ରାମ? ଏମିତି ଏକ ଯୁଗର ପରିପନ୍ଥୀ କାଞ୍ଚନିକ ଜୀବନଦର୍ଶନ ଛୋଟ ଛୋଟ ପିଲାଙ୍କ ମୁଣ୍ଡରେ ପୁରାଉଛନ୍ତି କାହିଁକି? ଏହା ବଦଳରେ ଶିଖାନ୍ତୁ - 'ହାମ୍ ହୋଙ୍ଗେ କାମିୟାବ' ବା 'ପାପା କହତେ ହେଁ ବଡ଼ା ନାମ୍ କରେଗା' ଭଳି ଗୀତ।

ଏକ ପକ୍ଷରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅଗ୍ରଗତି ଓ ଜୟଯାତ୍ରା ଏବଂ ଅନ୍ୟ ପକ୍ଷରେ ସ୍ୱାର୍ଥ ସର୍ବସ୍ୱତା, ବିଫଳତା, ହତାଶ, ଅସହାୟତା ଓ ବିକୃତିର ଟୀକା ମଣିଷ ଜାତି ମସ୍ତକରେ ଧାରଣ କରିଛି। ତାହାରି ପ୍ରତିନିଧିତ୍ୱ କରିଛି 'ନିର୍ବୋଧ' ଗଳ୍ପଟି 'ଶୁଭାକାଂକ୍ଷା' ଓ 'ନିର୍ବୋଧ' ପରି ପରବର୍ତ୍ତୀ ଗଳ୍ପ 'ସ୍ୱୀକାରୋକ୍ତି'ରେ ମଧ୍ୟ ଚରିତ୍ରର ଜୀବନ ବିରୋଧାଭାସ ଉପରେ ଆଧାରିତ। ସ୍ତୂପୀକୃତ ଆକାଂକ୍ଷା ଚରିତ୍ର ମେରୀର ତଣ୍ଟି ପାଖରେ ଅଟକି ରହିଚି ଯେମିତି ଓ ସେହି ଜ୍ୱାଳାରେ ସିଏ ଜଳୁଛି ସାରା ଜୀବନ। ସିଏ 'କନ୍‌ଫେସନ୍' କରିଛି ତା' ଛାତି ଉପରେ ପଥରପରି ଲଦି ହୋଇ ରହିଥିବା ଭାବନାକୁ ହାଲୁକା କରିବାକୁ। ତା' ପାଇଁ ଈଶ୍ୱର ତା' ମା'ଙ୍କ ମୁହଁରେ ଝଲସୁଥିବା ସେହି ସ୍ୱର୍ଗୀୟ ଦ୍ୟୁତିକୁ ସିଏ କରିଛି ସ୍ୱୀକାର। ସିଏ ରବିବାର ଦିନ ଚର୍ଚ୍ଚକୁ ଯାଉଛି, କ୍ୟାଣ୍ଡେଲ ଜାଳୁଛି, କୟେର ଗାଉଛି, କିନ୍ତୁ ତା'ର ପ୍ରାର୍ଥନା କରିବାକୁ ନାହିଁ କିଛି। ନାହିଁ କିଛି ପ୍ରାପ୍ତିର ଆଶା ବା ଅତୃପ୍ତିର ଅବଶୋଷ ନାହିଁ କିଛି - ଏପରି ଏକ ଅତୀନ୍ଦ୍ରିୟ ଚେତନାକୁ ସ୍ଥିତି ତାକୁ ଟେକି ନେଇଛି।

ମେରୀ ତା' କନ୍‌ଫେସନ୍‌ରେ ଗୋଟିଏ ସାମାଜିକ ସତ୍ୟ ଉଦ୍‌ଘାଟନ କରିଛି। ତାହା ହେଲା - ନିଜର ସ୍ୱାର୍ଥକୁ ବନ୍ଧୁ ପରିଜନଙ୍କର ସ୍ୱାର୍ଥ ଅପେକ୍ଷା ପ୍ରାଧାନ୍ୟ ଦେଲେ ବ୍ୟକ୍ତି ହୁଏ ଜୀବନରେ ସୁଖୀ ଓ ହୁଏ ସଫଳ। ସମସ୍ତଙ୍କ ମନନେଇ ସାଥିରେ ଜୀଇବା ମଣିଷ ହିଁ ହୁଏ ଦୁଃଖୀ। ତା' ସୁଖ, ଆଶା ଓ ଅଭିଳାଷକୁ ଦେବାକୁ ପଡେ ବଳି। ତା'ର ଉଦ୍‌ଘାଟିତ ଅନ୍ୟ ସତ୍ୟଟି ହେଲା - 'ମୁଁ ଜଣେ ଅତ୍ୟନ୍ତ ସାଧାରଣ ମଣିଷ, ଅସାଧାରଣ ହେବାର ଅଭିଳାଷ ହିଁ ଥିଲା ମୋର ଭୁଲ୍'।

ତେଣୁ ସ୍ୱପ୍ନଭଙ୍ଗ ରତ୍ନର ବେଦନା ତିଳ ତିଳ କରି ତା' ଅନ୍ତରାତ୍ମାରେ ଜାଳୁଥିଲା ଅତୃପ୍ତି ଓ ଅବଶୋଷର ଜ୍ୱାଳା ।

ସବୁ ଯନ୍ତ୍ରଣାରୁ ଚିରସ୍ଥାୟୀ ମହାମୁକ୍ତି ମୃତ୍ୟୁରେ ହିଁ ତା'ର ଶାନ୍ତି ପାଇଁ ସିଏ ଉତର ଷାଠିଏ ବର୍ଷ ବୟସରେ କରିଛି କନ୍‌ଫେସନ୍ । କେତେ ନିଃସଙ୍ଗ, ବୈଚିତ୍ର୍ୟହୀନ ଓ ନିସ୍ତରଙ୍ଗ ତା'ର ଜୀବନ ! ! କେବଳ ଜଣେ ସଫଳ ଶିଳ୍ପୀଙ୍କ ହସ୍ତରେ ହିଁ ହୁଏ ଏପରି ଗଳ୍ପ ଉତ୍କୀର୍ଣ୍ଣ । ଦେବ୍ରାଜ ଲେଙ୍କାଙ୍କ କହିବା ବଡ଼ ଯଥାର୍ଥ – 'ମୁଁ ଯେତେବେଳେ ମାଗାଜିନ୍ ଖୋଲେ, ଦେବାଶିଷଙ୍କ ନାଁ ଦେଖିଲେ ଚମକି ଯାଏ ଏବଂ ଗୋଟିଏ ଷ୍ଟୋରୀ ପଢ଼ିବାକୁ ଯାଉଛି ବୋଲି ନିଜକୁ ପ୍ରସ୍ତୁତ କରି ନିଏ' ।

ଅନ୍ୱେଷା, ଅନୁସନ୍ଧିତ୍ସା, ଗଂଭୀରତା ଓ ସାବଲୀଳ ଗଭୀରତାରେ ପୂର୍ଣ୍ଣ ଦେବାଶିଷଙ୍କ ଗାଳ୍ପିକତା । ବିରୋଧାଭାସୀ ଜୀବନ ଚିତ୍ରଣରେ ତାଙ୍କ ସଂକଳିତ ପ୍ରାୟ ସବୁତକ ଗଳ୍ପର କାନ୍‌ଭାସ ମୋକ୍ଷପ୍ରାପ୍ତ ।

ସବୁ ଗଳ୍ପରେ ଦେବାଶିଷଙ୍କ ଗଦ୍ୟ କବିତ୍ୱ ପୂର୍ଣ୍ଣ ଏବଂ କବିତ୍ୱପୂର୍ଣ୍ଣ ଗଦ୍ୟ ହିଁ କଥା ସାହିତ୍ୟ ରଚନା ପାଇଁ ସର୍ବୋତ୍କୃଷ୍ଟ । ଆର୍ଣ୍ଣୋଲଡ୍ ଲେଖିଛନ୍ତି, ସାହିତ୍ୟ ଜୀବନର ସମାଲୋଚନା ! ପ୍ରକୃତରେ କେବଳ ସମାଲୋଚନା ନୁହେଁ, ଆଲୋଚନା ଓ ଆଲେଖ୍ୟ ମଧ୍ୟ ! ଦେବାଶିଷଙ୍କ ଗଳ୍ପରୁ ସୁନ୍ଦର ଭାବେ ଏହାକୁ କରି ହୁଏ ଅବବୋଧ ।



# ସୈରିନ୍ଧ୍ରୀ ସାହୁଙ୍କ କାବ୍ୟିକ ବୀକ୍ଷା: ସୃଷ୍ଟିର ସ୍ନାୟୁ ଓ ଶବ୍‌ଦର ଆତ୍ମା

## ଅମୂର୍ତ୍ତର ଅମୃତ ଅନୁଭବ !

ଓଡିଆ କବିତାର କଳ୍ପଲୋକକୁ ସମୃଦ୍ଧ କରାଇଛନ୍ତି ସୈରିନ୍ଧ୍ରୀ ସାହୁ ସମର୍ପିତ କରି ଚାରୋଟି ସ୍ୱରଚିତ ସାରସ୍ୱତ କୃତିତ୍ୱ। ତାଙ୍କ ପ୍ରଥମ ସୃଷ୍ଟିଶ୍ରୀ 'ଅନ୍ୱେଷା'; ତିରିଶଟି କବିତାର ବସନ୍ତ ନାଭିସ୍ଥ ସୁଗନ୍ଧର ଅନ୍ୱେଷଣରତ। କବୟିତ୍ରୀଙ୍କ କାବ୍ୟିକ ଚେତନା ଯେମିତି ଏକ କସ୍ତୁରୀମୃଗ ! ଏହାର ଉତ୍ତରଣ ସୋପାନର ଶୀର୍ଷକ 'ସଖା'; ଏକରୁ ବୟାଳିଶଟି ଏପିସୋଡ, ସୁଦୀର୍ଘ ଷାଠିଏ ପୃଷ୍ଠା ! ଚେତନାର ମୃତ୍ତିକା ଦୀର୍ଣ୍ଣ କରି କବିତାର ଗିରିକନ୍ୟା ରଚିଛି ଅଭୀପ୍ସା, ଅଭିଳାସ ଓ ଅପେକ୍ଷାର ମଧୁରତମ ଯଂତ୍ରଣାର ବନ୍ୟା ! 'ସଖା'... 'A voice so ne'er was heard / In spring time from the cuckoo bird/Breaking the silence of the seas'...(Wordsworth)। ମତାମତ ରହିତ ପବନରେ ବାନ୍ଧି ହୋଇଯାଏ ଓଷ୍ଠ। କବିତା ତ ନୁହେଁ, ଶବ୍ଦରେ ତିଆରି ଅମ୍ଳାନ ପାରିଜାତ ପୁଷ୍ପ ! ଫର୍ଦ୍ଦ ଖୋଲି ଦେଲେ 'And paradise was opened'...., (Dryden), ଉନ୍ମୋଚିତ ହୋଇଯାଏ ନାଂଦନିକ ତୃପ୍ତିର ଠିକଣା। 'The heart's echos render / No song when the spirit is mute: (Shelly) ପଂକ୍ତି ଉପରେ ପହଂରିଲେ ଦୃଷ୍ଟି ହୃଦୟ ଭିତରେ ଉଠେ ପ୍ରତିଧ୍ୱନି। କବିତା ନୁହେଁ, କମନୀୟ ଶବ୍ଦଶିଳ୍ପ, ଆତ୍ମାକୁ କରିଦିଏ ସ୍ତବ୍ଧ ! 'A lovely apparition, sent / to be a moment's ornament' (Wordsworth) ! ଏକ ସୁଂଦରତମ ଆକସ୍ମିକ ଆବିର୍ଭୂତ ସୁବାସ ମୁହୂର୍ତ୍ତମାନଙ୍କୁ କରେ ଅଳଂକୃତ ! ଓଃ, କି ଅମୀୟବୋଳା ସେ ଡାକ ! ସୈରିନ୍ଧ୍ରୀଙ୍କ ସାର୍ଥକ କାବ୍ୟିକ ପଲକ ଓ ପୁଲକ ! ବିଶ୍ୱାସର ଯେଉଁ ମଗ୍ନତାରୁ ଦୀପ୍ତ ହୋଇ ଭୁଲି ଯାଇଛି ନିଜକୁ, ଉପେକ୍ଷା ଓ ଅପେକ୍ଷାରେ ବ୍ୟାପ୍ତ ହୋଇ ଉତ୍ତରଣରେ ସମର୍ପିଛି ସ୍ମୃତି ଓ ପ୍ରତିଶ୍ରୁତି 'ଫେରିଆସିବି' ! ସତେରେ ଆଉ ଥରେ କ'ଣ ଫେରି ଆସେ ଲେଉଟିଲା ଆୟୁଷ ? ଆଉ ଥରେ କ'ଣ ଫେରି ଆସେ ଭାଙ୍ଗିଗଲା ବିଶ୍ୱାସ ବା ପ୍ରଶ୍ୱାସର ସିଲଟ ? ଆଉ ଥରେ କ'ଣ ଫେରି ଆସିଥାଏ ସ୍ରୋତସ୍ୱତୀ ସ୍ରୋତ ମୁହଁରେ ଚାଲି ଯାଇଥିବା ପ୍ରବାହ ? ଗୋଟିଏ ଅସରନ୍ତି ଶୋଷର ଶୂନ୍ୟସ୍ଥାନ ନିଃସର୍ଗ ସବୁଜ ପଲ୍ଲବରେ ପୂର୍ଣ୍ଣ ହେବା କ'ଣ ସମ୍ଭବ ?

ରଂଗ ବହୁବିଧ, ହୁଏ ବିସ୍ତାରିତ। ସୌନ୍ଦର୍ଯ୍ୟ ହୁଏ ମର୍ମରିତ। କୀଟସ୍‌ଙ୍କ 'The journey homeward to habitual self'। ନିଃସଙ୍ଗ ଭାବନା ଭିତରେ ସୁଖର ସ୍ୱର୍ଗୀୟ ଝରଣା ପ୍ଲାବିତ କରିଛି 'Portions and parcels of the dreadful past' (Lotus Eaters)। 'ଫେରିଆସିବି'ରେ ସୈରିନ୍ଧ୍ରୀଙ୍କ ଡାଇନାମିକ୍ ଭିଜନ୍ (dynamic vision) ପୋଏଟିକ ଇଂଟେଲିଜେନ୍ସକୁ ପଛପଟେ ରଖିଦେଲାପରି ବୋଧ ହୋଇଛି। ମାତ୍ର ତାଙ୍କ କବିତା 'discovery of Beauity'। ତହିଁରୁ ସ୍ପଷ୍ଟ ଉପଲବ୍ଧି କରିହୁଏ ବିସ୍ମୃତ ଉତ୍ତରଣ। ଆନଂଦ ବା ବିଭୂତି ଏହାର ସତ୍ତାରେ ସ୍ୱୟଂ ଅଭିବ୍ୟକ୍ତ। ସୁଷମା ଓ ତାଙ୍କ କଳାରେ ଆଉ ଯାହା ସାମ୍ନାକୁ ଆସେ ତାହା ତାଙ୍କ କବିତାର aesthetic value ନାଂଦନିକ ପୂର୍ଣ୍ଣତା !

## ସୈରିନ୍ଧ୍ରୀ ଓ ଶେଲୀ: ଅନୁପମ ଶବ୍ଦ ସୌଦାର ଏକ ଅବବୋଧ

ପୂର୍ବରୁ ପତ୍ରିକାପୃଷ୍ଠାମାନଙ୍କରେ ସୈରିନ୍ଧ୍ରୀଙ୍କ କବିତ୍ୱକୁ ଭେଟିଚି। ଯେତେବେଳେ 'ଫେରିଆସିବି' ସଂକଳନଟିକୁ ଚଳିତ(୨୦୦୭) ମଇମାସର ମଧ୍ୟାହ୍ନରେ ଭେଟିଲି, କବିତାଗୁଡ଼ିକର ଆତ୍ମୀକ ଗୀତିମୟତା ମତେ କରେ ପୁଲକିତ ଓ ଚମତ୍କୃତ। ମୋର ମନେ ପଡ଼େ ଆଲୋଚକ ଗ୍ରାହାମ ହଫ୍‌ଙ୍କ ପଂକ୍ତି 'Shelley's genius is primarily by lyrical'। ପୁନଶ୍ଚ ଏହା ପ୍ରଦର୍ଶିତ କରେ 'mixture of speculation, the elaboration of a private mythology and the element of song' ତାଙ୍କ କବିତାର ବିଭାବ ଓ ବୈଭବ। ପ୍ରମେଥିଅସ୍‌ରେ ତାଙ୍କ ଯେଉଁ 'A joy has taken flight / Fresh spring;' (Shelley) ପାଠକ ଭେଟନ୍ତି, ସେଇ ବୌଦ୍ଧିକ ଔଜଲ୍ୟ ଓ ପ୍ରଫୁଲ୍ଲ ଜ୍ୟୋତିର ରେଖା 'ଫେରି ଆସିବି'ରେ ମୋ ଦୃଷ୍ଟିରେ ପଡ଼ିଛି। Tom moore ଙ୍କ ଶବ୍ଦରେ 'A tone / Of some world far from ours / Where music and moonlight and feelings / Are one'ଗୀତିମୟତା ଓ ଜହ୍ନ ଆଲୁଅ ଯେଉଁଠି ହୋଇଯାଇଛନ୍ତି ଏକ। ଦୂରଂତ କେଉଁ ସ୍ୱପ୍ନାଲୋକରୁ ଉତ୍ତର ଆଧୁନିକତା ଫେରୁଚି ଆମ ପ୍ରଶ୍ୱାସ ଓ ସେଣ୍ଟିମେଣ୍ଟକୁ। ଶବ୍ଦ ସବୁ ଅନୁଭବର ଭ୍ରାମ୍ୟମାଣ ମଂଦ ମଳୟ, ବୁଝୁ ନାହାନ୍ତି ତର୍କକୁ, ବରଂ ଉଚ୍ଚକୋଟିର କଳ୍ପନା ବିଳାସକୁ ସୃଜନଶୀଳ ସ୍ୱଭାବ୍ କରିଛି ଛଂଦମୟ। ମଧୁର ବୃତ୍ତର ପରିଧିରେ ଅନୁଭବ ଓ ଭାବ ଗ୍ରହଣ କରିଛନ୍ତି ଶିଳ୍ପରୂପ। 'ଫେରି ଆସିବି' କବିତା ନୁହେଁ, a story of human passion...'.। ତେଣୁ ମୁଁ ଭାବିଲି, ଏହାକୁ ସୈରିନ୍ଧ୍ରୀ ଲେଖିନାହାନ୍ତି ଲେଖିଛନ୍ତି ଶେଲୀ। ଯଦି ସୈରିନ୍ଧ୍ରୀ ଲେଖିଛନ୍ତି, ତେବେ ଶେଲୀ ସୈରିନ୍ଧ୍ରୀ ରୂପରେ ପୁଣି ଥରେ ଜନ୍ମ ନେଇଛନ୍ତି ? ସ୍ୱର୍ଗୀୟ

ଭଲ ପାଇବାର ଅନୁପମ କାକଳୀରେ ପରିପୂର୍ଣ୍ଣ ହୋଇ ଉଠିଛି ଶୁଷ୍କପତ୍ର, ଗିରିଚୂଳ, ପଶ୍ଚିମାପବନଠୁ ଆରମ୍ଭ କରି ନିଦାଘର ସ୍ୱପ୍ନ । ସବୁଠି ଶୁଭିଚି ମଧୁର ଆବେଗ ଓ ସୁଖ ସଂପର୍କର ସ୍ୱର । ମାନବିକତାର ସ୍ଫୁଲିଙ୍ଗ ଓ ସ୍ପର୍ଶ ଅଚିହ୍ନା ପରିବେଶକୁ କରେ ଆତ୍ମୀକ ଓ ମହତ । ପାର୍ଥିବ ଜୀବନରେ, ସାମାଜିକ ବଂଧନର କାରାଗୃହରେ, ସୁଖୀ ହେବା ପାଇଁ ସରାଗିଆ ବସ୍ତୁ ମିଳେନାହିଁ ! ମିଳେ ନାହିଁ ସୁବର୍ଣ୍ଣ କୁଳେଇ । ସ୍ୱର୍ଗର ଚଂାଦ ମିଳେ ନାହିଁ । ସେଇଥି ପାଇଁ କାବ୍ୟିକ ଯାତ୍ରାର ଉନ୍ମେଷରେ ଉଚ୍ଚାରଣ କରିଛନ୍ତି କବୀ: 'ଖୋଜିଲେ ପାଇବି ନାହିଁ/ଜାଣିଚି ବୋଲି / ଖୋଜିବା ପଣଟିକୁ ଥୋଇ ଦେଇଚି/ ସିଂଦୁକରେ' । (ଅନ୍ୱେଷା, ପୃଷ୍ଠା ୧) ଏକବିଂଶ ଶତକ ବୈଷୟିକ ମଣିଷର ଏଇ ଅନନ୍ୟୋପାୟ ସ୍ୱର । ଦୁଇଶତାଧିକ ବର୍ଷ ତଳେ ମଣିଷ ଉତ୍କଣ୍ଠା ଓ ତୃଷ୍ଣାର ସେଇ ସ୍ୱର ଶେଲୀଙ୍କ କଲମରେ : 'Like a poet hidden / In the light of thought / Singing hymns unbidden / Till the world is wrought / To Sympathy with hope and fears it heeded not:' (To a skylark) କିମ୍ୱା – ସାମ୍ନାକୁ ଅଣାଯାଇପାରେ 'Love's philosophy' ର ପଂକ୍ତି କେତୋଟି 'See the mountain kiss high heaven / And the waves clasp one another / No sister flower would be forgiven / If it disdained its brother; / And the sunlight clasp the earth / And the moonbeams kiss the sea: / What is all this sweet work worth / If thou kiss not me'? ଖୋଜିବା ପଣକୁ ଶେଲୀ ଦୁଇଶତ ବର୍ଷତଳର ସରଳ ଆବେଗରେ ବାଢ଼ିଦେଇଥିବା ବେଳେ ସଂଦିଗ୍ଧତା (Ambiguty)ର ସାବଲୀଳତାରେ ସୈରିନ୍ଧ୍ରୀ ତାହାକୁ ଆଙ୍କି ଦେଇଛନ୍ତି । ଶେଲୀଙ୍କ କଂଠରେ ରହିଛି ପ୍ରକୃତିର ଛବି ଏବଂ ଉଦାହରଣ । ସୈରିନ୍ଧ୍ରୀଙ୍କ ପଂକ୍ତିରେ ରହିଛି ମାନବୀୟ ପ୍ରକୃତି ଓ ମନସ୍ତତ୍ତ୍ୱର ଜ୍ୟାମିତି । କବିତାର କାଳ ଓ ଆଙ୍ଗିକ ଦୃଷ୍ଟିରୁ ଶେଲୀ ଥିଲେ ରୋମାଣ୍ଟିକ୍ । ସୈରିନ୍ଧ୍ରୀଙ୍କ କବିତାର ଆଧୁନିକତାରେ ଇଏଟସ୍, ଅଡେନ୍ ସ୍ପେଣ୍ଡର, ଡାଇଲାନ ଥୋମାସ୍, ସିସିଲ୍ ଡେ ଲୁଇସ୍, ଜର୍ଜବାର୍କର, ଭେରନୋନ୍ ୱାଟକିନ୍, ହେନ୍‌ରୀ ଟ୍ରୀସ୍ ଓ ଟେରୀନ୍‌ସି ଟିଲେର୍‌ଙ୍କ ଘଟିଥିବା ରୋମାଣ୍ଟିକ୍ ସର୍ଭାଇଭାଲ (Romantic Survival) ଘଟିଛି ।

'ଆଜି ତ ଆଉ ଜୀବନ ପାଇଁ ଲୋଡାପଡୁନାହିଁ/ ହଳଦୀମଖା ସକାଳ କି ସୋରିଷ କ୍ଷେତ/ମନକୁ ଚହେଲେଇ ପାରୁନାହିଁ/ ଅଚିହ୍ନା ଫୁଲର ମହକ କି ଝାଉଁବଣର ଗୀତ !'

(ଅନ୍ୱେଷା, ପୃଷ୍ଠା ୨୩)। ଉତ୍କଣ୍ଠା ଓ ଉତ୍ତେଜନାହୀନ, ଅଥଚ ଶାଣିତ, ଗୋଟିଏ ମଣିର ପ୍ରତିଫଳିତ ତେଜ ଯେମିତି ଧାଡିଗୁଡିକ ! ଠିକ୍ ଏମିତି ସ୍ପେଣ୍ଡରଙ୍କ ରୋମାଣ୍ଟିକ୍ ସର୍ଭାଇଭାଲ୍ ଧାଡି କେତୋଟି : 'Since we are what we are, what shall we be / But we are ! We are, we have/ Six feet and seventy years, to see / The light and then release it for the grave ./ We are not worlds, no , nor infinity.' । ସବୁ ସୀମିତ। ସେଇ ସୀମିତତା ଭିତରେ ଆବଦ୍ଧ ଜୀବନ। ମାନବିକତା ଅସୁସ୍ଥ, ଅସୁସ୍ଥ ସଂପର୍କ ! ସରାଗର ଶରଧାବାଲିରେ ଲମ୍ବିଲାଣି କଂକ୍ରିଟ କୃଷ୍ଣ ସଡ଼କ। ଝରାପତ୍ର ସ୍ଥାନରେ ଦେଖାଦେଲାଣି ନବଜନ୍ମର ସଂକେତ। ବ୍ୟକ୍ତିଗତ ସ୍ୱାର୍ଥ ଓ ସୌନ୍ଦର୍ଯ୍ୟର ଆଙ୍ଗିକକୁ ଜାଳି ଦେଲାଣି ସମୟ ଓ ଜ୍ୱର ! !

କହିବାର ନୂଆ ଗୋଟିଏ ବାଗ, ବିଫଳତା ପ୍ରକାଶର ଏକ ସଫଳ ଭାଷା, ନୂତନ ତିକ୍ତତାକୁ ରଙ୍ଗବୋଲି ଚିତ୍ର କରିଛି କବିତା। ଅନୁଭବର ସଠିକତାକୁ ଦୁଃସାହାସିକ ଭାବେ ପ୍ରଦର୍ଶିତ କରାଇଛି କଳାର କଳାପଟା। ସମକାଳୀନ ଭାଷା ଘଷରା ନ ହୋଇ ପ୍ରାପ୍ତ ହୋଇଛି ନବ ରୋଚକତା। ଭାବନା, ଅନୁଭବ ଓ ସୃଜନୀ ଏକତ୍ର ଶବ୍ଦରେ ହୋଇଯାଇଛନ୍ତି ବୋଲି : And every phrase / And sentence that is right (where every word is at home, xx / The common word exact with vulgarity / The formal word precise but not dedantic...)' (T.S. Eliot) । ସୈରିନ୍ଧ୍ରୀଙ୍କ ପ୍ରତ୍ୟେକ ବାକ୍ୟର ଗୋଟିଏ ଆରମ୍ଭ ଅଛି ଏବଂ ସମାପ୍ତି ବି ରହିଛି। ଭାବ ସହ ବାକ୍ୟର ବି ପୂର୍ଣ୍ଣତା ଘଟିଛି।

**'ଅନ୍ୱେଷା' : ଏକ ନୂତନ ପାରଦର୍ଶିତାର ଦିଶା**

'My search is at an end
In thee I behold all things
I myself, am God'.
- J. Krishnamurti

ମଣିଷ 'a poem of rose' ଗୋଲାପର ଏକ କବିତା। ସେଇ କବିତା ଖୋଜୁଚି କ'ଣ ? କସ୍ତୁରୀମୃଗ ଖୋଜେ କ'ଣ ? ଅନ୍ୱେଷାର ଅନ୍ତଥାଏ ? ଜେ. କ୍ରିଷ୍ଣମୂର୍ତ୍ତି ସତ୍ ଅନ୍ୱେଷୀ। ସେ ତାଙ୍କ ଅନ୍ୱେଷାର ଉପାନ୍ତରେ ଉପସ୍ଥିତ ହୋଇଛନ୍ତି, ଯେତେବେଳେ ନିଜର ସତ୍ତା ସମଗ୍ର ଜଗତର ବସ୍ତୁଚେତନା ଭିତରେ ତାଙ୍କର ଲୋପ ପାଇଯାଉଛି।'ଅହଂ' ହୋଇ ଯାଉଛି 'ତତ୍ ତ୍ୱମସି ! ସିଏ ଘୋଷଣା କରୁଛନ୍ତି ତାଙ୍କ କାବ୍ୟିକ ଚେତନାରେ 'ସୋଽହମ୍'। ଅହଂର ବିଭୂତି ମୁଁ ନିଜେ ! ମୁଁ ନିଜେ ନିଜର ଓ କବିତାର ଈଶ୍ୱର। ଏଣୁ

ସୈରିନ୍ଧ୍ରୀ ଖୋଜି ନାହାନ୍ତି ତପସ୍ୟାର ମୁଗ୍ଧ ଶିହରଣ (ଅନ୍ୱେଷା, ପୃଷ୍ଠା ୨) ! ସଂପ୍ରୀତିର ଅମୁହାଁ ଦେଉଳ କିମ୍ବା ଅର୍ଘ୍ୟଥାଳୀ। ଅନୁଭବର ସାତଟି ପଂକ୍ତି; ଯେମିତି ଇଂଦ୍ରଧନୁର ବର୍ଣ୍ଣ ସାତଟି ! ସବୁଠି ନିରୁତା ଓ ମୌଳିକତା। ଆତ୍ମଚେତନାର ଦୀପ୍ତଶିଖା ! 'ତମକୁ' ଖୋଜିବାର ମୁଦ୍ରିତ ତୃଷ୍ଣା ଭିତରେ ଭଉଁରି ଖେଳୁଚି ଜିଜ୍ଞାସା 'ଜୀବନ କାହାକୁ କହିବା ଆମେ /ତଳେ ବୁଲୁଥିବା ନଟୁ/ନା ନଟେଇରୁ କଟି ଯାଇଥିବା ଗୁଡ଼ି ? / ମାଣିକ୍ୟ ଖଂଜା ପାଟବସ୍ତ୍ରର ଅଭିମାନ !/ ନା ଅମାବାସ୍ୟାର ଜହ୍ନ' ? (ଅନ୍ୱେଷା ପୃଷ୍ଠା ୪) .... 'The named mystery under the familiar garment / be caged in words for singing' (Terence Tiller).

କବୀଙ୍କ ଏହା ଏକ ପ୍ରଶ୍ନ ନୁହେଁ, ସମସ୍ୟା ନୁହେଁ, ଅନ୍ତର୍ଦ୍ୱଂଦ୍ୱ ନୁହେଁ, ଏକ ନିରୋଳା ସତ୍ୟର ସମୀକରଣ ! 'What yet in this/That bears the name of life' ? ଇଲିୟଟ ବି ସେଇ ଅଚିହ୍ନା ସତ୍ୟଟିର ସାମ୍ନା କରିଛନ୍ତି ଥର ଥର କରି ବହୁଥର ତାଙ୍କ ବହୁକବିତାରେ: Oh, do not ask, 'What is it'? / Let us go and make our visit' । ନିଜ ସ୍ଥିତି, ସତ୍ୟର ଲଙ୍ଗଳା ସ୍ୱରୂପ, ଜୀବନର ବିମ୍ବକୁ କବିତାର ମୁକୁରରେ ପ୍ରତିଫଳିତ କରାଇଛନ୍ତି ଇଲିୟଟ:

'My life is light, waiting for the death wind
Like a feather on the back of my hand
Dust in sunlight and memory in corner
Wait for the wind that chills towords the dead land."

ପୁନଶ୍ଚ କଫି ଚାମୁଚରେ ଜୀବନକୁ ମାପୁଥିବା କାବ୍ୟପୁରୁଷ ଉଚାରଣ କରୁଛି 'Iam dying in my own death'! ଯେଉଁ ପରମ ବିସ୍ମୟର ନାମ ଜୀବନ, ତାକୁ ନିଷ୍ଠାର ସହିତ ସିଏ ଭେଟି ଚାଲିଛି: 'The pain of living and the drug of dreams / Curl up the small soul in the window seat / Behind the Encyclopaedia' । ନଟେଇରୁ କଟି ଯାଇଥିବା ଗୁଡ଼ି – The pain of living ଏବଂ ଅମାବାସ୍ୟାର ଜହ୍ନ the drug of dreams, ଏକ ପ୍ରକାର ପ୍ରତୀକ ଭିତରେ କବିତାର ଆଙ୍ଗିକ ଚକ୍‌ମକ । ଜୀବନର ଅନୁଭବ ଓ ଅବବୋଧ ସବୁକବି ସତ୍ତାଙ୍କର ଏକ ପ୍ରକାର। ଯେମିତି ସବୁ ଦେଶ ମଣିଷଙ୍କ କ୍ରଂଦନ ଏକ ପ୍ରକାର ! ଏକ ପ୍ରକାର ସବୁ ମଣିଷଙ୍କ ପୁଲକ ଓ ହସର ସ୍ୱର।

'ତମକୁ କୋଉଠି ଖୋଜିବି ର/ ପ୍ରଶ୍ନ ଭିତରେ ମନରେ ଥିବା / ଅନ୍ୱେଷାର ଅନ୍ତ ହେବ ନାହିଁ', ଏହାର ମନୋସ୍ତାତ୍ତ୍ୱିକ କାରଣ ହୁଏତ : Man's curiosity searches past and future / And clings to that dimension' (Bumt Norton / T.S. Eliot) ।

ଏଇ ଅନ୍ୱେଷାର ପ୍ରବୃତ୍ତି ମାନବୀୟ କୌତୁହଳରୁ ଉତ୍ପତ୍ତି ଏବଂ ଏହା ଏକ ମାନବୀୟ ସ୍ୱାଭାବିକ ପ୍ରକୃତି। ପ୍ରିୟ ମଣିଷଟିକୁ ପାଖରେ ପାଇବାକୁ ପ୍ରାଣ ଚିରକାଳ ବ୍ୟାକୁଳ ହୋଇଛି ଏବଂ ଖୋଜିଛି। ସ୍ନେହୀ ମଣିଷଟିର ସ୍ମୃତି ତାକୁ ଖୋଜିବାକୁ ବାଧ୍ୟ କରୁଛି। ଇଲିୟଟ ଲେଖିଛନ୍ତି. 'To lead you an over whelming question'..! ପୁନଶ୍ଚ 'Drop a question on your plate / Time for you and time for me'। ସେଇ ପ୍ରଶ୍ନଟି ଭିତରେ ବାନ୍ଧି ହୋଇ ରହିଛି କାବ୍ୟ ପୁରୁଷର 'drawing of this Love and the voice of this Calling' (Little Gidding / T.S. Eliot)। ଅନ୍ୱେଷା ଭିତରେ ମଧୁର ଅଭିଳାସର ସ୍ରୋତ ଫଲଗୁ ପ୍ରବାହିତ। ସାଥି ଖାଲି ନୁହେଁ, ବଂଚିବା ପାଇଁ ସହାନୁଭୂତିଟିଏ ଖୋଜୁଚି ଆଖି ! ନିଜ ସତ୍ତା ସହିତ ବିଚ୍ୟୁତ ସଂପର୍କକୁ ଅନୁରୂପ ସଂପର୍କରେ ପ୍ରବାହିତ ଓ ସଂଜୀବିତ କରିଛି ସ୍ମୃତି ? 'History may be servitude' ବୋଲି ତେଣୁ ଇଲିୟଟ ଲେଖି ଦେଇଛନ୍ତି।

'ସମସ୍ତେ ଏଠୁ ବିଦା ହେବା / ଦିନେ ନା ଦିନେ'। ... 'but this thing is sure/ That time is no healer : The patient is no longer here' (Four quartets).। ସମୟର ହାତରେ ସିଦ୍ଧାନ୍ତର ଗୋଲାପ; ମଉଳିବା ଧାର୍ଯ୍ୟ। .... ' The Garden / Where all love ends (Ash w‹dnesday / T.S. Eliot) ଏବଂ ଏଠି ମୁଁ ଯିଏ ଲୁକ୍‌କାୟିତ, ମୋ ବିସ୍ମୃତିକୁ ଯାଚୁଚି ! ସମୟକୁ ସମର୍ପିତ କରିଦେବାପରେ 'ଲିଭି ଲିଭି ଆସୁଥିବ ସ୍ମୃତିର ସୈକତ / ଅଭିମାନ ଅଭିନବ ଦୀପଶିଖା ହୋଇ / ଜଳୁଥିବ / କିନ୍ତୁ ଜୀବନଟା ଭାସି ଚାଲୁଥିବ/ ଅଦୃଷ୍ଟ ନଈରେ ହୋଇ ସୁନାର ବୋଇତ' (ଅବଧାରିତ / ଅନ୍ୱେଷା) ଦେହ ମାଟି ଦୀପ। ଜୀବନ ପ୍ରଜ୍ୱଳିତ ଜ୍ୟୋତି ତେଜ। 'ସୁନାର ବୋଇତ' ଏକ ଚମତ୍କାର ଚିତ୍ରକଳ୍ପ। ସୂଚାଇ ଦିଏ ସୈରିନ୍ଧ୍ରୀଙ୍କ କାବ୍ୟିକ କଳାରେ ପ୍ରୟୋଗର ନୂତନତ୍ୱ।

'ବ୍ୟସ୍ତତାର ଧୂଳି ଉଡାଇ ଯୋଉଠୁ/ବଂଧୁମାନେ ପଛକଲେ/ ସେଠି ସେଇ ଧୂଳି, ଧୂଆଁ ଆଉ ଅଭିମାନର / ତ୍ରିବେଣୀ ସଙ୍ଗମରେ / ଜଳ ବୃଷ୍ଟିର ଶବ୍ଦ ଶୁଭୁଥିଲା ମୋ ଭିତରୁ ଦେଖୁଥିଲି ନଈ ଉପର ମଝି ଆକାଶରେ/ଉଡୁଥିଲା ଏକ୍‌ଲା ଚଢେଇଟେ/ ଡେଣା ତାର ବିବଶ ନା ଥକି ପଡୁଥିଲା' (ପ୍ରିୟତମ ବଂଧୁ/ ଅନ୍ୱେଷା) ଆଶା ଗୋଟେ କାକ୍‌ଟସ ଗଛ। ସେଠି ଯେଉଁ ଅନ୍ୱେଷାର ପୁଷ୍ପ ବିକଶିତ ହୁଏ ତାହା କଂଟା କେବଳ। ପ୍ରତ୍ୟାଶାର ଠିକଣାଟି ଭୁଲ୍। ଏଠି ସମସ୍ତେ ନିଜ ନିଜ ବ୍ୟସ୍ତତାରେ ବ୍ୟସ୍ତ, 'In the room the women come and go/xx I have known them all ready known them all'! ବ୍ୟସ୍ତତାର ଧୂଳି ଉଡେଇ ସେମାନେ ଆସୁଥିଲେ ଏବଂ ଫେରୁଥିଲେ। ସୈରିନ୍ଧ୍ରୀଙ୍କ କାବ୍ୟପୁରୁଷ ଯେତେବେଳେ ସେମାନଙ୍କୁ ଚିହ୍ନିଲା ତା' ଭିତରୁ ଜଳବୃଷ୍ଟିର ଶବ୍ଦ ଶୁଭିଲା। ଯେମିତି ସିଏ କାମ୍ୟୁଙ୍କ 'ଆଉଟସାଇଡ଼ର'। 'ଜଳବୃଷ୍ଟି' ଶୋକାକୁଳର ସିଂବଲ୍। ସମୟର ନଈ

ଉପରେ ଏକେଲା ଚଢେଇଟେ ଯେତେ ବେଳେ ଚକ୍‌କର କାଟୁଥିଲା; ସିଏ କେତେ ନିଃସଙ୍ଗ !! ଅଥଚ ଧୂଳି ଓ ଧୂଆଁ ଭିତରେ ଅଭିମାନ ଫେଣ୍ଟି ହୋଇ ଗଢ଼ି ଉଠିଚି ଗୋଟିଏ ତୀର୍ଥ; ପବିତ୍ର ମାନସିକତାର ପ୍ରତୀକ। ଏହି କବିତାର ଉତ୍ତରଣରେ ଦୃଷ୍ଟିଗୋଚର ହୁଏ: 'ବନ୍ଧୁତ୍ୱର ଆଲୋକରେ ଆଲୋକିତ ହେବା ପାଇଁ / ଜହ୍ନ ହୋଇଥିବି/ କି ଅଗଣା ଲିପି ସଜାଡି ଥିବି ପିଢ଼ା' !!

ବଂଧୁତ୍ୱ ଏକ ସୂର୍ଯ୍ୟ, ତା' ଆଲୋକ ଜହ୍ନରେ ପ୍ରତିଫଳିତ ହେଲେ ଜହ୍ନ ହୁଏ ଆଲୋକିତ ଏବଂ ରଜତ ଜ୍ୟୋତ୍ସ୍ନା କରେ ବିତରିତ। ତା'ରି ସ୍ୱାଗତ ପାଇଁ ଅଗଣା ଲିପି ପିଢ଼ା ସଜାଡି ବସିବ କାବ୍ୟପୁରୁଷ! ହୃଦୟ ପାଖରେ ଥିବା ମଣିଷଟି ଯେତେବେଳେ ଅଲଗା ହୋଇ ଯାଏ, ବିଶ୍ୱସ୍ତତା ପ୍ରତି ଆଦର ରଖେନି ଇଲିୟଟଙ୍କ 'Gerontion'ର ଚରିତ୍ରଟିର ଅବସ୍ଥା ହୁଏ ଏହି ପ୍ରକାର : I have lost my sight, smell, hearing, taste and touch:/ How should I use them for your closer contact'? ପ୍ରତୀକ୍ଷା ଓ ପ୍ରତ୍ୟାଶା ଏକ ପ୍ରକାର। ବଂଧୁହୀନତାର ଯନ୍ତ୍ରଣା ଏକ ପ୍ରକାର। ବ୍ୟକ୍ତିଗତ ଅନୁଭବର ଚିତ୍ରକଳ୍ପରେ ଇଲିୟଟଙ୍କ କାବ୍ୟିକ ଉନ୍ମାଦନା ବଳିଷ୍ଠ ହୋଇ ଥିବା ବେଳେ ସୈରିନ୍ଧ୍ରୀଙ୍କ ଅନୁଭବର ଚିତ୍ରକଳ୍ପ 'ଜହ୍ନ ହୋଇଥିବି' ଓ ଅଗଣା ଲିପି ସଜାଡିଥିବି ପିଢ଼ା' ପ୍ରଭୃତି ଆର୍କିଟାଇପ୍ ସାମାଜିକ, ଉତ୍କଳୀୟ ସାଂସ୍କୃତିକ ଏବଂ ସାମୂହିକ।

'ସମୟ' କବିତାରେ ସମୟ ଉପରେ ବଡ଼ ପ୍ରତ୍ୟୟଶୀଳ କବୀ। ସମୟ ସର୍ବଶକ୍ତି ସମ୍ପନ୍ନ, ସମୟ ଯେମିତି ମହାବଳୀ! ସମୟ ନିଜେ ଅଦୃଷ୍ଟ। କେତେବେଳେ କାହା ପାଇଁ ଖୋଲି ଦିଏ 'ଲୁହ ଓ କୋହ'ର ଜାଉଁଳି କବାଟ! କବୀଙ୍କ ବିଶ୍ୱାସ, କେବଳ ସମୟହିଁ ଆଣିପାରେ ଆଲୋକିତ ବୈଦୂର୍ଯ୍ୟର ମୁକ୍ତ ରାଜିନାମା! ସମୟର ଶୁଭ ସ୍ରୋତ ହିଁ ବୋହି ଆଣି ଥାଏ ସୁଖର ବୋଇତ ଏବଂ ରୁଷ୍ଟ ସମୟ ଦେଇ ଥାଏ ଦୁଃଖ।

ଉତ୍କଳ ଲଳିତ କୋମଳ କାନ୍ତ ପଦାବଳୀ ରଚନାର ଭୂମି। ଏକାଦଶ ଶତକର କବି ଜୟଦେବଙ୍କ ଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ସୃଷ୍ଟି କବିତାର ଭୂମିରେ ରହିଛି ଲାଳିତ୍ୟ ଓ ସାଂଗୀତିକତା। ସେଇ ସାଂଗୀତିକତା ଓ ଭାଷାଗତ ଲାଳିତ୍ୟର ପରଂପରାକୁ ଆଧାର କରି ଗଢ଼ି ଉଠିଛି ସୈରିନ୍ଧ୍ରୀଙ୍କ କୃତିତ୍ୱ। ପୁନଶ୍ଚ ତାଙ୍କ ଦୃଷ୍ଟିରେ ପ୍ରତିମୁହୂର୍ତ୍ତରେ କ୍ରୀଡା ରଚୁଛି ଦର୍ଶନର ରଂଗ। ଜୀବନ ଦର୍ଶନରେ ସଂସାରର ଅଳୀକତାର ଚିତ୍ର ଅହରହ ଉତ୍କୀର୍ଣ୍ଣ। 'ସମୟର ସ୍ରୋତ ଧାଉଁଚି କିପରି / ଭେଟିବାକୁ ମୃତ୍ୟୁସିଂଧୁ କରାଳ ଲହରୀ' ପ୍ରାୟ ଅନେକଠି ସିଏ କରିଛନ୍ତି ଚିତ୍ରିତ।

'ଯିବାକୁ ପଡିବ ବୋଲି/ ମୁଠେଇ ଧରିବି କାହାର ପଣତ/ କୋଉଠି ଲୁଚେଇବି କାୟା/ କୋଉଠି ସଜାଡି ରଖିବି ସ୍ୱପ୍ନକୁ/ କାହାକୁ ସମର୍ପି ଯିବି/ ମୋର କାଲି, ଆଜି ଆଉ

ଆସନ୍ତା କାଲିକୁ ?' (ଯିବାକୁ ପଡିବ ବୋଲି) । ପୁନଶ୍ଚ - 'ଏବେ ନଇଁ ଆସୁଚି ସଂଜ/ ଟିକେ ପରେ/ ସଂପୂର୍ଣ୍ଣ ଅନ୍ଧାର ଛାଇ ଯିବ/ ଆକାଶରେ, ପୃଥିବୀରେ / ସାରା ଜୀବନରେ' (ଅନ୍ଧାର) । ନିଜ ଚେତନାରେ ମାନବ ଯେମିତି ଶିଶୁଟିଏ; ନ ଯିବା ପାଇଁ ଆଶ୍ରୟ ନେବ କାହାର ପଣତ ! ବୋଉର ପଣତ ମୁଠେଇ ଧରି କହିବ, ନାଁ, ମୁଁ ଆଜି ସ୍କୁଲକୁ ଯିବିନି ! ଗଣିତ କରିନି, ସାର୍ ମାରିବେ ! କିନ୍ତୁ ସଂସାର ତ ଜାତସ୍ୟ ହି ଧ୍ରୁବ ମୃତ୍ୟୁଃ ! ଯିବାକୁ ପଡିବ ! ହରିଂଦ୍ର ନାଥ ଚଟ୍ଟୋପାଧ୍ୟାୟ ଗୋଟିଏ କବିତାରେ ଲେଖିଛନ୍ତି : 'Why all this struggle / .... man is in the coffin of life / And life is the cradle of death?' ମୃତ୍ୟୁକୁ ଅତି ସହଜ ଭାବରେ ଗ୍ରହଣ କରିଥିବା ବିଶ୍ୱର ଏକମାତ୍ର କବି ସିଲ୍‌ଭିଆ ପ୍ଲାଥ ତାଙ୍କ 'ଲେଡ଼ୀ ଲାଜାରସ୍' କବିତାରେ ଉଲ୍ଲେଖ କରିଛନ୍ତି, 'Dying / Is an art, like everything else / I do it exceptionally well.' ସମୟ ଘଣ୍ଟାର ବାଲାନ୍ସକୁ ଭାଙ୍ଗି ଦେଇ ଆସେ ମୃତ୍ୟୁ । ନ ପଚାରି, ନ ବୁଝି, ନ ଅପେକ୍ଷା କରି ଜୀବନର କ୍ଷେତକୁ ଦିଏ ଉଜାଡି !

'ଦୁଇବଂଦୁ ଲୁହରେ ବି ଭିଜିଯାଏ ଜୀବନ ଅଙ୍ଗନ/ହେଲେ ମାପିବା ସହଜ ନୁହେଁ, ('ଏତେ ସହଜ ନୁହେଁ', ଅନ୍ୱେଷା) । ଇଲିୟଟ ଲେଖିଛନ୍ତି, Life is very long, ଅଭିଳାସ ଓ ଅଳ୍ପକାଳ ମଧ୍ୟରେ ! ତାହା ତୁମରି ସାମ୍ରାଜ୍ୟ ! 'This is the way the world ends' । ବାଲିଝଡ଼, ଶୂନଶାନ୍ ଧୂମାଳ ପବନ... ବୃନ୍ତଚ୍ୟୁତ ବସନ୍ତରେ ପଦ୍ମଫୁଲ, ଧ୍ୱଂସର ବିଧ୍ୱସ୍ତ ବଳୟ । 'ବଂଚିବାକୁ ପଡୁଛି / ରହସ୍ୟମୟ ଶୂନ୍ୟତାର ଆଁ ଭିତରେ !' ନୂଆ ପୃଥିବୀଟେ ଗଢ଼ିବାର ସ୍ୱପ୍ନ ଭିତରେ ବିଂଦୁବିଂଦୁ ବିଷଝରି ବ୍ୟାପିବାରେ ଲାଗିଛି ସଚରାଚର ! ଅବିଶ୍ୱାସର ଯୂପକାଠରେ ବଂଚିବାର ଜହ୍ନରାତି ବିଷାକ୍ତ ହୋଇଯାଇଛି । ଆକାଶ ବୋଲି ଯାହାକୁ ଭାବୁଥିଲେ କବୀ ତାହା ଚିରୁଡାଏ ସ୍ୱପ୍ନର କାନ୍‌ଭାସ ! ପତା ଖୋଲିଯିବା ମାତ୍ରେ ହୋଇଯାଏ ଅଦୃଶ୍ୟ । 'ମାୟା ଭିତରେ 'ମୁଁ' ମାନେ କେମିତି ମରନ୍ତି/ କେମିତି ହଜି ଯା'ନ୍ତି ଶବ୍ଦରେ ଶବ୍ଦମାନେ' ? ତା'ରି ଅନ୍ୱେଷଣ କରିଛନ୍ତି କବୟିତ୍ରୀ । ତାଙ୍କ ଈଶ୍ୱର ନିବେଦଯାଏ । ଦାଂପତ୍ୟ ଯୋଡିଏ ପାରା ହୋଇ ଆବେଗ ଓ ଅନୁରାଗରେ ଫୁଙ୍ଗୁଳା ମଂଦିରରେ ଗୁମୁରୁ ଥାଏ !

ସୈରିନ୍ଧ୍ରୀଙ୍କ କବିତାଗୁଡିକ ଗୁଣରେ ଓ ଧର୍ମରେ ଉତ୍ତରଆଧୁନିକ । ତାଙ୍କ ବକ୍ତବ୍ୟ ସ୍ଫଟିକପରି ସ୍ୱଚ୍ଛ, ଶକ୍ତ ଓ ଉଜ୍ଜ୍ୱଳ । ଭାଷା କୋମଳ, ଯେମିତି ମାତୃ-ଭାଷା । ରଜତ ଜ୍ୟୋତ୍ସ୍ନାଧାରାପରି ଶୀତଳ, ମଧୁର ଓ ସ୍ପଷ୍ଟ । ତାଙ୍କ ଶବ୍ଦ ଗୋ ଦୁଗ୍ଧପରି ମିଷ୍ଟ । କାବ୍ୟିକ ଅଭିବ୍ୟକ୍ତିର ସ୍ୱଚ୍ଛତା ପାଇଁ ତାଙ୍କ ଶବ୍ଦ ଖର୍ଚ୍ଚ ଯଥାଯଥ ଏବଂ ଯଥାର୍ଥ ଶବ୍ଦ ପ୍ରୟୋଗରେ ସିଏ ଅଭ୍ୟସ୍ତ ହସ୍ତ । କିଂତୁ ସିଏ ନାରୀବାଦୀ । ପୁରୁଷର ସଂପର୍କରେ ନାରୀର ପୂର୍ଣ୍ଣତା ପ୍ରାପ୍ତି

ଉପରେ ତାଙ୍କର ଆସ୍ଥା। 'ଭାରି ଇଛା ଥିଲା' ତାଙ୍କର ଗୋଟିଏ ଦୀର୍ଘକବିତା। ଏହାର ତୃତୀୟ ଭାଗ ଶେଷକୁ ସିଏ ଉଚାରଣ କରିଛନ୍ତି : 'ଢ଼ାଳି ଦେବି ଶହେ ଆଠକଳସର ପାଣି / ଚଢ଼େଇବି ଲକ୍ଷେ ସ୍ୱର୍ଣ୍ଣଚଂପା / ତମରି ସାନ୍ନିଧ୍ୟ ପାଇଁ / ତମ ଅଗଣାରେ ହେବି ତୁଳସୀ ଚଉରା/ ନ ହେଲେ ଆକାଶରେ ଜହ୍ନ' ! ଅଦ୍‌ଭୂତପୂର୍ବ ସାଧନାର ଇଏ ସମର୍ପଣ ମୁଦ୍ରା ! ଜୀବନକୁ କରିଦିଏ ସାର୍ଥକ !

ସୈରିନ୍ଧ୍ରୀଙ୍କ ଚରିତ୍ରର ଅନ୍ୟ ଗୋଟିଏ ଦିଗ, ସିଏ ଜଣେ ଜାତୀୟବାଦୀ, ଦେଶପ୍ରେମୀ ମଣିଷ ! ସୌଖ୍ୟ ଓ ମୈତ୍ରୀ ବାର୍ତ୍ତା ବିତରିତା କବୟିତ୍ରୀ। ଆତଙ୍କ ଓ ହିଂସାର ବିରୋଧୀ। 'ଅନ୍ୱେଷା'ର ଆରମ୍ଭରେ ତାଙ୍କ ମାନବବାଦୀ ଦୃଷ୍ଟି ସୁସ୍ଥ ଭାଇଚାରାର ଅନ୍ୱେଷା କରିଛି: 'ଅଗଣାରେ ଝରି ପଡୁଛି କାକରର ଟୋପାପରି / ଭାଇ ହାତରୁ ଭାଇର ଲୁହ / କାନ୍ଥରେ ଝୋଟି ହୋଇ ଯାଉଚି/ ହିଂଦୁ ମୁସଲମାନଙ୍କର ଭାଇଚାରା / ସତ୍ୟ ପଥରେ ଛିଟିକ୍ ପଡୁଛି/ ବଂଧୁକ ମୁନରୁ ରକ୍ତ/ ଭୟ ଲାଗୁଚି କାଲେ/ ଗୁଳି ଶବ୍ଦରେ ଆକାଶରୁ ଖସି ପଡିବ ଜହ୍ନ/ କାନିରୁ ଫିଟି ପଡିବ ବଂଧା ହୋଇଥିବା / ସ୍ୱପ୍ନ' ! କଳୁଷିତ ରାଜନୀତି ଓ କଳଙ୍କିତ ନେତା ଚରିତ୍ରକୁ: 'ଇଏତ ସେଇ ଗାଦି/ଯିଏ ବସିଲା ତାର ପେଟ ବଢ଼ିଲା/ ତା ମଥା ଉପରେ ସୁନା ଚାଂଦୁଆ/ ତା ପାଇଁ ବାରମାସୀ ବସଂତର ଋତୁ/ହାତ ପାହାନ୍ତାରେ ଖଂଜା'...। ଅତି ରୋକ୍‌ଠୋକ୍ ଆଙ୍କିଛନ୍ତି।

ସ୍ୱର୍ଗତ ଜ୍ଞାନୀନ୍ଦ୍ର ବର୍ମା ଲେଖିଥିଲେ- 'ଏ ଦେଶର ନାମ କିବା ନୁହଁଇ ଭାରତ / କେବେ ହେଲା ଏଥିଏଇ ନୂତନ ପ୍ରଭାତ ? / ଜାତିର ଜନକ ଯାଉ ତେଜି ଏଇ ଦେଶ'... ! ପରମାଣୁ ଯୁଦ୍ଧଠାରୁ ଭୟାନକ ଗୃହଯୁଦ୍ଧର ଦୃଶ୍ୟ ଏଠି ଦେଖିଛନ୍ତି କବୟିତ୍ରୀ ଏବଂ ଲେଖିଛନ୍ତି, 'ଏ କେଉଁ ଭାରତବର୍ଷ ! ଯେଉଁଠି ପଥେ ପଥେ ଖେଳ ଚାଲେ / ଗୁଳିର / ଗୋଳାର / ରକ୍ତର / ମାଂସର / ମଂଦିର ଓ ମସ୍‌ଜିଦ୍ ଭଙ୍ଗାହୁଏ, ଗଢ଼ା ହୁଏ/ରାଜନୀତି କରାଯାଏ ଧର୍ମର ଢାଲରେ / ସ୍ୱାଧୀନତା ପଢ଼ାହୁଏ କାନ୍ଥରେ ବାଡ଼ରେ / ନାରୀର ଦେହରେ; / ଇତିହାସ ଲେଖା ହୁଏ ନିର୍ଯ୍ୟାତିତା / ନାରୀର ଲୁହରେ... ! !

'ଅନ୍ୱେଷା'ର ଶେଷ ସିଫୋନୀ 'ହଜିବା ଦୁଃଖରେ', ସବୁ ଏଠି ସମୟର ଶୈବାଳ ତଳେ ହଜି ଯାଉଛି; ଶୈଶବ, କୈଶୋର, ଯୌବନ, ଗାଁ ଦାଣ୍ଡ, ଆମ୍ବଚୋରୀ, ରୂପେଲି ମାଛର ପିଠିରୁ ଆରମ୍ଭ କରି ମାନବ ଜୀବନର ଚିଠି ! ଇଏ ଏକ ସବୁ ହଜି ଯିବା ଭୂମି। ସେଇଥି ପାଇଁ ହଜେଇବି ନାହିଁ ବୋଲି ପଣ କରିଥିବା କବି ଶେଷରେ ନିଜକୁ ହଜାଇ ଦେଇଛନ୍ତି ନିଜ ଭିତରେ ଏବଂ ପୁଣି ଖୋଜୁଛନ୍ତି ! ସେହି ନିଜକୁ ଖୋଜିବାର ନାମ 'ଅନ୍ୱେଷା' ! ଏହା ନିଜକୁ ପାଇବାର ନାମ ନୁହେଁ; ପାଇବାର ନାମ ହୋଇଥିଲେ

କ୍ରିଷ୍ଣମୂର୍ତ୍ତିଙ୍କ ପରି କବୀ ଉଚାରଣ କରିଥା'ନ୍ତେ 'My search is at an end' ଏବଂ I myself, am God;' ଘଟି ନଥାନ୍ତା ତାଙ୍କ କାବ୍ୟିକ ଉତ୍ତରଣ ! ଶବ୍ଦର କଂଚା ମାଟିରେ ତାଙ୍କ ହସ୍ତ କରି ନଥାନ୍ତା 'ସଖା'ର ଗଢ଼ଣ !

## 'ସଖା': ସମକାଳୀନ ଏକ ଡିଭାଇନ୍ କମେଡି ।

'Good poetry always has a harmoney of its own. Its rhythm plays an important part in its meaning. xx Only best writers can achieve a true harmoney in their style. x x x The style... is a way of writing, a manner of expressing one's thoughts and feelings in words'

-Alan Warner

'ମଣିମା, କ'ଣ ପଢୁଛନ୍ତି ? ଡେନ୍‌ମାର୍କର ରାଜକୁମାର ହାମ୍‌ଲେଟ୍‌ଙ୍କୁ ପ୍ରଶ୍ନ କରିଛନ୍ତି ଲର୍ଡ ଚେମ୍ବରଲେନ୍ । ପ୍ରତ୍ୟୁତ୍ତରରେ ହାମ୍‌ଲେଟ୍ କହିଛନ୍ତି, ୱାର୍ଡସ୍, ୱାର୍ଡସ୍ ୱାର୍ଡସ୍ ! ହାମ୍‌ଲେଟ୍ ହାତରେ ଧରିଥିବା ବହିଟିରେ ଥିଲା ଆଉ କ'ଣ ? କେବଳ ଶବ୍ଦ; ବହିର ସଂପଦ ! ମାନବ ଭିତରେ ପ୍ରଚ୍ଛନ୍ନ ଓ ପ୍ରବାହିତ ଭାବନଦୀକୁ ଅଭିବ୍ୟକ୍ତ କରିବା ପାଇଁ ଶବ୍ଦ ହିଁ ଏକମାତ୍ର ଉନ୍ନତ ମାଧ୍ୟମ । ଶବ୍ଦ କଳା ସଂସ୍କୃତିର ଶ୍ରେଷ୍ଠକଳା । ଶବ୍ଦ ହିଁ ଚିହ୍ନାଇ ଥାଏ ସ୍ୱଭାବକୁ, ସତ୍ୟକୁ, ସିଦ୍ଧାନ୍ତକୁ ଓ ସମୟକୁ ଏବଂ ଏହି ସମସ୍ତର ଏକତ୍ର ସମନ୍ୱୟ ଇତିହାସକୁ । ସ୍ୱରୂପର ଭୂଗୋଳକୁ ଚିହ୍ନାଇ ଦେଇଥାଏ ଶବ୍ଦ । ସୃଷ୍ଟି ଯେତେବେଳେ ମୂକ ହୋଇଥିଲା, ତା'ର ଶୈଶବ ବେଳେ, ଶବ୍ଦ ହିଁ ଥିଲା ଈଶ୍ୱର ! କବିତା ଶବ୍ଦର ଖେଳ ! ଶବ୍ଦର କାରିଗରୀରେ ତିଆରି କବିତା । ଶବ୍ଦର ପ୍ରବାହରେ ଉନ୍ମୋଚିତ ଏବଂ ଆଲୋକିତ ହୋଇଥାଏ କବିତାର ଆତ୍ମା । କବିତା ଏକ ପୁଲକିତ ଛଂଦର ଅବୟବ । ପଠନ ମାତ୍ରକେ ହୃଦୟ ଆର୍ଦ୍ରଗୁମାଲପରି ଚିପୁଡି ହୋଇଯିବ । ଭାବ, ରସ, ସହୃଦୟତା ଓ ପୁଲକର ମିଳିତ ତାନ ମୁହୂର୍ତ୍ତ ଓ ମନକୁ କରିଦେବ ମୁଖରିତ । କବିତାର ଅର୍ଥ ତାର ଛଂଦ ଓ ଧ୍ୱନିରୁ ଉପଲବ୍ଧି କରିବ ମନ । ପୁଷ୍ପର ସୁଗନ୍ଧପରି ହୃଦୟଗ୍ରାହ୍ୟ କବିତାର ଆବେଦନ । ହୃଦୟର ନାସିକା ହିଁ ଆଘ୍ରାଣ କରି ଜାଣେ କବିତାର ସୁବାସ । ମନ ଓ ମସ୍ତିଷ୍କ ବୁଝନ୍ତି ଶବ୍ଦ ଓ ଅର୍ଥ, ଶବ୍ଦ ଓ ଅର୍ଥର ସଂପର୍କକୁ ଚିହ୍ନି ତହିଁରୁ ନିର୍ଯ୍ୟାସକୁ ଚୋଷି ନିଏ ହୃଦୟ । କବିତା ଗୋଟିଏ ମୁହୂର୍ତ୍ତକର ଚେତନା, ଅର୍ଥ ଓ ଧ୍ୱନିର ମିଳିତ ରଚନା !

ମଣିଷ ମଧ୍ୟ ତୃଷିତ । ମାନବ ସୌନ୍ଦର୍ଯ୍ୟ ପିପାସୁ । ଶବ୍ଦର କାରିଗରୀରେ ତା'ର ସେଇ ନାଂଦନିକ ତୃଷାକୁ ପ୍ରଶମିତ କରାଇଥାନ୍ତି କବି । କବିତା ଏକା କବି ନୁହଁନ୍ତି, ସମସ୍ତ ପାଠକଙ୍କ ସୁଖ, ଦୁଃଖ ଓ ଅବଶୋଷକୁ ନିଜ ଅବୟବର ଦର୍ପଣରେ ପ୍ରତିଫଳିତ କରାଇ ପ୍ରଶମିତ କରିଥାନ୍ତି । ମାଲାର୍ମେ ଲେଖିଛନ୍ତି 'Poetry is made not with idea but with words.' ।

George whalley କହନ୍ତି, ପ୍ରତୀକ ହେଉଛି ଏକ 'ଫୋକସ୍ ଅଫ୍ ରିଲେସନସିପ୍' ଏବଂ ଶବ୍ଦ ପ୍ରତୀକଟିଏ। ଗୋଲାପକୁ ଦେଖିଲେ ସୁନ୍ଦରୀ ପ୍ରେମିକା ମନେ ପଡିଥାଏ। ଠିକ୍ ଯେମିତି କବିତା ପଢ଼ିଲେ ଢଳଢଳ ହୋଇ ସ୍ମୃତିର କମଳ ନିଜ ଭିତରେ ଭାସି ବୁଲିଥାଏ। କବିତା ଏକ ତାଜମହଲ (ସ୍ଥାପତ୍ୟ) ନୁହେଁ, କବିତା ଏକ ଶବ୍ଦ, ଧ୍ୱନି ଓ ସ୍ମୃତିର ତନ୍ମୟୀ ମୂର୍ତ୍ତ ଆର୍ଟ। ଏହା ପ୍ରମାଣିତ କରେ ସୈରିନ୍ଧ୍ରୀ ସାହୁଙ୍କ 'ସଖା' ପୁସ୍ତକ। 'ସଖା' ଏକ ମଧ୍ୟଯୁଗୀୟ ତନ୍ମୟତା ପୂର୍ଣ୍ଣ ବିଶେଷ୍ୟ ପଦ। ଯିଏ ପ୍ରଦାନ କରେ ସୌଖ୍ୟ, ସିଏ 'ସଖା'; ଗୋଟିଏ ଉପପଦ ତତ୍ ପୁରୁଷ ଏବଂ ସେ ହିଁ କାବ୍ୟନାୟକ। ମ୍ୟାକ୍‌ଲିସ୍ ଉଲ୍ଲେଖ କରିଛନ୍ତି; Poem begins not in isolation but in relationship. କବିତା ବିଚ୍ଛିନ୍ନତାବୋଧରୁ ନୁହେଁ, ସଂପର୍କ ବୋଧରୁ ହୋଇଥାଛି ସୃଷ୍ଟି। 'ସଖା' ସଂପର୍କର ଇନ୍ଦ୍ରିୟବୋଧ୍ୟ ଏକ ପ୍ରତୀକ। କିନ୍ତୁ ଏଥିରେ ସଂକଳିତ କବିତା ଅସମ୍ବନ୍ଧ ଓ ଆକସ୍ମିକ ଏକ କ୍ରିୟା। କେଉଁ ପଂକ୍ତି ପରେ କେଉଁ ପଂକ୍ତି ଆସିବ ବା କେଉଁ ଶବ୍ଦ ପରେ କେଉଁ ଶବ୍ଦ ବସିବ ତାହା ସୂଚାଇବା ଅସମ୍ଭବ। ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁ ପଦରେ ବୋଳା ତନ୍ମୟତା (objectivity) ପ୍ରମାଣିତ କରେ ସୈରିନ୍ଧ୍ରୀଙ୍କ କବି କଳ୍ପନାର ଉତ୍କର୍ଷତା।

'ସଖା, ଥରଟିଏ ଆସ / ତମ ଆସିବା ଶବ୍ଦରେ / ମାଡି ଆସୁ କୁଆର ଏ ଶୂନ୍ୟମଣ୍ଡଳରେ / ସେତିକିରେ ତୁଟି ଯିବ ମୋର / ତମାମ ଦୁଃଖର ତନ୍ମୟତା' (ପୃଷ୍ଠା ୫୭)। କବିତାର ଅସ୍ତିତ୍ୱ ସୁନ୍ଦର। ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କବିତା ପ୍ରବାହିତ ଗୋଟିଏ ନିର୍ଝର। ଶବ୍ଦର ଭୂମି ଉପରେ ଚିତ୍ରାତ୍ମକ ଭାଷା କରିଛି କବିତାର ପ୍ରତିଷ୍ଠା। ପ୍ରତ୍ୟୟୀଭୂତ ଭାବାନୁଭୂତି ହୋଇଛି ରୂପାତ୍ମକ। ରିଚାର୍ଡ ଲେଖିଛନ୍ତି, 'It is never what a poem says that matter but what it is'' ।

'ତମେ କି ଚାହଁନା ସଖା / ଜୀବନର ଲମ୍ବାବାଟ / ଗୋହିରୀର ବେଣାପାଟ / ସରିଯାଉ; / ଜହ୍ନ ରାତି ଛୁଉଁଥାଉ ପ୍ରତିଟି ପ୍ରହର / ତମ ସ୍ୱର ହୋଇଯାଇ ମୋ ପାଇଁ / ପ୍ରଣବ ଓଁକାର / ସ୍ୱପ୍ନର ଆଖିପତା ତଳେ / ସୁତିସବୁ ନଈ ହୋଇ ଯାଉ'। କବିତାର ଆବେଦନରେ ଯେଉଁ ଭଲ ପାଇବା ଓ ନିଷ୍ଠାର ବିମ୍ବ କବୀ କରିଛନ୍ତି ଉପସ୍ଥାପିତ ତାହା ଅସୀମ ଓ ଅତି ପବିତ୍ର। ପୁଣି ଅତି ପ୍ରାଚୀନ ଓ ସୃଷ୍ଟିର ମୂଳ, ସୂଚାଇ ଦିଏ ତାଙ୍କର 'ପ୍ରଣବ ଓଁକାର'।

ରୀତିଯୁଗରେ ଉପେନ୍ଦ୍ର ଭଂଜ ଲେଖିଥିଲେ, 'ଯେତେ ଦୂରେ ପତ୍ର ପଡିଥିଲେରେ ନବୀନା/ଚିହ୍ନା କି ନ ଯାଇ ଥାଇ ବୃକ୍ଷବିନା'! ପୁନଶ୍ଚ - 'ପ୍ରିୟା ଦୁଃଖେ ଦୁଃଖୀ ପ୍ରିୟା ସୁଖେ ସୁଖୀ / ସମସ୍ତ ପ୍ରକାର ମୁହିଁ / ମୋ ଆୟୁଷ ଘେନି ଜୀଇ ରହିଥାଉ /

ଶରଦ ଚନ୍ଦ୍ରମା ମୁହାଁ'। ଏହା ଥିଲା ରୀତି କାଳୀନ କବିତାର ଆବେଦନ, ଅନୁଭବ ଓସୌଖ୍ୟର ଶୁଭକାମନା ମୂଳକ ସ୍ୱର। ସମକାଳୀନ ଏହି ସ୍ୱର: ଯୋଉଠି ବି ଥାଅ ସଖା / ଯେତେଦୂରେ ଥାଅ / ମୋ ପାଇଁ ତମେ କିଂତୁ / ଅମୃତର ବିଂଦୁଏ ନିର୍ଯ୍ୟାସ; / ତମ ଠାରୁ ଲୋଡା ମୋର / ଟୋପେ ଶ୍ରଦ୍ଧା/ ଟୋପେ ଲୁହ / ଯାହା ମୋ ପାଇଁ ପାଲଟିବ / ଶେଷ ଇତିହାସ'।

Susanne K. Langer ଲେଖିଛନ୍ତି, 'Art is the creation of forms symbolic of human feelings'.। ମାନବୀୟ ଅନୁଭବବୋଧର ସାଂକେତିକ ବିମ୍ବ କଳା। ତମଠାରୁ ଲୋଡା ମୋର ଟୋପେ ଶ୍ରଦ୍ଧା, ଟୋପେ ଲୁହ, ଯାହା ମୋ ପାଇଁ ପାଲଟିବ ଶେଷ ଇତିହାସ ! କି ଚମତ୍କାର କଳ୍ପନା ଓ ବିମ୍ବ ! ପାଠକଙ୍କ ଭାବାନୁଭୂତିକୁ କରିଦିଏ ଜୀବନ୍ତ। ଏଠି 'ଇତିହାସ' ଆର୍କିବଲ୍ଡ ମ୍ୟାକଲିସ୍‌ଙ୍କ 'ଆକସ୍ମିକ ଅସମ୍ବନ୍ଧ କ୍ରିୟା।' ଇତିହାସ ଅର୍ଥ କ'ଣ; ଲେଖିଛନ୍ତି ଇଲିୟଟ, 'for history is a pattern / Of timeless moments' । ପୁନଶ୍ଚ 'a secluded chapel / History is now.' ଗୋଟିଏ ଏକାନ୍ତ ବ୍ୟକ୍ତିଗତ ଉପାସନା ପାଇଁ ଗୀର୍ଜାରେ ଥିବା ସ୍ଥାନ ଇତିହାସ। ଯିଏ ଏଇ ଭଲ ପାଇବାକୁ ଆକର୍ଷିତ କରୁଛି। ତା' ସ୍ୱର କରୁଛି ପ୍ରଭାବିତ।

'ତମେ କି ଜାଣିନ ସଖା/ ଆଦ୍ୟ ପ୍ରାନ୍ତ ସୃଷ୍ଟିର ବିଲୟ। / ଜୀବନଟା ତତଲା ବାଲିର ଶେଯ / ଯେଉଁଠି ମୁଁ ଶୋଇଶୋଇ / ତମ ଛୁଆଁ ଶବ୍ଦବ୍ରହ୍ମ / ଖୋଜିଖୋଜି ଅଥୟ/ ଅଥୟ'। ସ୍ପର୍ଶ ଏଠି ଶବ୍ଦବ୍ରହ୍ମ। ସଂପର୍କ ଏଠି ପବିତ୍ର ଓ ଆପାର୍ଥିବ। ମିଳନ ଏଠି ଐଶ୍ୱରୀୟ ଓ ଅତୀନ୍ଦ୍ରିୟ। 'କମ୍, କମ୍, ଏଟ ଏଗେନ୍ କମ୍'ରେ କହନ୍ତି ଦାର୍ଶନିକ ଓଶୋ, 'Sex is animal, love is human. And to go beyond love is divine. Then arises prayer. Sex, love, prayer : these are the three stages of life. If you die without kowing prayer you have lived invain'।

ଦ୍ୱିତୀୟ ପୁରୁଷ ଏକ ବଚନ 'ତମେ'; 'ତମ ସହ ମୋ ସଂପର୍କ ବଂଧା ଖାଲି ଶବ୍ଦର ବ୍ରହ୍ମରେ / ଦେହ, ମନ, ପ୍ରାଣ ସେଠି / ବିଂଦୁଏ ଆଲୋକ...' ! ଦେହ, ମନ, ପ୍ରାଣ ଯେଉଁଠି ବିଂଦୁଏ ଆଲୋକ, ସେଠି 'ତମ' ସ୍ଥିତି 'ତତ୍ ତ୍ୱମସି' ବ୍ୟତୀତ ନ ହୋଇପାରେ ଅନ୍ୟ କିଛି ! ଏଠି 'ମୁଁ ମୋ ସଂପର୍କ...' 'ଅଙ୍ଗୁଷ୍ଠ ମାତ୍ରମ୍', ହୃଦ୍ ଗୁହାରେ ପ୍ରଜ୍ୱଳିତ ଅଚିହ୍ନା ଉପନିଷଦୀୟ ଜ୍ୟୋତି ! ଯାହା ହୁଏତ 'ସୋଽହମ୍' ! ତେଣୁ କୁହା ଯାଇଛି, 'ତମେ ମୋର ନିକଟରେ / ଏତେ ନିକଟରେ ସଖା' ! 'ଆପଣେଇ ନେବାର ପ୍ରତିଶ୍ରୁତି / ତମେ କେବେ ଦେଇନାହଁ ସିନା.../ ଅର୍ପି ଦେଇଛି ମୁଁ ତମ ପାଖେ/ ପ୍ରୀତି ଆଉ ଭକ୍ତିର ନୈବେଦ୍ୟ/ ଜୀବନର ଦୁଃଖ ସୁଖ/ ତମାମ ଜୀବନ / ଅନ୍ତ ଠାରୁ ଆଦ୍ୟ।'

'ଅନ୍ତ ଠାରୁ ଆଦ୍ୟ' କି ଚମତ୍କାର ବିମ୍ବ ! ଜୀବନ ଏକ ଓଲଟ ଗଛ। ମୃତ୍ୟୁରୁ ହୁଏ ଆରମ୍ଭ ? 'ବଂଚିବି ମୁଁ ଏଠି ଖାଲି / ବଂଚିବା ନିମିତ୍ତ' ! କେତେ ନିରୋଳା ଦାର୍ଶନିକତା 'ସଖା'ର ପଂକ୍ତିରେ କବିତାର ଭୂମିକୁ ଚୁମ୍ବିଛି ! ଯେମିତି ମାଟି ଭିତରେ ଗଭୀରରୁ ଗଭୀରତର ଭିତରକୁ ଅନୁପ୍ରବେଶିଛି ଗୋଟିଏ ବୋଧି ଦ୍ରୁମର ଚେର !

ଶ୍ରୀଅରବିନ୍ଦ ଲେଖିଛନ୍ତି, କବିତା ପାଇଁ ତିନୋଟି ବସ୍ତୁ ଦରକାର। ପ୍ରଥମ - .There must be emotional sincerity and poetical feeling, ଦ୍ୱିତୀୟ - a mastery over language and a faculity of rhythm perfected by a knowledge of the technique of poetic and rhythmic expression ଏବଂ ତୃତୀୟ - There must be the power of inspiration, the creative energy. ସୈରିନ୍ଧ୍ରୀଙ୍କ କବିତା ଏହି ବସ୍ତୁତ୍ରୟକୁ ନେଇ ସମୃଦ୍ଧ। ଲୋକେ ଯାହାକୁ କହନ୍ତି ପ୍ରେମ, ତାହା ତାଙ୍କ ପଂକ୍ତିକୁ କରି ନାହିଁ ସ୍ପର୍ଶ। ଭଲ ପାଇବାର ଏକ ଉଚ୍ଚତର ମାନସିକତା ତାଙ୍କ ରଚନା ଓ ହୃଦୟ ଭୂମିକୁ କରିଛି ପ୍ରେମାପ୍ଲୁତ। ହୁଏତ ତାହା ହୋଇପାରେ ଜଣେ ମୀରା ବା ରାଧାର ବିହ୍ୱଳତା। ଶେଲୀ ଲେଖିଛନ୍ତି, 'I can give not what men call love; / But wilt thou accept not / The worship the heart lifts above / And the Heavens reject not !'

'ଅନ୍ୱେଷା'ରେ ଯେଉଁ ତୃଷାର ଉନ୍ମେଷ, ଯେଉଁ ଅନ୍ୱେଷାର ସକାଳ, ତାହାର ତାରୁଣ୍ୟ 'ସଖା'ରେ ବିକୀର୍ଣ୍ଣ। 'ସଖା', 'ଅନ୍ୱେଷା' ଉତ୍ତରଣର ଯୌବନ ! ଚେତନାର ଅବିକଶିତ କମ୍ର କୁଡ୍ମଳ 'ସଖା'ରେ ବିକଶିତ ଓ ସୁଗନ୍ଧ ବିତରଣରେ ଉନ୍ମୁଖ। ଯେମିତି 'ସଖା' ରୋମାଁ ରୋଲାଁଙ୍କ 'ଜାଁ କ୍ରିସ୍ତୋଫ୍'ର 'ଲଭ୍ ଏଣ୍ଡ୍ ଫ୍ରେଣ୍ଡସିପ୍' ଖଣ୍ଡ ! କିଂବା ଏହା ବୀଥୋଭେନ୍‌ର ବୟାଳିଶଟି ସିଂଫୋନୀ। ଆଖି ବାଟ ଦେଇ ଆତ୍ମାକୁ ଚୁମିଦିଏ ଏହାର ଧ୍ୱନି।

ଏକାଦଶ ଶତାବ୍ଦୀରେ ଉତ୍କଳୀୟ କବି ଜୟଦେବ ସଂସ୍କୃତ ସାହିତ୍ୟରେ ସୃଷ୍ଟି କଲେ 'ଗୀତ ଗୋବିନ୍ଦ' ରଚନା କରି ଏକ ନୂତନ ପଥ। ସଂସ୍କୃତ ଉଚ୍ଚାରଣର କଡ୍‌ମଡ୍ ଧ୍ୱନି ପରିହାର କରି ସରଳ ତରଳ ସାବଲୀଳ ଶବ୍ଦ ଝଂକାରେ ପ୍ରବାହିତ କଲେ ତାଙ୍କ କାବ୍ୟ-ନଦୀ। ସଂସ୍କୃତ ଜଟିଳ ଶବ୍ଦ ଝଂକା ପଣ୍ଡିତଙ୍କୁ କରିଦେଇଥିଲେ ବିସ୍ମିତ। ନିଜର ଏକାଧିକ ଲକ୍ଷ୍ୟ ତାଙ୍କର ତୃତୀୟ ଶ୍ଳୋକରେ କରିଥିଲେ ପ୍ରତିପାଦିତ: ଯଦି ହରି ସ୍ମରଣେ ସରସଂ ମନୋ ଯଦି ବିଳାସ କଳାସୁ କୁତୂହଳମ୍। ମଧୁର କୋମଳ କାନ୍ତ ପଦାବଳୀ ଶୃଣୁତଦା ଜୟଦେବ ସରସ୍ୱତୀମ୍। ଯେମିତି ଜୟଦେବଙ୍କ ପଦାଙ୍କ ଅନୁସରଣ କରିଛନ୍ତି କବୀ ସୈରିନ୍ଧ୍ରୀ। କବିତାରେ ତାଙ୍କର ତାରଲ୍ୟର ସ୍ରୋତ ପ୍ରବାହ ରଚିଛି। ଜୟଦେବ ଲେଖିଛନ୍ତି 'ଗଣୟତି

ଗୁଣକ୍ଲାମଂ ଭ୍ରାନ୍ତଂ ଭ୍ରମାଦପି ନେହତେ। ବହତି ଚ ପରିତୋଷଂ ଦୋଷଂ ବିମୁଞ୍ଚତି ଦୂରତଃ ଯୁବତିଷ୍ଣୁ ଚଳତୃଷ୍ଣେ କୃଷ୍ଣେ ବିହାରିଣି ମାଂବିନା/ ପୁନରପି ମନୋ ବାମଂ କାମଂ କରୋତି କରୋମି କିମ୍'। (ଦ୍ୱିତୀୟ ସର୍ଗ ୨ୟ ଶ୍ଳୋକ)। ଅର୍ଥାତ୍ 'କୃଷ୍ଣର ଗୁଣଗୁଣି ମୋର ଦେହ। ଭ୍ରମ ହୋଇ ଚିତ୍ତ କରୁଛି ମୋହ। ଯେତେ ଦୋଷ କଲେ ମୁଁ ନ ଘେନଇ। ପୁନରପି ଚିତ୍ତ ତାହାର ତହିଁ। ସେ ନିର୍ଦ୍ଦୟହରି, ମୋ ବିନା କ୍ରୀଡେ ଘେନି ବ୍ରଜନାରୀ'! ମନେ ପଡିବା ମାତ୍ରେ ବା ମନେ ପକାଇବା ମାତ୍ରେ ସିଏ ଛୁଇଁ ଯା'ନ୍ତି ଆତ୍ମାକୁ ତାହାରି। ତା' ସତ୍ତ୍ୱେ, 'ତମକୁ ମୁଁ ମୋର ବୋଲି କହି ନାହିଁ / କହୁ ନାହିଁ / କହିବି ନାହିଁ ବି / ଅଦୂରର ସ୍ୱପ୍ନ ପାଇଁ / ରାତି କିଂତୁ ସାଉଣ୍ଟି ଆଣିବି / ସଂସାର ତ ବୋଧିଦ୍ରୁମ! ଅଜ୍ଞାତ ଦୁଃଖର ସ୍ୱର ପ୍ରଲମ୍ବିତ / ଏଠି ସେଠି / ଚଉପାଶେ ମୋର / ତଥାପି ମୁଁ ତମର'.... ! ମଂତ୍ର ଧ୍ୱନିପରି ଶୁଭୁଚି ସୈରିନ୍ଧ୍ରୀଙ୍କ ଉଚାରଣ। ଜୀବାତ୍ମାର ଏହି ଆତ୍ମୋନ୍ମୋଚନ! ଏଠି କିଛି କାବ୍ୟିକ ପ୍ରତିଶ୍ରୁତି ନାହିଁ, ଅଛି କେବଳ ଶ୍ରୁତି। ପଦ୍ମିନୀର ସୂର୍ଯ୍ୟଙ୍କ ଠାରେ ସମର୍ପିତ ହୋଇ ଯିବାରେ ତୃପ୍ତି।

'କୋହିଁକି ପାରନା ସଖା/ ଥରଟିଏ ଡାକି ମୋତେ ? / ଆ-ଫେରିଆ ... / ତୁ' ତ ଅଲଗା ନୋହୁଁ ମୋ ଠାରୁ / ଅବେଳାରେ ହଜି ସିନା ଯାଇଥିଲୁ / ତୋ ପ୍ରେମରେ ଆନମନା ମୁଁ ଦିଗ୍‌ବିଦିଗେ ମହକୁଛି / ପ୍ରୀତିର ଚଂପକ / ଆ... ସଖୀ... ଆ.... / ଏମିତିରେ ସରିଯା'ନା / ସାରିଦେନା...!' ମହାକବି ଜୟଦେବଙ୍କ ନାୟିକା ଶ୍ରୀରାଧା ଏବଂ ତାଙ୍କ ନାୟକ ଦୈହିକ ସୁଖ କୁଶଳ ଶ୍ରୀକୃଷ୍ଣ! ତେଣୁ ସିଏ – 'ସା ମାଂ ଦ୍ରକ୍ଷ୍ୟତି ବକ୍ଷ୍ୟତି ପ୍ରତ୍ୟଙ୍ଗ ମାଲିଙ୍ଗନୈଃ/ ପ୍ରୀତିଂ ଯାସ୍ୟତି ରଂସ୍ୟତେ ସଖି! ... ସ ତ୍ୱାଂ ପଶ୍ୟତି!'ସୈରିନ୍ଧ୍ରୀଙ୍କ ସଖା ଏଠି ସ୍ୱୟଂ ପରମାତ୍ମା! ନିଜଠୁ ଅବିଚ୍ଛିନ୍ନ ଭଗ୍ନାଂଶ ତାଙ୍କ ସଖୀ; ଦେହସ୍ଥ ଆତ୍ମା। 'ତୁ ତ ଅଲଗା ନୋହୁଁ ମୋଠାରୁ' ପ୍ରମାଣିତ କରେ ପଂକ୍ତିଟା।

ବୈଷ୍ଣବ ସାହିତ୍ୟରେ କୁହାଯାଇଛି; 'ପ୍ରକୃତି ପୁରୁଷ ଅଭିନ୍ନ, ଶ୍ରୀ ରାଧାକୃଷ୍ଣ ବେନିଜନ।/ କରନ୍ତି ନିତ୍ୟ ମହାରାସ, ସେ ବେନି ପ୍ରକୃତି ପୁରୁଷ।' ପୁନଶ୍ଚ – 'ଜୀବଟି ରାଧା ଅଙ୍ଗହୋଇ / ପରମ କୃଷ୍ଣ ଅଙ୍ଗ ସେହି'। ସାମରହସ୍ୟୋପନିଷଦରେ ଉଲ୍ଲେଖ ଅଛି,' ଅନାଦିରୟଂ ପୁରୁଷ ଏକ ଏବାସ୍ତି। ତଦେବଂ ରୂପଂ ଦ୍ୱିଧା ବିଧାୟ ସମାରାଧନ ତତ୍‌ପରୋଽଭୂତ୍। ତସ୍ମାତ୍ ତାଂ ରସିକାନଂଦା ବେଦବିଦୋବଦନ୍ତି।' ଅର୍ଥାତ୍ ସେହି ଅନାଦି ପୁରୁଷ ଏକ ଅଟନ୍ତି। କିନ୍ତୁ ଆଦି କାଳରୁ ସେ ନିଜକୁ ଦୁଇ ରୂପ କରି ନିଜର ହିଁ ଆରାଧନା ପାଇଁ ତତ୍ପର। ଏଣୁ ବେଦବିଦ୍ ଶ୍ରୀରାଧାଙ୍କୁ ରସିକାନଂଦରୂପା କହିଥାନ୍ତି।

'ଦିଅ ବୋଲି ମାଗି ନାହିଁ। କେବେ ଥରେ / ମାଗି ଦେଲେ ସରିଯାଏ ବୋଲି / ଯାଚି କରି ଦେଇ ନାହିଁ / ନିଜ ଦୁଃଖ କେବେ ଥରେ / ଯାଚଞ୍ଚାରେ ଝରିଯାଏ କିବା

କୁହା/ ଶରଧାର ମଲ୍ଲୀ ? x x ତମେ ପଶି ଆସୁଛ / ମୋ ମନର ଫୁଲ ବଗିଚାକୁ / ସେତେବେଳେ ଲାଗୁନାହିଁ / ତମେ ଏକ ଭିନ୍ନ ସତ୍ତା / କି ଯା - କହି / ଠେଲି ଦେଇପାରୁନାହିଁ / ମୋ ଭିତରେ ଥିବା ମୋ'ର / ପ୍ରେମିକା ସତ୍ତାକୁ' (ଏପିସୋଡ ବାଇଶି)। ଗୋଟିଏ ସୁଅର୍ଥପୂର୍ଣ୍ଣ ଆକୃତି ଜୀବନ୍ତ ହୋଇ ଉଠିଛି। ନିଃସତ୍ତା ସତ୍ତାଟିଏ ହୋଇ ସବୁ ନାରୀଙ୍କ ମନବଖରାକୁ ବେଳେ ବେଳେ ଅନୁପ୍ରବେଶ କରେ। ସିଏ ତାଙ୍କୁ ତ ଠେଲି ଦେଇପାରେ ନାହିଁ କିଂବା ନିଜର ପ୍ରେମିକା ସତ୍ତାକୁ ବି ଠେଲି ଦେଇ ପାରେ ନାହିଁ। 'ଆକାଶରେ ମେଘ ଉଠିଲେ / ମୋ ସ୍ମୃତିରେ ତମେ ଆସ'। 'ଗହ ଗହ ମୋ ଭିତରେ / ମନେ ହୁଏ ସାତଟା ସମୁଦ୍ର ଡେଇଁ / ମାଗି ନେବି ମୁଠେଧୂଳି / ହେବ ଯାହା ମୋ ପାଇଁ ପ୍ରୀତିର ଚଂଦନ / ଓ ପ୍ରେମମୟ ଗୋପପୁର' ।।

ଏଠି ସୈରନ୍ଧ୍ରୀ ଦୁଇଟି ସତ୍ତାକୁ ସ୍ୱୀକାର କରିଛନ୍ତି, 'ମୁଁ ଓ ତମେ'। ଏହି ଦୁଇ ସତ୍ତାଙ୍କ ନିନାଦରେ ମୁଖରିତ ତାଙ୍କ ନିଃସଙ୍ଗତା ଓ କବିତାର ପୃଥିବୀ। ଭଲ ପାଇବା ଦୁଇଟି ନିଃସଙ୍ଗ ଚେତନାର ମିଳନ। ଦୁଇଟି ଏକାକିପଣ ତରଳି ଗଲେ ଉତ୍ତରି ଆସେ ଏକ ବିପୁଳ ବସନ୍ତ। ଆନନ୍ଦର ସୁବାସ ମହକିତ କରେ ଦିଗ୍‌ବିଦଗ। ସୂର୍ଯ୍ୟମୁଖୀ ପୁଷ୍ପ ସୂର୍ଯ୍ୟଙ୍କ ଦିଗକୁ ଯେମିତି ଉନ୍ମୁକ୍ତ, ଠିକ୍ ସେମିତି ସୈରିନ୍ଧ୍ରୀଙ୍କ 'ସଖା' ଉର୍ଦ୍ଧ୍ୱାୟିତ ଏକ ଆତ୍ମହାର ଶିଖା।

'ଜୀବନର ଅନ୍ତିମ ଲଗ୍ନରେ ଆଜି / ଚଉପାଶେ / ମୋହଗ୍ରସ୍ତ ବିକଳ ଉନ୍ମାଦ / ସଖା, ଥରଟିଏ ଆସ / ତମ ଆସିବା ଶବ୍ଦରେ / ମାଡିଆସୁ ଜୁଆର ଏ ଶୂନ୍ୟମଣ୍ଡଳରେ / ସେତିକିରେ ତୁଟି ଯିବ ମୋର / ତମାମ ଦୁଃଖର ତନ୍ମୟତା' (ଏପିସୋଡ ଚାଳିଶ) ଦାର୍ଶନିକ ଓଶୋ 'ଦି ସିକ୍ରେଟ ଅଫ ସିକ୍ରେଟସ୍'ରେ କହନ୍ତି, 'Love makes a person creative. If there is no love then a person forgets the longuage of creativity' । ଗଭୀର ଭଲ ପାଇବା ସୈରିନ୍ଧ୍ରୀଙ୍କୁ କରିଛି ସର୍ଜନଶୀଳ। ଯଦି ତାଙ୍କ ଭିତରେ ମୁଠା ମୁଠା ଭଲ ପାଇବାର ଫୁଟନ୍ତା ହେନା ନ ଥାନ୍ତା ସର୍ଜନଶୀଳ କବିତାର ମହକ 'ସଖା'ରେ ଥା'ନ୍ତା ଅନୁପସ୍ଥିତ। ଯାହାଙ୍କ ପାଖରେ ଭଲ ପାଇବା ନ ଥାଏ, 'His life will be meaning less. He will not feel any significance', ପୁନଶ୍ଚ - 'unless you have been loved you cannot feel your worth'ଭଲ ପାଇବା ହିଁ ଜୀବନକୁ ଓ ଜୀଇବାକୁ କରେ ସାର୍ଥକ। ଭଲ ନ ପାଇଲେ ହୃଦୟଙ୍ଗମ କରି ହୁଏ ନାହିଁ ଜୀବନ ଫୁଲର ମୂଲ୍ୟ। ସେହି ପ୍ରବନ୍ଧରେ ପୁଣି ସିଏ କରିଛନ୍ତି ବ୍ୟକ୍ତ, 'People have to love. Love is a great need. Food is a lower need. Love is a higher need, a much higher order value' 'ତଥାପି ତମେ ଆସିବ ବୋଲି / ଭାବଟିଏ ମୋ ଭିତରେ xxx ମୋ ମନର ସବୁଯାକ ଅନୁରାଗ/ ଅନୁଭବ ଖୋଲି ଦେଲି

ଖୋଲା ଚିଠି କରି’। ସ୍ଥିତିଟିକୁ ଇଲିୟଟ ‘Four Quartets’ର ‘The Dry salvages’ ରେ ବର୍ଣ୍ଣନା କରିଛନ୍ତି, something given / And taken, in a lifetime’s death in love / Ardour and selflessness and self surrender’ ମାନବର ଅହଂ ସତ୍ତା ସମାପ୍ତ, ପ୍ରଗାଢ଼ ଅନୁରାଗ ଭିତରେ ତାର ଶ୍ରୀରାଧା ଚେତନା ‘ସଖା’ଙ୍କଠି ସମର୍ପିତ। ‘ଖୋଲାଚିଠି’ରେ ଆଉ ଥାଏ କିଛି ?

‘ଆସ କି ନ ଆସ ତମେ / ଏଇ ଭାବ ସଦା ଥାଉ / ତମକୁ ମୁଁ ଅନୁଭବୁ ଥାଏ ମୋର / ପ୍ରୀତି ଭରା ଅନ୍ଧତ୍ୱ ପ୍ରାପ୍ତିରେ’। ସଂଶୟବାଦୀ ଦୃଷ୍ଟିର ପ୍ରଶ୍ନ ଏଠି ସମାପ୍ତ। ଗୋଟିଏ ବିଶ୍ୱାସ ପୂର୍ଣ୍ଣାଙ୍ଗ ଭାବେ ଉତ୍ତରି ଆସିଛି। ଜୀବନର ନୀଳରାସ୍ତା ଚକ୍ରବାଳ ଟପି ପହଂଚି ଯାଇଛି ମରାମତ ଉର୍ଦ୍ଧ୍ୱସ୍ଥ ଏକ ସ୍ଥିତିଠି: The Garden / Where all love ends’ (Eliot) ସ୍ୱପ୍ନ ଆଉ ବାସ୍ତବର ଦୁଇନଦୀ ମଝିରେ ଜୀବନର ଅଙ୍କକଷା ସରେ ପୂର୍ବଜନ୍ମ ଓ ପରଜନ୍ମ କଳ୍ପନା ଭିତରେ।

‘ସଖା’ କବିତାଗୁଡିକରେ ଜୀବନ ଜ୍ୟୋତିର ମୂଲ୍ୟାୟନ ବାଢ଼ିଛନ୍ତି ସୈରିନ୍ଧ୍ରୀ। କବିତାର କାବ୍ୟିକତାରେ ରହିଚି - ପ୍ରଚ୍ଛନ୍ନ ଆଧ୍ୟାତ୍ମିକତା। ଧାର୍ମିକତା ଦିଗରେ ସିଏ କିଛି ପ୍ରରୋଚିତ କରି ନାହାନ୍ତି। ‘ସଖା’ ପଢ଼ିଲା ବେଳେ ‘ଗୀତଗୋବିନ୍ଦ’ କିମ୍ୱା ଭଗବତ୍‌ଗୀତା ଖଣ୍ଡେ ପଢିଲା ଭଳି ଲାଗୁଛି। କିଂବା ଲାଗୁଛି ଦାନ୍ତେଙ୍କ ଡିଭାଇନ୍ କମେଡି ଭିତରେ ପାଠକ ବୁଡିଚି !ପ୍ରେମ ଓ ପୁଣ୍ୟର ନୂଆ ଦୁନିଆଟିଏ କବିତାରେ ନିର୍ମିତ ହୋଇଛି।

ଦାର୍ଶନିକ ଯାହାକୁ କହନ୍ତି ତାଙ୍କ ପରିଭାଷାରେ ‘ସତ୍ୟ’, ତାହାକୁ ଶିଳ୍ପୀ କହେ ‘ସୌନ୍ଦର୍ଯ୍ୟ’, ଏବଂ ତାହା କବି ଶେଲୀଙ୍କ ଶବ୍ଦରେ ‘ପ୍ରେମ’। କବିତାର ଅନ୍ୟନାମ ପ୍ରେମ! କବିର ଭଲ ପାଇବା ହୋଇଥାଏ କବିତାରେ ଉତ୍‌କୀର୍ଣ୍ଣ। ସତ୍ୟକୁ ଆଚ୍ଛାଦିତ କରିଥାଏ କବିତ୍ୱ। ‘ସଖା’ରେ ଯେଉଁ ସତ୍ୟର ଅବତାରଣା କରାଯାଇଛି ତାହା ଚିନ୍ମୟ। ତାହା ସୌନ୍ଦର୍ଯ୍ୟମୟ। ତାହା ମାନବତ୍ମାର ପରମାତ୍ମା ବା ତତ୍‌ପୁରୁଷ ସହିତ ମିଳନ ଅଭୀପ୍ସା। ସଂସାରର ଚରମ ସତ୍ୟ ପରିଧାନ କରିଛି କବିତାର ବସ୍ତ୍ର। ଶବ୍ଦର ମଶାରୀ ତଳେ ଦିବ୍ୟ (Divine) ସହିତ ଅଦିବ୍ୟ (ଦିବ୍ୟର ଅବିଚ୍ଛିନ୍ନ ଭଗ୍ନାଂଶ) ମିଳନ ଖୋଜୁଚି !

କାଳାତୀତ ସତ୍ୟ ସହିତ ସୈରିନ୍ଧ୍ରୀ ସ୍ଥାପିତ କରିଛନ୍ତି ପ୍ରେମାବିଷ୍ଟ ସଂପର୍କ। ତାଙ୍କ ଅନ୍ତରରେ ଅନନ୍ତର ଉପଲବ୍ଧି ହିଁ ପ୍ରେମ, ଅହଂକାର ରହିତ ପ୍ରେମ। ଯାହା ମାନବାତ୍ମାର ଈଶ୍ୱରଙ୍କ ଠାରେ ପୂର୍ଣ୍ଣ ସମର୍ପିତ ହେବାର ଗୁଣ।

## କବିତାର ସଂଜ୍ଞା କେତୋଟି ଓ ‘ଫେରିଆସିବି’ର ନାଂଦନିକ ଦୃଷ୍ଟି

‘କାହିଁକି ତୁମେ କବିତା ଲେଖିବାକୁ ଚାହୁଁଚ ?’ ଯଦି ଉତ୍ତର ଦାତା କହନ୍ତି, ‘ମୋର କିଛି ଗୁରୁତ୍ୱପୂର୍ଣ୍ଣ ଜିନିଷ କହିବାକୁ ଅଛି’, ତେବେ ସେ ଜଣେ କବି ନୁହଁନ୍ତି।

ଯଦି ସିଏ କହିଥାନ୍ତେ, 'I like hanging around words listening to what they say' ତାହେଲେ ସିଏ ଜଣେ କବି ହେବାକୁ ଯାଉଛନ୍ତି । 'ପୋଏଟସ୍ ଆଟ ଓ୍ୱାର୍କ, ପୁସ୍ତକର 'Squares and Oblongs' ପ୍ରବଂଧରେ ଏହା ଲେଖିଛନ୍ତି ଅଡ଼େନ୍ ।

ଇଏଟସ୍ ତାଙ୍କ 'ଏସେଜ୍ ଏଣ୍ଡ ଇଣ୍ଟ୍ରଡକ୍ସନ୍' (ପୃଷ୍ଠା ୫୦୯)ରେ ଲେଖିଛନ୍ତି, 'A poet writes always of his personal life... There is always a phantasmagoria.... he is never the bundle of accident and incoherance । ଜଣେ କବି ଯାହା ଲେଖନ୍ତି, ତାହା ତାଙ୍କ ବ୍ୟକ୍ତିଗତ ଜୀବନ । ତାହା ଅବାସ୍ତବ ଓ ସିଏ ପ୍ରକୃତ ଜଗତର ବ୍ୟକ୍ତି । ସିଏ ଗଣ୍ଡିଲିଏ ଆକସ୍ମିକତା କିଂବା ଅବୋଧ୍ୟ ନୁହଁନ୍ତି ।

ରବର୍ଟ ପେନଓ୍ୱାରେନ୍ ଲେଖିଛନ୍ତି, 'Poetry does not inhere in any particular element but depends upon the set of relationships, the structure, which we call poem' । କବିତା କୌଣସି ନିର୍ଦ୍ଦିଷ୍ଟ ଉପାଦାନ ଉପରେ ହୋଇ ନଥାଏ ସ୍ଥାପିତ । ଏହା ସଂପର୍କଶୀଳତା ଉପରେ କରେ ନିର୍ଭର । ଗଠିତ ଢାଂଚାକୁ ଆମେ କହିଥାଉ କବିତା ।

ପ୍ରଫେସର ଡାଭିଡ ଡାଚ୍ୟେସ୍ ଲେଖିଛନ୍ତି, 'A poem exists as a group of words, ଯାହାର ଅର୍ଥ ସାଧାରଣ ଜନତାଙ୍କ ପାଇଁ ନୁହେଁ ଅଗମ୍ୟ'। କବିତା କବିଙ୍କ ବ୍ୟକ୍ତିଗତ ଜୀବନରୁ ଉଦ୍‌ଭବ କିଂତୁ ବ୍ୟକ୍ତିତ୍ୱର ଅଭିବ୍ୟକ୍ତି ନହେବ ! 'The poet has not a 'personality', to express', ଲେଖିଛନ୍ତି ଇଲିୟଟ । 'ଏ ନୋଟସ୍ ଅନ୍ ଓ୍ୱାର ପୋଏଟ୍ରୀରେ ତାଙ୍କ କବିତାର ସଂଜ୍ଞା ଦର୍ଶାଇଛନ୍ତି :

Of private experience at its greatest intensity
Becoming universal which we call 'poetry',
May be affirme in verse.

ବ୍ୟକ୍ତିଗତ ଅନୁଭୂତି ଏହାର ପ୍ରଗାଢ଼ତାରେ ତୀବ୍ର ହୋଇ ହେଲେ ବିଶ୍ୱଗତ ତାହାକୁ କୁହାଯିବ କବିତା; ଏହା ପଦ୍ୟରେ ଦୃଢ଼ତାର ସହିତ ମଧ ହୋଇଥାଏ ବ୍ୟକ୍ତ । ତୀବ୍ର ବ୍ୟକ୍ତିଗତ ଅନୁଭୂତିର ଦୃଢ଼ ଶବ୍‌ଦଚିତ୍ର; ଏହାକୁ ବହନ କରିପାରେ ଗୀତିମୟତା ଓ ପୁଣି ମଧ୍ୟ ଅଛଂଦ ! କବିତା କବିତା କେବଳ ! ଶବ୍‌ଦରେ ତାର ଜନ୍ମ ! ଯେମିତି ପାଖୁଡାରୁ କୁସୁମ । 'ଦି ସ୍ପିରିଟ ଅଫ୍ ରୋମାନ୍ସ' ପ୍ରବଂଧରେ ଏଜ୍ରା ପାଉଣ୍ଡ ନିର୍ଣ୍ଣୟ କରିଛନ୍ତି କବିତାର ସଂଜ୍ଞା ... a sort of inspired mathematics, which gives us equations, not for abstract figure, triangles, spheres and like but equations for human emotions' । ମାନବୀୟ ଭାବାବେଗର ସମୀକରଣ କବିତା । କିନ୍ତୁ ଏହାର ବହୁବର୍ଷ ପୂର୍ବରୁ ଅର୍ଣ୍ଣୋଲଡ୍ ଦର୍ଶାଇ ଥିଲେ କବିତା ମାନବ ଜୀବନର ସମୀକ୍ଷା । କାବ୍ୟିକ ସତ୍ୟ ଓ

ସୌନ୍ଦର୍ଯ୍ୟର ସର୍ତ୍ତ ଉପରେ ଏହା ହେବ ଆଧାରିତ। ପରବର୍ତ୍ତୀ ସମୟରେ ହପ୍‌କିନ୍ସ ସୂଚିତ କରିଛନ୍ତି, ... 'poetry is speech which repeats some kind of figure that is over and above meaning, at least the grammatical, historical and logical meaning'। ଅନେକ ଅଧ୍ୟୟନ ପରେ ଉଇଲିୟମ ହେନ୍‌ରୀ ହଡସନ୍ ଲେଖିଛନ୍ତି, .... 'poetry, specifically so termed, is a particular kind of art; that it arises only when the poetic qualities of imagination and feeling are embodied in a certain form of expression;। ଖ୍ରୀଷ୍ଟ ଜନ୍ମର ବହୁ ପୂର୍ବରୁ ଗ୍ରୀକ୍ ଦାର୍ଶନିକ ପ୍ଲାଟୋ ତାଙ୍କ 'ରିପବ୍ଲିକ୍' ଦଶମ ଭାଗରେ ଲେଖିଥିଲେ ... 'What the poet speaks of is the true and the beautiful'। ପ୍ଲାଟୋଙ୍କ ଗୁରୁ ସକ୍ରେଟିସ୍ ତାଙ୍କର ଅନ୍ୟ ଜଣେ ପ୍ରିୟଛାତ୍ର Ionକୁ କହିଥିଲେ କବିତାକୁ କବି ମହୁର ଝରଣାରୁ ସଂଗ୍ରହ କରନ୍ତି। ମୋଜେସ୍‌ଙ୍କ ବଗିଚାରୁ ଏବଂ ତାଙ୍କ ବ୍ୟକ୍ତିଗତ ଅଧ୍ୟୟନ ପ୍ରକୋଷ୍ଠରୁ ତୋଳନ୍ତି। ଯେମିତି ମଧୁମକ୍ଷୀ ପୁଷ୍ପରୁ ପୁଷ୍ପକୁ କରିଥାଏ ଭ୍ରମଣ, ଠିକ୍ ସେମିତି ଶବ୍ଦରୁ ଶବ୍ଦକୁ କରିଥାନ୍ତି ଗୁଞ୍ଜନ।

'ଫେରିଆସିବି' ସୈରିନ୍ଧ୍ରୀଙ୍କ କାବ୍ୟଚେତନାର ତୃତୀୟ ପର୍ବ, ତୃତୀୟ ଉତ୍ତରଣର ଶିଳ୍ପ; ଏହା ପାଠକ/ପାଠିକାଙ୍କୁ ଶିଖାଏ ସ୍ୱପ୍ନ ଦେଖିବା। ମଣିଷକୁ ଶିଖାଏ ଜୀବନକୁ ଭଲ ପାଇବା। ଜୀବନ ଓ ପରିସ୍ଥିତିର କଠୋରତାକୁ ଭୁଲାଇ ଦିଏ 'ଫେରିଆସିବି'ର ସ୍ୱର। ସବୁ ଉଦ୍‌ବେଗ ଓ ଅବସାଦ ହୋଇଯାଏ ଶାନ୍ତ। କିଛି ମୁହୂର୍ତ୍ତ ଜୀବନକୁ ଆଚ୍ଛନ୍ନ କରି ରଖେ ସୈରିନ୍ଧ୍ରୀଙ୍କ କଂଠ। ଏହାର ଧାଡିଗୁଡିକ ସମକାଳୀନ ଓ ସତେଜ। ପଢ଼ିବାକୁ ଭଲ ଲାଗେ। ତାଙ୍କ ନିତିଚିହ୍ନା ଅନୁଭବରେ ନୂତନତା ଉତ୍କୀର୍ଣ୍ଣ। ଅଭିବ୍ୟକ୍ତିରେ ଅନୁଭବର ସ୍ପର୍ଶ ବର୍ଚ୍ଛାମୂନପରି ବକ୍ଷକୁ କରେ ସ୍ପର୍ଶ।

କବିତା ତ ନୁହେଁ, ଯେମିତି ଏହା କୋଇଲିର ଗୀତ। ନିମ୍ବକୁ ମଳୟର ସ୍ପର୍ଶ। ହୃଦୟର ନୀଳ ଜଳକୁ କରିଦିଏ ସହସ୍ର ବୃତ୍ତରେ ତରଙ୍ଗାୟିତ। 'ସହଯାତ୍ରୀ'ରୁ ଆରମ୍ଭ 'ଫେରିଆସିବି,-ରେ ସମାପ୍ତ, ମୋଟ କବିତାର ତିରିଶଟି ବସନ୍ତ, ଷାଠିଏଟି ପୃଷ୍ଠା କରିଛନ୍ତି ଶୋଭିତ। ପ୍ରାୟଃ ସବୁ କବିତା ସୁନ୍ଦର ଏବଂ କବିତାଠୁ ସୁନ୍ଦରତର ତାଙ୍କ ମନ ଭିତର। ନିଃସଙ୍ଗତାର ଓଢ଼ଣୀ ଭିତରେ ସହଯାତ୍ରିଣୀର ଉଚ୍ଚାରଣ: ମୁଁ ଶୋଇ ନଥିଲି। ଟିକେ ଘୁମେଇ ପଡିଲି ତ,/ ତମେ ପାରେଇ ଗଲ ଏତେ ସହଜରେ, / ଏତେ ନିଃଶବ୍ଦରେ'। 'ଫେରିଆସିବି' ଧ୍ୱନିରେ କଳକଳ ପ୍ରବାହିତ ମହୁର ଝରଣାଟିଏ ସମୟର ଏକ ଅଚିହ୍ନା ଉପତ୍ୟକାରୁ ପ୍ରବାହିତ ହୋଇ ଆସିଛି ଅସମୟର ପରିତୃପ୍ତ ଏକ ଦୃଶ୍ୟାନ୍ତକୁ। ସେହି ଦୃଶ୍ୟାନ୍ତ ଗୋଟିଏ ଅନ୍ତ ନୁହେଁ, ତାହା ଏକ ପ୍ରତ୍ୟୟଶୀଳ ପ୍ରତିଶ୍ରୁତି 'ଫେରିଆସିବି'।

କାରଣ- 'ଯିବି ବୋଲି ଯିବାକୁ ଚାହିଁଲା ବେଳେ / ତମେ ପଛୁରୁ ଟାଣି ଧରୁଛ କାନି' !... ପୁଣି - 'ଟାଣି ଦେଲେ ଯଦି / ଫାଟିଯିବ, ପଣତର କୋଉଠି ପାପରା ହୋଇ ଯାଇଥିବା ଅଂଶ/ ତେବେ ସେଥିରୁ ଖସିଯାଇ ବୁଣି ହୋଇ ଯିବ। ମୋର ସବୁଯାକ ଶୂନ୍ୟତା, ଦୁଃଖ/ ଅସଫଳତା ଓ ଏକ୍ଲାଭାବ। / ସେଇ ଡକକୁ ମୋର ଡର।'

ପଛରେ ମୋହମୁଗ୍ଧ ମାୟାର ମୁଠା, ଆଗକୁ ପ୍ରାର୍ଥନାରେ 'ମୁଁ'କୁ ସମର୍ପି ଦେବାର ଅନଧିଗମ୍ୟ ଅନନ୍ତ ବିଚ୍ଛେଦର ନିଷ୍ପା, ମଝିରେ ପାପରା ପଣତ କାନି ଚିରି ଯିବ ସମ୍ଭାବନାର ସମସ୍ୟା ଏବଂ ତଳେ ବୁଣି ହୋଇଯିବା ସବୁଯାକ ଦୁଃଖ, ଅସଫଳତା, ଏକ୍ଲାଭାବ ଓ ଶୂନ୍ୟତା ! ଢାଳି ହୋଇଯିବା ମଧ୍ୟବିତ୍ତୀୟ ସାମାଜିକ ମର୍ଯ୍ୟାଦାର ଆଶଙ୍କା ଶଙ୍କିତ କରି ଦେଉଛି ଚେତନାକୁ। ସମୟର ତ୍ରିକାଳ ତ୍ରିସ୍ତର ହୋଇ ତିଆରି କରିଛି ପାଉଣ୍ଡଙ୍କ ଆବେଗର ସମୀକରଣ। ସଂପର୍କ, ପ୍ରତିଶ୍ରୁତି ଓ ଚିରନ୍ତନ ସତ୍ୟ ଯେମିତି ଏକ ଏକ ତ୍ରିଭୁଜ, କୋଣ ଓ ଅବସ୍ଥାନ୍ର ସଂଖ୍ୟା ନୁହେଁ, ମାନବୀୟ ଆବେଗ। ଏମାନଙ୍କ ମିଶ୍ରଣରୁ ସୃଷ୍ଟି ହୋଇଛି ମୁକୁଳିତ କୋମଳ କଅଁଳ ପତ୍ରଟିଏ ! ତାହା ସୈରିନ୍ଧ୍ରୀଙ୍କ ଏଇ କବିତା। ନିଜସ୍ୱ ଅନୁଭୂତିର ସାଂଦ୍ରତା ହୋଇଛି ବିଶ୍ୱଗତ, ଯାହା ଇଲିୟଟଙ୍କ ପରିଭାଷାରେ କବିତା।

'ବିନା ଆଶ୍ରେ ନ ବର୍ତ୍ତନ୍ତି କବିତା ବନିତା ଲତା', କିଂବଦନ୍ତୀଟିଏ ରହିଛି। କବୀଙ୍କ ସେହି ବ୍ୟକ୍ତିଗତ ଅନୁଭୂତି ଓ ନିଜସ୍ୱ ଅନୁଭବ ଯାହା ନୁହେଁ phantasmagoria ତାକୁ କିପରି ଶବ୍ଦରେ ଟାଙ୍ଗିଛନ୍ତି : ତୁମେ ଥିଲେ ବତାସ ବି ଭାଙ୍ଗିପାରେ ନାହିଁ ତାଳଗଛ ବାହୁଙ୍ଗାରେ / ମୁଁ ଗଢ଼ିଥିବା ବସା/ତୁମେ ଥିଲେ ଆକାଶ, ପୃଥିବୀ ଓ ସମୁଦ୍ରକୁ ନେଇ / ମୁଁ ଗଢ଼ି ପାରେ ସୁବର୍ଣ୍ଣ ତ୍ରିଭୁଜ/ ଚାଲିପାରେ ଚହ ଚହ ନାଲି ଅଙ୍ଗାରରେ'। 'ତୁମ' ଦ୍ୱିତୀୟ ପୁରୁଷ ଏକ ବଚନ କେବଳ ତାଙ୍କ ଆଶ୍ରୟ ବା ଭରସା ନୁହନ୍ତି; ସେହି ତତ୍‌ପୁରୁଷ ତାଙ୍କ ଜୀବନର ଜୀବନ ! ସିଏ କେବଳ ଶବ୍‌ଦଟିଏ ନୁହନ୍ତି, ଶବ୍‌ଦସ୍ଥ ଅମୃତର ବିଂବ ! ସୃଷ୍ଟିର ମୌଳିକ ବୀଜ ! ଜୀବନର ଆରାଧ୍ୟ !

କବୀଙ୍କ ଅନ୍ତରଙ୍ଗ ଅନୁଭୂତିର ଅକପଟ ଅଭିବ୍ୟକ୍ତି, 'ଫେରିଆସିବି'; କବି ବ୍ରଜନାଥ ରଥଙ୍କ କହିବା ଯଥାର୍ଥ। ପ୍ରାଣର ସ୍ପଂଦନ, ଅନୁଭୂତିର ତୀବ୍ରତା, ହୃଦୟର ଆବେଗ, ମନର ସଂବେଦନା, ପ୍ରକାଶଭଙ୍ଗୀରେ ସ୍ୱଚ୍ଛତା ଓ ଚେତନାର ଉତ୍ତରଣ ବହିଟିକୁ କରିଛି ପ୍ରକୃତରେ ସଫଳ।କାବ୍ୟତାତ୍ତ୍ୱିକ ଦୃଷ୍ଟିକୋଣରୁ କବିତାଗୁଡ଼ିକ ଅନୁପମ। ଈଶ୍ୱରୀୟ ପ୍ରେମର ଐଶ୍ୱର୍ଯ୍ୟ, ନାରୀଜୀବନର ଅର୍ଜି ଓ ଯାତନା ପ୍ରତି ବିଦ୍ରୋହ ଏବଂ ସମକାଳୀନ ସମାଜ ଓ ବିପନ୍ନ ସାମାଜିକ ଜୀବନ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କବିତାଗୁଡ଼ିକର ବିଷୟ। କବିତାର

କାରୁକାର୍ଯ୍ୟରେ ତାଙ୍କ ଅନୁଭୂତିର ତାରକସୀ ସାରସ୍ୱତ ଅଜନ୍ତାଟିଏ ଗଢ଼ିଚି । ତାଙ୍କ କବିତାର ପ୍ରତିଟି ଛବି ମାନବବାଦୀ, ମହତ ଓ ଏକ ଏକ ଗଭୀର ଚିତ୍ର ଓ ଭାବର ମହୋଦଧି । ପଠନ ମାତ୍ରକେ ଭାବନାର ତରଙ୍ଗମାନ ମନର ବେଳାଭୂମି ଉପରେ ଗଦେଇ ହୋଇପଡନ୍ତି । ଅନୁଭୂତିର ଗୁରିଆରିଲ୍ ଖୋଲିଦିଏ ସମକାଳୀନ ଜୀବନର ଗୁମର ।

'ଏଠି ପାହୁଣ୍ଡ ବଢ଼େଇଲେ ବିସ୍ଫୋରଣ / ପାଟି ଖୋଲିଲେ ସର୍ବନାଶ / ନାଁ ଯା'ର ଭାରତବର୍ଷ / xx ମନ୍ଦିରରେ ଧର୍ଷଣ, ସୀମାନ୍ତରେ ବର୍ଷଣ / ଗୁଳିଗୁଳା/ ଆତ୍ମାର ଆଦିଭୂମିରେ / କାଦମ୍ବରୀ ପାନ କରି / ନିଜ ବଂଶ ନିଧନରେ/ଲିପ୍ତ ଆମେ ପାପୀ ଯଦୁକୁଳ । ..... ଅର୍ଥଲିପ୍ସା ମାଗୁଚି ପାଉଣା / ରକ୍ତମୁଖା ମାଫିଆ / ଆଖିର ଆଖିର ଇସାରା xxx ବିଦୀର୍ଣ୍ଣ ଯାର ଇତିହାସ / ସାହିତ୍ୟ ଓ ସଂସ୍କୃତିରେ ବି / ବିଶ୍ୱାସର ଅବଶୋଷ / ଯା'ର ନାଁ ଭାରତବର୍ଷ'! ଅଡ଼େନ୍‌ଙ୍କ ଉକ୍ତି ଅନୁଯାୟୀ ସୈରିନ୍ଧ୍ରୀ ଶବ୍ଦମାନଙ୍କୁ ଚାରିପଟ ଝୁଲାଇ ଶୁଣୁଛନ୍ତି ସେମାନେ କଣ କହୁଛନ୍ତି; ଯାହା କହୁଛନ୍ତି ତାହା ତାଙ୍କ ଭଲ ପାଇବା । ସଫା ଲୁଗାଟିଏପରି ଗୋଟିଏ ଦେଶପ୍ରତି ତାଙ୍କର ଶ୍ରଦ୍ଧା । ସିଏ ଚାହାନ୍ତି ନାହିଁ ରକ୍ତର କରବୀ ଭରୁ ଜୀବନର ଜୁଡା ! ସିଏ ଚାହାନ୍ତି ନାହିଁ କାହା 'ନିଜତ୍ୱ'ର ଆହୁତି ।

ଜନସନ୍ ତାଙ୍କ କବିତାର ସଂଜ୍ଞାରେ ଉଲ୍ଲେଖ କରିଛନ୍ତି, 'Poetry is metrical composition; 'ଲାଇଫ ଅଫ୍ ମିଲିଟନ'ରେ 'It is the art of uniting pleasure with truth by calling imagination to the help of reason ଏବଂ ଏହାର essence ଅଟେ ଉଦ୍‌ଭାବନ । Macaulay ତାଙ୍କ Essay on Militon'ରେ ଆହୁରି ସୁନ୍ଦର ଭାବେ ସ୍ୱୀକାର କରନ୍ତି, "We mean the art of employing words in such a manner as to produce an illusion on the imagination, the art of doing by means of words what the painter does by means of colour' । ରଂଗରେ ଚିତ୍ରଶିଳ୍ପୀ କଳ୍ପନାକୁ କରେ ଯାହା, କବି ଶବ୍ଦରେ ରଚନା କରିଥାନ୍ତି ତାହା । ତାହା ତାଙ୍କର ଯୁଗାଶ୍ରୟୀ । ତାଙ୍କ ସମୟର ପ୍ରଭାବ ତାଙ୍କ କଳ୍ପନା ଓ ଜୀବନକୁ କରିଥାଏ ପ୍ରଭାବିତ ତାହାର ପ୍ରତିଫଳନ ବହନ କରିଥାଏ ତାଙ୍କର ସୃଷ୍ଟିର ଜଗତ । ସମକାଳୀନ ଭାରତର ରାଜନୈତିକ ହିଂସା ଓ ଆତଙ୍କର ସ୍ଥିତି ଏବଂ ଭୋଟ ପାଇଁ ନିଜତ୍ୱର ବିକ୍ରୀ କବୀଙ୍କ କଳ୍ପନାରେ ଯେଉଁ ସ୍ୟାହିଛିଂଚା ସୃଷ୍ଟି କରିଛି ତାକୁ ସିଏ ଏଠି କବିତା କରି ଦେଇଛନ୍ତି । 'ଏବେ ତ ଜୀବନରେ ରାତିର ଅବଧି / ଏତେ ଲମ୍ବା ଯେ, ଚାହିଁଲେ ବି / ଆଖି ଫିଟୁ ନାହିଁ !' xx କ'ଣ କହିବି ?/ ସୁଖ ନା

ଦୁଃଖ ? ସପନ ଡଙ୍ଗାରେ ବସି / ଭାସିବାକୁ ଚାହିଁଲା ବେଳେ / ପଛକୁ ଫେରିଯାଇଥିଲା ପାଦ'।

ଅଦେଖା ଭୟରେ ଅଜଣା ପକ୍ଷୀଟିଏ ଯେ ଆଉ କରିଥା'ନ୍ତା କ'ଣ ? ଯେଣୁ 'ପର ପିଠିରେ ପାଦ ଥୋଇ/ ଆମେ ସବୁ ଉପରକୁ / ଉଠିବା ଶିଖିଚୁ' ! 'ଅଥଚ କାହାରିକୁ କିଛି ଦେଲା ବେଳକୁ/ ଆମ ପାଖରେ କିଛି ନାହିଁ!' ମଣିଷ କି ସ୍ୱାର୍ଥସର୍ବସ୍ୱ ! ଆଧୁନିକ ଅବିବେକି ମଣିଷର ନିଜ ଚେତନାରେ ଅପୂର୍ବ ଏଇ ନିଆରା ଅନୁଭବ ସୈରିନ୍ଧ୍ରୀଙ୍କ କାବ୍ୟ ଚେତନାର ସାଂପ୍ରତିକ ସାମାଜିକ ବୈଭବ।

ସୈରିନ୍ଧ୍ରୀଙ୍କ କବିତାର ବାଗ୍‌ଧାରା (Diction) କଥିତ ଓ ହୃଦୟସ୍ପର୍ଶୀ। ଯେମିତି ଜଣେ ଆପଣାର ଲୋକ ଛଳ ଛଳ ଓ ସ୍ୱଚ୍ଛ ଭାବରେ ଅକପଟ ସତ୍ୟଟିକୁ ଉଚ୍ଚାରଣ କରୁଛି ! ତା'ର ସୁଖ, ତା'ର ସାନ୍ତ୍ୱୋନା, ତା'ର ଆତ୍ମଦହନ ଓ ଭବିଷ୍ୟତ ଅବ୍‌ଜେକ୍ଟିଭ୍ ଷ୍ଟାଇଲ୍‌ରେ ବ୍ୟାଖ୍ୟା ହୋଇ ଯାଇଛି।

ଜଣେ କବି କବିତା ଲେଖିଥାନ୍ତି ନିଜର ଆନନ୍ଦ ପାଇଁକି। ସେହି ଅଶବ୍ଦମୟ ଆନନ୍ଦ ହିଁ ଈଶ୍ୱର। ଅଶବ୍ଦମୟଙ୍କ ଶବ୍‌ଦମୟ ଅବତରଣ ହିଁ ଅଟେ ଜଣେ କବିଙ୍କ ଅଭୀପ୍ସା। ତାହା ମାୟାର ଆଙ୍ଗିକରେ ସତ୍ୟଙ୍କ ଶିବମୟ ଉପସ୍ଥାପନା। ବୈଚିତ୍ର୍ୟର ଚିତ୍ରମୟ ଉପାସନା। ଯାହା ନିଜ କବିତାରେ କରିଛନ୍ତି ସୈରିନ୍ଧ୍ରୀ। ତାଙ୍କ ଶ୍ରେଷ୍ଠ ମାନସିକତାର ସ୍ୱାକ୍ଷର 'ଫେରିଆସିବି' (Poetry is the record of the best and happiest moments of the happiest and best mind, ବୋଲି ଉଲ୍ଲେଖ କରିଛନ୍ତି ଶେଲୀ।)।

## ସୈରିନ୍ଧ୍ରୀଙ୍କ ଅତୀନ୍ଦ୍ରିୟ ଉପଲବ୍ଧିର କାବ୍ୟିକ ସ୍ୱର: 'ପ୍ରିୟତମେଷୁ'

।। ଏକ ।।

ଜଳେଶ୍ୱର ନିବାସୀ ରୀତିଯୁଗୀୟ ମହାନଭକ୍ତ ଓ କବି କୃଷ୍ଣଦାସଙ୍କ ଶ୍ରେଷ୍ଠ କାବ୍ୟଗ୍ରନ୍ଥ 'ରସକଲ୍ଲୋଳ'ର ଦୁଇଟି ପଂକ୍ତି: କବି ହୋଇ କରୁଥିବ ନିର୍ମଳ କବିତ୍ୱ/କର୍ଣ୍ଣ ଦେଇ ଶୁଣୁଥିବେ ରସିକ ପଣ୍ଡିତ।

ପୁନଶ୍ଚ କବିତାର ନନ୍ଦନତତ୍ତ୍ୱ ଉପରେ ଏଇ ଛତ୍ର: କବିତ୍ୱ ଉତ୍ତମରସ ଗୋକ୍ଷୀର/ କରି ତହି ସଙ୍ଗ ସ୍ନେହ ଶାକର/କର୍ଣ୍ଣ ତୁଣ୍ଡରେ ଯେ କରଇ ପାନ/କିଛି ହିଁ ସ୍ୱାଦୁ ଜଣାଇ ସେ ଜନ।

ଜୀବନ, ଶକ୍ତି ଓ ସୌନ୍ଦର୍ଯ୍ୟ, କଳାରେ ପ୍ରକାଶିତ ହେବ ଏହି ତ୍ରିଗୁଣ। କବିତା ସଂଗୀତର ଅନୁରୂପ ହେବ। ଶବ୍ଦ ମାଧ୍ୟମରେ ହେବ ସ୍ୱାଦ ବିତରିତ। କଳ୍ପନା କଳାଭୂମିରେ ବପିତ କରିବ ସ୍ୱପ୍ନର ବୀଜ ଏବଂ ତହିରୁ ଫଳିବ ସୁଖ। ଲେଖିଛନ୍ତି ପୋପ: Music

resembles poetry, ପୁନଶ୍ଚ: Life, force and beauty, must to all impart/ At once the source, and end, and test of Art.

ଏମିତି ଏକ ନିର୍ମଳ କବିତ୍ୱପୂର୍ଣ୍ଣ କବିତା ସଂକଳନର ଜହ୍ନ 'ପ୍ରିୟତମେଷୁ', ୨୦୦୮ରେ ପ୍ରକାଶିତ। ଚତୁର୍ଦ୍ଦଶୀ କଳାରେ ପୂର୍ଣ୍ଣତା ପ୍ରାପ୍ତ ହୋଇଥାଏ ଜହ୍ନ। କିନ୍ତୁ କବୟିତ୍ରୀ ସୌରନ୍ଧ୍ରୀ ସାହୁଙ୍କ ନିର୍ମଳ କବିତ୍ୱପୂର୍ଣ୍ଣ ଏହି କବିତାର ଜହ୍ନ ତିରିଶିଟି ଶୃଙ୍ଖଳାରେ ହୋଇଅଛି ସଂପୂର୍ଣ୍ଣ। ଯେମିତି ତିରିଶ ଦିନରେ ଗୋଟିଏ ମାସ! ଆଙ୍ଗିକ ବ୍ୟଞ୍ଜନାରେ ଲୁକ୍‌କାୟିକ ସମୟର ପ୍ରତୀକ।

ନିଜ କାବ୍ୟସୃଷ୍ଟିର ଆଭିମୁଖ୍ୟ କୃଷ୍ଣଦାସ କରିଥିଲେ ଉଚ୍ଚାରିତ-ଶୁଣ ନୃପନାଥ/ କେବଳ ଦେବଜଗନ୍ନାଥ/ ଏପିଣ୍ଡ ବିକିଅଛି ତାରେ/ ଗୀତ ମୁଁ ନବୋଲେ ଅନ୍ୟରେ। ସୈରିନ୍ଧ୍ରୀଙ୍କ ପ୍ରାଣର ଶଂଖରୁ ନିଜ ସୃଷ୍ଟିର ଲକ୍ଷ୍ୟ ଠିକ୍ ସେମିତି ନିନାଦ କରି ଉଠିଛି:

ମୁଁ ଖୋଜୁଛି ଅରୁନ୍ଧତୀ ତାରାର ଆଲୁଅ<br>
ମୁଁ ଖୋଜୁଛି ଟିକି ଗୋଟେ ଝରଣାର ସୁଅ<br>
ମୁଁ ଖୋଜୁଛି ନୀଳଜହ୍ନ<br>
ନୀଳରାତ୍ରୀ, ନୀଳପ୍ରଜାପତି<br>
ମୁଁ ଖୋଜୁଛି ଅନିର୍ବାଣ ଜୀବନଟେ<br>
ତମଠାରୁ ଛୋଟ ଗୋଟେ ପ୍ରୀତିଭରା ଚିଠି। (ପୃଷ୍ଠା - ୫୯)

ଜୀବନର ନିର୍ବାଣ ନଥାଏ। କେବଳ ଜଣକ ଜୀବନ ପ୍ରାପ୍ତ ହୋଇଛି ନିର୍ବାଣ; ସିଏ ଗୌତମ ବୁଦ୍ଧ। ଅନ୍ୟସମସ୍ତେ ସାଂସାରିକ ଶ୍ରମଣ। ଭୂ ଓ ଭୋଗର ମଣିଷ। ମରଣଶୀଳ ଓ ପ୍ରାପ୍ତ ହୁଅନ୍ତି ପୁନର୍ଜନ୍ମ। ଅସୀମଙ୍କ ସୀମିତ ଲୀଳାରେ ରହନ୍ତି ମଗ୍ନ। ଶକ୍ତି ଓ ସୌନ୍ଦର୍ଯ୍ୟର ଚନ୍ଦ୍ରବନ୍ଧନୀ ମଧ୍ୟରେ ରଜତରଶ୍ମି ବିଂଚିଥାଏ ଜୀବନର ଜହ୍ନ। କଳା ଉପଲବ୍ଧି କରାଇ ଥାଏ ସେହି ରାସର ରସ। ଅବବୋଧ କରାଇଥାଏ ସେହି ସୁଖର ସୁବାସ। ଯାହା ଉପଲବ୍ଧି କରାଇଛି 'ପ୍ରିୟତମେଷୁ' ର ପରିଚ୍ଛନ୍ନ ଫର୍ଦ୍ଦ।

'ପ୍ରୀତିଭରା ଚିଠି' ସଂପର୍କଶୀଳତାର ପ୍ରତୀକ। 'ଅରୁନ୍ଧତୀ ତାରାର ଆଲୁଅ, ଟିକି ଗୋଟେ ଝରଣାର ସୁଅ' ଚିତ୍ରକଳ୍ପର ସିରିଜ୍ ଭିତରେ ପବିତ୍ର ସ୍ୱକୀୟା ଚେତନାର ବିମ୍ବଟି ଝଲମଲ। ବହି ପ୍ରଚ୍ଛଦରେ ରହିଛି 'ସୈରିନ୍ଧ୍ରୀ ସାହୁ' ନାମ ଉପରେ ଏକ କେକୀପୁଚ୍ଛ। ଏହା ଶ୍ରୀକୃଷ୍ଣଙ୍କୁ କରେ ପ୍ରତୀକିତ। ନୀଳଜହ୍ନ, ନୀଳରାତି, ନୀଳପ୍ରଜାପତି ପ୍ରଭୃତି ଚିତ୍ର ଭିତରେ ଊର୍ଦ୍ଧ୍ୱାୟିତ ଆଧ୍ୟାତ୍ମିକ ଆସ୍ପୃହାର ଲୋହିତ ଶିଖାଟି। ଯାହା ସର୍ଜନ କ୍ରିୟାରେ ରତହୋଇ ହୋଇଯାଇଛି ଗାଢ଼ ସବୁଜ।

'ତମକୁ'-(ଦ୍ୱିତୀୟ ପୁରୁଷ ଏକବଚନଙ୍କୁ) ସମର୍ପିତ ତାଙ୍କ ତିରିଶିଟି ଯାକ କବିତା ଗୋଲାପ। ଗୋଲାପ ବାସ୍ନାରେ ସୁରଭିତ ଓ ସୁଶୋଭିତ ପୃଷ୍ଠା ଚଉଷଠୀଟି। ସମର୍ପଣରେ ନିବିଡ଼, ଆବେଗରେ ଛଳଛଳ, ନିଷ୍କାମ ଆସ୍ପୃହାରେ ପରିପୂର୍ଣ୍ଣ, ଅନବଦ୍ୟ କାବ୍ୟିକ ଝରଣାର ଜଳ: ଯାହା ଥରେ ସମର୍ପି ଦେଇଛି, ତା' ଥାଉ ତମ ପାଖରେ ମୋର ଅମାନତ ହୋଇ (ପୃଷ୍ଠା-୫୭)

ପ୍ରାଣପଦ୍ମରେ ନିଷ୍ଠା ଓ ନିବେଦନର ପଟ୍ଟାନ୍ତର ନାହିଁ। ମୁଁ ମାଗିବି ନାହିଁ ଶାମୁକା ତଳ ମୋତିର ମୂଲ୍ୟ। ଅନୁଯୋଗ ଓ ଅଭିଯୋଗ ବିନା ଜନ୍ମଜନ୍ମ ଧରି ରହିଥିବି ସେମିତି ସମର୍ପିତ। ସେଇ ପ୍ରିୟ ପୁରୁଷଟିକୁ ସିଏ ପରିଚିତ କରାଇ ଦେଇଛନ୍ତି ଦଶମ ଶୃଙ୍ଖଳାରେ। ପ୍ରତୀକ ଗୁଡ଼ିକରୁ ସ୍ପଷ୍ଟ ଫୁଟି ଦିଶେ, ଯେମିତି ଦୁଇଟି କାନ ଓ ଗୋଟିଏ ଚଷମାର ରେଖାରୁ 'ଦି ସିଂପ୍ଲିସିଟି ଇଜ୍ ଏ ମ୍ୟାନ୍', ମହାତ୍ମାଗାନ୍ଧି, ଠିକ୍ ସେମିତି:

ତମ ଷାଠିଏ ପଉଟିକୁ ମୋର ଲୋଭ ନାହିଁ
ଗୋଟିଏ ଦାନା କୈବଲ୍ୟ ହିଁ/ଢେ଼ର।

ଆଉ ଟିକିଏ ଆଗକୁ ଗଲେ ସାମ୍ନାରେ ପଡ଼େ: ଗୋଟିଏ ମାତ୍ର/ ତୁଳସୀପତ୍ର ମୋହାତରେ/ସେତିକିକୁ ନେଇ ମୋର ଟାଣପଣ/ ସେତିକିରେ ପହଞ୍ଚି ଯାଇ ପାରିବି ମୁଖଶାଳାଠୁ ମନ୍ଦିର/ସଂସାରଠୁ ସ୍ୱର୍ଗଦ୍ୱାର (ପୃଷ୍ଠା ୨୬)।

'ମୁଁ' ଓ 'ତମେ'- ଦୁଇଟି ଚନ୍ଦ୍ରବନ୍ଧନୀ, ଦୁଇଟି ନିବିଡ ସଂଯୋଗ, କାବ୍ୟ ଚେତନାର ନାୟିକା ନାୟକଙ୍କ ବ୍ୟକ୍ତିତ୍ୱ ବାଚକ ସର୍ବନାମ। ପରସ୍ପର ସଂପର୍କଶୀଳ। ସେହି ସଂପର୍କକୁ କବିତା କରିଦେଇଛି କବୀଙ୍କ ଶିଳ୍ପୀମନ: ତମେ ଯେଉଁଠି ଥାଉଛ ଥାଅ/ ମନା ନାହିଁ/ ହେଲେ ମୋତେ କରି ଦେଇଛ ଯେଉଁ ଗୁଡି/ ସେ ଗୁଡ଼ିର ସୂତା/ବନ୍ଧା ହୋଇଛି ତମ ଅଦୃଶ୍ୟ ନଟେଇରେ।(ପୃଷ୍ଠା-୨୭)। ତୁମେ କାଷ୍ଠରେ ଥାଅ କି ପିତଳରେ ଥାଅ , ପଥରରେ ଥାଅ କି ମନ୍ଦିରରେ ଥାଅ।, ତମ ଅବସ୍ଥିତି ସହିତ ସଂପର୍କ କ'ଣ ଦରକାର? ତମେ ଯେଉଁଠି ଥାଉଛ ଥାଅ, ତମ ପାଇଁ  ମୁଁ କିନ୍ତୁ ଆକାଶରେ! ପଦାର୍ଥର କିଛି ଭୂମିକା ନାହିଁ ଶୂନ୍ୟରେ ଭାସୁଥିବା ଗୁଡ଼ିପାଖରେ। ଶୂନ୍ୟତା 'ଅସହାୟତା ନୁହେଁ',ଅଦୃଶ୍ୟ ନଟେଇରେ ବଂଧା ଆଧ୍ୟାତ୍ମିକତା।

ଗୋଟିଏ ପଟାନ୍ତର ବିହୀନ ସୌନ୍ଦର୍ଯ୍ୟ ଓ ଆନନ୍ଦ ଖଂଜାଯାଇଛି କବିତା ଆଙ୍ଗିକର ଚେତନାରେ। ଏକ ଉଚ୍ଚତର ପୂର୍ଣ୍ଣତାର ସ୍ୱାଦ ବିତରିତ କରେ ସୈରିନ୍ଧ୍ରୀଙ୍କ କାବ୍ୟିକ ଅବବୋଧ।

ଜୀବନ ଆଧ୍ୟାତ୍ମିକ। ଜୀବନ ପ୍ରେମ ଅଭିଳଷିତ। ଜୀବନର ଆହାର ପ୍ରେମ। ପ୍ରେମ ପାଇଁ ବଂଚିଥାଏ ଜୀବନ। ଲେଖିଛନ୍ତି ସୈରିନ୍ଧ୍ରୀ: 'ସିନ୍ଧୁ ନୁହେଁ ବିନ୍ଦୁଟିଏ ମାତ୍ର/ ପ୍ରେମ ପାଇଁ, ତମ ପାଖରେ ମୋ ମାଗୁଣି'।

ପ୍ରେମ ଦୈହିକ ନୁହେଁ, ଦୈହିକ କାମ, ଯାହା ପ୍ରେମ ତାହା ଆଧ୍ୟାତ୍ମିକ। ଜୀବନ ପ୍ରବଣ ତାହାର ଆନନ୍ଦ ଓ ସୁଖ। 'ନ୍ୟାସନାଲ ଭାଲ୍ୟୁ ଅଫ୍ ଆର୍ଟ'ରେ ଶ୍ରୀ ଅରବିନ୍ଦ ବର୍ଣ୍ଣନା କରିଛନ୍ତି- 'God as beauty, SriKrishna in Brindavan, Shymsundar is not only Beauty, He is also Love, and without perfect love there cannot be perfect delight'.

ସେହି ପ୍ରେମ ଓ ସୌନ୍ଦର୍ଯ୍ୟ ଏକ ନିଯୁକ୍ତ ପଥ, ମାନବ ଜାତି ସେହି ପଥରେ କଲେ ଗତି ପହଂଚିବ ଅବିଦ୍ୟା ଦେଇ ବିଦ୍ୟାଠି। ପୁନଶ୍ଚ- ' Aristotle was speaking of the purification of feelings, passions and emotions in the heart through imaginative treatment in poetry'. ଅନୁଭବ, ଉତ୍କଣ୍ଠା ଓ ଆବେଗକୁ ଶୁଦ୍ଧକରେ କବିତା। ଅନ୍ୟପକ୍ଷରେ କବିତାରେ ସତ୍ୟର ବୃହତମ ଆବେଦନ ଓ ପ୍ରତିଷ୍ଠା ହେଲା ତାହାର ନାନ୍ଦନିକ ପକ୍ଷକୁ କରିବ ସମର୍ଥନ। ପୁନଶ୍ଚ ଶ୍ରୀଅରବିନ୍ଦ ଲେଖିଛନ୍ତି, ପ୍ରଥମ ଏବଂ ନିମ୍ନତମ କବିତା ଉଦ୍ଦେଶ୍ୟ ହେଲା ବିଶୁଦ୍ଧ ନନ୍ଦନତାତ୍ତ୍ୱିକ। ଦ୍ୱିତୀୟ ବୌଦ୍ଧିକ ବା ଶିକ୍ଷାପ୍ରଦ ଏବଂ ତୃତୀୟ ଉଚ୍ଚ ଆଧ୍ୟାତ୍ମିକ। ଆରିଷ୍ଟଟଲଙ୍କ ନୈତିକ ପଦ୍ଧତି ବିଶୁଦ୍ଧ ନନ୍ଦନତାତ୍ତ୍ୱିକ, ସୃଷ୍ଟିର ମାନ ଦୁଇ ପ୍ରକାର, defect and golden, in other words correct and beautiful, ଗୁଣ ଅର୍ଥରେ।

ଗୋଟିଏ ଉନ୍ନତ ମାନ ଓ ଗୁଣର କବିତା ଫର୍ଦ୍ଦଗୁଡ଼ିକରେ ବସାଇଛନ୍ତି ସୈରିନ୍ଧ୍ରୀ। ସିଏ ଲେଖିଛନ୍ତି ଜୀବନର କବିତା। କାବ୍ୟାଚାର୍ଯ୍ୟ ଶ୍ରୀଅରବିନ୍ଦଙ୍କଠୁ ଶୁଣିବାକୁ ମିଳିଛି: The sense of pleasure and delight in the emotional aspects of life and action, this is the poetry of life' ଯାହା ସୈରିନ୍ଧ୍ରୀଙ୍କ କବିତାର ଜୀବନ। ଜୀବନର ଆବେଗ, ଆନନ୍ଦ ଓ କର୍ମକୁ ସିଏ କରିଛନ୍ତି କବିତାର ଆଙ୍ଗିକ। ତାଙ୍କ କବିତାର ପ୍ରାଣ the regulating and beautiful arrangement of charcter ('ମୁଁ' ଓ 'ତମେ') and action.

ଆବେଗର ଆଙ୍ଗିକ ହେଉଛି ନାନ୍ଦନିକ ଏବଂ ନିମ୍ନତର ପ୍ରାଣର ତୃଷ୍ଣା ଉଚ୍ଚତର ପ୍ରାଣର ହୋଇଛି ବାର୍ତ୍ତା। ସୈରିନ୍ଧ୍ରୀଙ୍କ କବିତା ଆତ୍ମା ପାଇଁ ଅକ୍ଷୁର୍ଣ୍ଣ ଶିକ୍ଷା।

॥ ଦୁଇ ॥

ଗୋଟିଏ ବ୍ୟକ୍ତିଗତ ଜୀବନର ସୀମିତତାର ଊର୍ଦ୍ଧ୍ୱକୁ କବିତା ନେଇଯାଏ କବିଙ୍କୁ, ଏକ ବୃହତ୍ତର ସାରସ୍ୱତ ସଂସ୍କୃତିର ବଳୟ ଭିତରକୁ। ଦେଖନ୍ତୁ Tennyson ଙ୍କ ଏଇ ପଂକ୍ତିଗୁଡ଼ିକୁ:

There has fallen a splendid tear;
From the passion-flower at the gate;

She is coming, my dove, my dear;
She is coming, my life, my fate;
The red rose cries, "she is near, she is near";
And the white rose weeps, " she is late"
The larkspur listens, " I hear, I hear",
And the lily whispers, " I wait".
ପୁନଶ୍ଚ-My heart is like a singing bird
whose nest is in a water'd shoot
My heart is like an apple tree
Whose bough's are bent with thick-set fruit;
x x x
My heart is gladder then all these
Because my love is come to me.

ସୁନ୍ଦର ଶବ୍ଦ ବସାଣରେ ତିଆରି ହୁଏ ଭଲ କବିତା। ଭଲ କବିତା ପାଠକ ହୃଦୟ ହ୍ରଦରେ ଫୁଟାଏ ତୃପ୍ତିର ପଦ୍ମ। ବାସ୍, ଏତିକି ହିଁ କବି ଓ କବିତାର କାମ। ଯାହା ସୁଚାରୁ ରୂପେ ସଂପାଦିତ କରିଅଛି 'ପ୍ରିୟତମେଷୁ'ର ଫର୍ଦ୍ଦ।

ବସ୍ତୁବାଦୀ ଜଗତଠୁ ଊର୍ଦ୍ଧ୍ୱ ଅକ୍ଷର ଓ ଶବ୍ଦଶିଳ୍ପର ଜଗତ, ଯେଉଠି ସ୍ୱପ୍ନ, କଳ୍ପନା ଓ ଭାବନାର ଐଶ୍ୱର୍ଯ୍ୟ ପୁଞ୍ଜି। ସ୍ୱାର୍ଥପରି ଦେଖାଯାଉଥିବା ଗୋଟିଏ ନିସ୍ୱାର୍ଥପର ଜଗତ, ଗୋଟିଏ ପୁଷ୍ପମୟ ଲୋକ ଅଟେ ଆର୍ଟ। କବିତା ସଂକଳନ କାଗଜର ଶିଳ୍ପଟିଏ ନୁହେଁ. ତାହା କବିଙ୍କ ହାତଗଢ଼ା ସ୍ୱର୍ଗ। ଯଦିଓ ତାହା ତାଙ୍କ ନିଜସ୍ୱ ସତ୍ତାର ସାଂସ୍କୃତିକ ଉତ୍ପାଦନ। ସବୁ କଳା ଓ କବିତା ସୃଷ୍ଟିର ଲକ୍ଷ୍ୟ ସ୍ରଷ୍ଟା ନିଜେ ଗତି କରିବେ ଏକ ସୁନ୍ଦର ଜୀବନ ଆଡ଼କୁ। ପ୍ରସିଦ୍ଧ ଲେଖକ ଅମିତ୍ ରାୟ କହନ୍ତି, a better life..... is a balanced life, a life of rhythm and harmony' (Peraspectives in the Philosophy of Culture, page-150). ସେହିଭଳି ଏକ ଉଲ୍ଲସିତ ଜୀବନର ଚିତ୍ର 'ପ୍ରିୟତମେଷୁ'ର ସର୍ବତ୍ର। ଏହାର ପ୍ଲଟରେ ସମକୋଣୀ ଭୂମି ଦୁଇଟି। ଗୋଟିଏ ନିମ୍ନ ପରି, ଯଥା:

ଏବେ ନିଅ/ମୁଁ ଅର୍ପି ଦେଉଛି ମୋ ନିଜକୁ
ମୋତେ ଅଭିଭାଜ୍ୟ କରିଦିଅ, ମିଶେଇ ଦିଅ
ତମ ସ୍ୱେଦରେ, ରକ୍ତରେ, ଲୁହରେ, ଆତ୍ମାରେ/
ତୃପ୍ତିରେ ଏବଂ ମୋକ୍ଷରେ।

ଗୋଟିଏ ବେଗବତୀ ତଟିନୀର ଅନନ୍ତ ତୃଷ୍ଣାରେ ସମର୍ପଣର ମୁଦ୍ରା ! ଏହାର ଠିକ୍ ଅପରପାର୍ଶ୍ୱ: My heart is gladder, because my love is come to me. ଅନ୍ୟଭୂମିଟି ହେଲା- 'ନିଶ୍ୱାସକୁ ବିଶ୍ୱାସ ନାହିଁ', / ଜାଣେ ତମକୁ ବି କୋଉ ବିଶ୍ୱାସ ଯେ !

ତମେ ନୀଳନିର୍ବାଣର ସ୍ୱପ୍ନ ଭିତରେ/ବୁଣିଦେଇପାର ନୀଳକାମନାର/ମଂଜି ନିଜେ ଡଙ୍ଗା କହି ଚଢ଼େଇ ଦେଇପାର/କୁମ୍ଭୀର ପିଠିରେ/ ଦଉଡ଼ି କହି/ଧରେଇ ଦେଇ ପାର/ ସାପର ଲାଂଜ ! (ପୃଷ୍ଠା-୩୧)

ପ୍ରକୃତରେ ପୁରୁଷଟି କ'ଣ ବିପଦପୂର୍ଣ୍ଣ ? ଯଦି ଏତେ ସାଂଘାତିକ ତେବେ କାବ୍ୟ ନାୟିକା ଅମାନିଆ ବର୍ଷାର ଛିଟାପରି ତାକୁ ଭଲପାଇଥିଲା ? ପୁଣି ଗୋଟିଏ ଉଚ୍ଚାରଣ ଆସୁଛି ସାମ୍ନାକୁ: ତମପାଇଁ ଭଲପାଇଥିଲି / ଏ ଦି'ଦିନର ଜୀବନକୁ/ସେଇଥି ପାଇଁ ସାତଟା ଦୂବ/ଆଉ ବରକୋଳି ପତ୍ର ବଦଳରେ/ମାଗୁଥିଲି ତୁମ ଆୟୁଷ/ ନାଲି ସୂତାରେ ଗୋଡ଼ିବାନ୍ଧି ମାଗିଥିଲି ତୁମ ସୁଖ ।/ ଅଧିକ କିଛି ଚାହିଁ ନଥିଲି ତମଠୁ/ଚାହିଁ ନଥିଲି ମାଟିକି ଆକାଶ/ ମଠ କି ମନ୍ଦିର ।/ ମାଗି ନଥିଲି ହାତୀ, ଘୋଡ଼ା/ କି ପାଟ ଛତା ।/ ଖାଲି ଯେ ତମ ଅଖୋଜା ପଣରେ/ ଫିକା ଲାଗୁଥିଲା ଯାହା ମୋ ସମର୍ପଣ ।' (ପୃଷ୍ଠା-୬୪)

ଶେଷ ଦୁଇଧାଡ଼ି ଅଲଗା ଭୂମି । ଶେଷ ଦୁଇଧାଡ଼ିକୁ ଛାଡ଼ି ଛତ୍ରଟି ଗୋଟିଏ ପୂର୍ଣ୍ଣତା ପ୍ରାପ୍ତ ହୋଇଛି । ଗୋଟିଏ ଚେତନାର ପୂର୍ଣ୍ଣଛେଦ ତାକୁ ଧାରଣ କରିଛି । ଶେଷ ଦୁଇ ଧାଡ଼ିର ଭୂମି ଗୋଟିଏ ଅଲଗା ଚେତନାକୁ ପ୍ରତୀକିତ କରିଛି । ଦୁଇଟି ଚେତନାର ଗୋଟିଏ ସମନ୍ୱିତ ଭୂମି ତିରିଶଟିଯାକ କବିତାର ସିଂଫୋନୀ ।

।। ତିନି ।।

ଥରେ ଫେଡ୍ରେରିକ୍ ଗର୍ସିଆ ଲୋର୍କା କହିଲେ, 'But what am I going to say about poetry? what can I say about these clouds, about this sky? To gaze, to gaze, to gaze at them, to gaze at it, and nothing more,' ଆଃ କି ଅନୁପମ ଉଚ୍ଚାରଣ ! ଠିକ୍ ସେମିତି ମୈରିନ୍ଧ୍ରୀଙ୍କ କବିତା ଉପରେ କହିବାକୁ ଗଲାବେଳେ ଚକ୍ଷୁ ମୋହମୁଗ୍ଧ ହୋଇ ତାଙ୍କ ପଂକ୍ତିର ଅଠାରେ ଲାଖି ଯାଉଛି ।

ଲୋର୍କାଙ୍କ ପରବର୍ତ୍ତୀ ପଂକ୍ତିଥିଲା, 'ଆପଣ କିମ୍ୱା ମୁଁ କିମ୍ୱା କୌଣସି କବି କେହି ଜାଣି ନାହାଁନ୍ତି କବିତା କ'ଣ !' ପ୍ରକୃତରେ କ'ଣ ଏଇ ମେଘ ? ଏଇ ଆକାଶର ଅର୍ଥ କ'ଣ ? ଧୋବନୀଳ ଅସୀମ ଓ ଅନୁପମ ଆକାଶର ସୌନ୍ଦର୍ଯ୍ୟକୁ କେମିତି ମାପିବ ମଣିଷର ଛୋଟ ଛୋଟ ଆଖି ? ଫୁଲକୁ ମାପି ପାରିବ କେଉଁ ବିବେକୀ ?

ମଦାର କଢ଼ ଭିତରେ ସାଇତା କସ୍ତୁରୀର ଏକାକୀତ୍ୱ ଅଣୁଏକୁ କୋମଳ ନିଶ୍ୱାସରେ ନିଗାଡି ଦେଇଛନ୍ତି ସୈରିନ୍ଧ୍ରୀ। ପଲ୍ଲବିତ କରିଦେଇଛନ୍ତି ସ୍ନେହର ମଦିରାରେ ଅପ୍ରକଟ ନୀରବତାକୁ। ତାଙ୍କ ଶୂନ୍ୟ ମଣ୍ଡଳକୁ ସିଏ ପୂର୍ଣ୍ଣ କରିଛନ୍ତି ଖଂଜି ଦେଇ ବିଶ୍ୱାସ, ସ୍ୱପ୍ନ, ଆଶା ଓ ଅନୁରାଗର ମୋତିମାଳ।

'ମୁଁ ତ ଏଣିକି ଦୁଇହାତ ଟେକି/ ଦେଇଛି ତମ ପାଖରେ,/ ଭାଗ୍ୟ, ଭବିତବ୍ୟ, ଇତିହାସ ସବୁ ତମ ହାତରେ' (ପୃଷ୍ଠା-୫୪)। ଅଥଚ- 'ତମେ କ'ଣ କଲ ?/ ଗୋଟିଏ ନିଶ୍ୱାସରେ ବିଧ୍ୱସ୍ତ କରିଦେଲ/ ମୋ ଭିତରର ନୀଳାମ୍ବୁ ଇଲାକା/ ଭାଙ୍ଗି ଦେଲ ରତ୍ନସିଂହାସନ/ ଉଡ଼େଇ ଦେଲ ଧୂଳି କରି/ ମୋ ଭିତରର ମିନାକରା ଅହଂକାର ?' ଗୋଟିଏ ଉପମାନ ପାଇଁ ଥାକେ ଚିତ୍ରର ପ୍ରୟୋଗ ପ୍ରତ୍ୟେକ ଛତ୍ରର ଗୌରବ। ଏଇ ବହିସ୍ଥ କବିତା ଗଠନର ରୀତି।

ଥରେ କବି ପୋପ୍ ଗୋଟିଏ କବିତାରେ ପ୍ରକାଶ କରିଥିଲେ କ୍ଷୋଭ: .... in a rounded time, rounded / With a low horizon of feeling..../ We have forgotten the old high modes of living.' ପ୍ରକୃତରେ ସେଇ ପ୍ରାଚୀନ ନିବିଡ଼ ଭଲ ପାଇବାକୁ ଆମେ ଭୁଲିଗଲେଣି ? ଯଦି ଭୁଲିଗଲେଣି ତେବେ 'ପ୍ରିୟତମେଷୁ' ଭଳି କମନୀୟ କବିତାର ପୁଷ୍ପ ପ୍ରସ୍ଫୁଟିତ ହେଲା କେମିତି ?

ଆରମ୍ଭରେ କାବ୍ୟନାୟିକାର ସ୍ୱୀକାରୋକ୍ତି: ମୁଁ ତ କୋଉ କାଳେ ଅସତର୍କ ନଥିଲି ! ଟିକେ ଆନମନା ହୋଇଗଲି ତ। /ତମେ ଚୋରେଇ ନେଲ/ମୋ ହୃଦୟଟାକୁ/ ଏତେ ସନ୍ତର୍ପଣରେ ? ଏତେ ଛଟକରେ ? x x ହୃଦୟ ନାହିଁ ବୋଲି ତ/ ଟାଣପଣତକ ମାଟିକାନ୍ଥ।'

ଏବେ ହୃଦୟ ବିନା ସିଏ ନିସ୍ୱ। ସିଏ ଜାଣିଛି, ଜୀବନ ତାର ଭୋଗ ପାଇଁ ନୁହେଁ, ଭବ ତାର ଭାବ ପାଇଁ, ସେଇଥି ପାଇଁ ସିଏ ସମର୍ପି ଦେଇଛି ନିଜକୁ। ଇଚ୍ଛା ଓ ଅପେକ୍ଷାର ଅଗଣା ଲିପିଛି। ତୁମେ ଆସିବ; ତା' ଆଶାରେ ଖଂଜିହୋଇ ଯାଇଛି କାକରର ମୋତି। ତା ଇଚ୍ଛାର ଦଧିନଉତିରେ ବନ୍ଧା ହୋଇ ସାରିଛି ବାରହାତି ନେତ। ଏହା ପ୍ଲଟର ପ୍ରଥମ ଭୂମି। ଦ୍ୱିତୀୟ ଭୂମିକୁ ତାର ଉପଲବ୍ଧି: ତମ ସାଙ୍ଗରେ ସ୍ୱର୍ଗଯାତ୍ରା କି ନର୍କ ଭୋଗକୁ/ ମୋର ଲୋଭ ନାହିଁ/ ଅନ୍ୟ କେଉଁ ଗ୍ରହ ମଣ୍ଡଳକୁ ବି ଯିବି ନାହିଁ;/ ମୋର ନାମହୀନ ନିରୋଳା ଲଗ୍ନକୁ/ ଅର୍ପିଦେବି ଥରେ ମାତ୍ର/. ତମ ପାପୁଲିରେ' (ପୃଷ୍ଠା-୧୧)।

ପରବର୍ତ୍ତୀ ଭୂମିରେ ପୁଣି ପାଗପରି ଭାବ ବଦଳୁଛି ଓ ଅଭାବରୁ ଜର୍ଜରିତା ନାରୀଟି ତା'ର ସ୍ୱୀକାରୋକ୍ତି ବାଢ଼ିଛି: ଆଉ ଚିହ୍ନାଅ ନାହିଁ ନିଜକୁ;/ ଚିହ୍ନିବାକୁ ଆଉ ବାକିଅଛି ?/

ଚିହ୍ନି ସାରିଛି ବୋଲି ତ/ ଏତେ କଷ୍ଟ ପାଉଛି ନିଜ ଭିତରେ' (ପୃଷ୍ଠା-୧୨)। ବରଂ 'ପ୍ରିୟତମେଷୁ' ଏକ ଅସ୍ତିତ୍ୱବାଦୀ କବିତା ସଂକଳନ। ମୁଁ ଓ ତମେର ଅସ୍ତିତ୍ୱ ମଝିରେ ଦ୍ୱିତୀୟା ଜହ୍ନ ପରି ଚେତନାର ନୀଳ ଆକାଶରେ ଭାସିଉଠୁଥିବା ଚିରୁଡ଼ାଏ ଈଶ୍ୱରଙ୍କୁ ଚିହ୍ନାଇ ଦିଏ ନିରୀମାଖୀ ନାୟିକା: ଦୁଃଖ, ନିସଙ୍ଗତାକୁ/ ଦେଇ ଚାଲିଛ ବୋଲି ତ/ ତମେ ପାଲଟି ଯାଇଛ ଈଶ୍ୱର।/ ମୁଁ ଅଣ୍ଟି ପାତିଛି। ସବୁ ଅଜାଡ଼ି ଦିଅ ସନ୍ତର୍ପଣରେ।/ ସେମାନଙ୍କ ଅନନ୍ତ ଆଲିଙ୍ଗନ ହିଁ/ ମୋ ପାଇଁ ତମର ପ୍ରାପ୍ତି ଓ ନୀଳ ବିସ୍ମୃତି।' ଆଉ ଟିକିଏ ଆଗକୁ ଗଲେ ଦେଖିବାକୁ ମିଳେ: ମୁଁ ତ ପ୍ରତି ମୁହୂର୍ତ୍ତରେ ମରୁଥାଏ/ ଖାସ୍ ତମ ପାଇଁ। ଲୁହ ଦେଲ/ କ୍ଷତି ବି ଦେଲ, ଠିକ୍ ଅଛି,/ ଯାହା ଦେଉଛ ଦିଅ ପଛେ, କିନ୍ତୁ ଏମିତି ଦେଇ ଚାଲିଥାଅ।/ ସବୁଦିନ, ମୁଁ ନେଇ ଚାଲିଥିବି; କିନ୍ତୁ ତମ ପାଇଁ ମୋ ପାଖରେ କିଛି ନାହିଁ।/ ପ୍ରେମ ଆଉ ପ୍ରାର୍ଥନାକୁ ଛାଡ଼ି।'

ଏଇଠି ସାମ୍ନାକୁ ଆସେ କଲେରିଜ୍‌ଙ୍କ ଧାଡ଼ି: He prayeth best, who loveth best / All things both great and small/ For the dear God who loveth us,/ He made and loveth all.'

'ପ୍ରିୟତମେଷୁ' ରେ poetical feelings କବୟିତ୍ରୀଙ୍କର ଅତି ଚମତ୍କାର। ଶବ୍ଦ ଖେଳରେ ତାଙ୍କର ନୈପୁଣ୍ୟ କ୍ରୟ କରି ନିଏ ମନ। ତାଙ୍କ ପାୱାର ଅଫ ଇନ୍‌ସ୍ପିରେସନ୍ ଓ କ୍ରିଏଟିଭ୍ ଏନର୍ଜିକୁ ପ୍ରଶଂସାର ପୁଷ୍ପଗୁଚ୍ଛ ନ ଦେଇ ରହିହେବ ନାହିଁ।/ Berstow Greenbie ଲେଖିଛନ୍ତି ଖଣ୍ଡିଏ ବହି Wordsworth's Theory of poetic Diction'। କବିତାର ଶବ୍ଦ ବସାଣକୁ ସିଏ କରିଛନ୍ତି ଦୁଇ ଭାଗ। ଗୋଟିଏ ମୌଖିକ ଭାଷା ଏବଂ ଅନ୍ୟଟି special language of poetry। କଥିତ ଭାଷାର କଳାତ୍ମକତାରେ ତିଆରି ହୋଇଛି 'ପ୍ରିୟତମେଷୁ'ର ପଂକ୍ତି। ଜନଜୀବନ ଶୈଳୀରୁ କବିତାର ଶୈଳୀ ସୈରିନ୍ଧ୍ରୀ ଗଠିତ କରିଛନ୍ତି।

କୀଟସ୍ ଲେଖିଛନ୍ତି 'Poetry is Adam's Dream.' ସୈରିନ୍ଧ୍ରୀଙ୍କ କବିତା ଇଭର୍ ସ୍ୱପ୍ନ। ୱାଡ଼ସ୍‌ୱାର୍ଥଙ୍କ ତତ୍ତ୍ୱ ଅନୁଯାୟୀ, ପାୱାରଫୁଲ ଅନୁଭବମାନଙ୍କ ଏଥିରେ ଘଟିଛି ଓଭରଫ୍ଲୋ। କାଳ ଉର୍ଦ୍ଧ୍ୱରେ ସ୍ୱାଧୀନ ଅନୁଭବ ଗୁଡ଼ିଏ ଅତିଶକ୍ତିଶାଳୀ ଭାବେ ହୋଇଛି ହୃଦୟଗ୍ରାହୀ। ଲରେନ୍ସ ଲେଖିଛନ୍ତି 'ଜଣେ ମହିଳା ଏକ ଜୀବନ୍ତ ଝରଣା,' ସେହି ଝରଣାର କୁଳୁକୁଳୁ ମଧୁର ନିନାଦ 'ପ୍ରିୟତମେଷୁ' ରେ ଛନ୍ଦବଦ୍ଧ।

।। ଚାରି ।।

ମସ୍ତକରେ କେଶ ସହିତ ଯେପରି ଶିଶୁର ଜନ୍ମ, ଭାରତୀୟ ସାହିତ୍ୟ ସହିତ ସେହିପରି ଛଂଦର ସଂବନ୍ଧ। ଆଦ୍ୟରୁ ଛଂଦ ବର୍ଣ୍ଣକ। ଶାସ୍ତ୍ରୀୟ ଛଂନ୍ଦ ପରଂପରାରେ ସମସ୍ତ

ଛନ୍ଦ ଚତୁଷ୍ପାତ୍ କିନ୍ତୁ କେତେକ ତ୍ରିପାତ୍ ଓ ପଞ୍ଚପାତ୍ ଦୃଷ୍ଟିଗୋଚର ହୁଅନ୍ତି। ଶୌନକ ଋକ୍‌ପ୍ରତିଶାଖ୍ୟରେ ବର୍ଣ୍ଣନା କରିଛନ୍ତି: ଗାୟତ୍ର୍ୟୁଷ୍ଣିଗନୁଷ୍ଟୁପ୍ ଚ ବୃହତୀ ଚ ପ୍ରଜାପତୈ/ ପଂକ୍ତି ତ୍ରିଷ୍ଟୁଭ ଜଗତୀ ଚ ସପ୍ତଛଂଦାସି ତାନିହ।

ଅର୍ଥାତ୍ ଗାୟତ୍ରୀ (ତ୍ରିପାତ୍ ଛନ୍ଦ, ପ୍ରତ୍ୟେକ ଚରଣ ୮ବର୍ଣ୍ଣ), ଉର୍ଷ୍ଣିକ୍ (ତ୍ରିପାତ୍ ଛନ୍ଦ, ପ୍ରଥମ ଦ୍ୱିତୀୟ ଚରଣ ୮ବର୍ଣ୍ଣ, ତୃତୀୟ ଚରଣ ୧୨ବର୍ଣ୍ଣ), ଅନୁଷ୍ଟୁପ (ଚତୁଷ୍ପାତ୍ ଛନ୍ଦ, ପ୍ରତ୍ୟେକ ଚରଣ ୮ବର୍ଣ୍ଣ), ବୃହତୀ (ପ୍ରଥମ, ଦ୍ୱିତୀୟ, ଚତୁର୍ଥ ଚରଣ ୮ ବର୍ଣ୍ଣ, ତୃତୀୟ ଚରଣ ୧୨ବର୍ଣ୍ଣ), ପଂକ୍ତି (ପଞ୍ଚପାତ୍, ପ୍ରତ୍ୟେକ ଚରଣରେ ବର୍ଣ୍ଣସଂଖ୍ୟା ୮) ତ୍ରିଷ୍ଟୁପ (ଚତୁଷ୍ପାତ୍ ଛନ୍ଦ, ପ୍ରତ୍ୟେକ ଚରଣରେ ୧୧ବର୍ଣ୍ଣ) ଏବଂ ଜଗତୀ (ଚତୁଷ୍ପାତ୍ ଛନ୍ଦ, ପ୍ରତ୍ୟେକ ଚରଣରେ ୧୨ ବର୍ଣ୍ଣ ରହେ)

ଏହି ବୈଦିକ ଛନ୍ଦରେ ବର୍ଣ୍ଣମାନଙ୍କ ସଂଖ୍ୟା ପ୍ରଧାନ ଭେଦକ ତତ୍ତ୍ୱ। କିନ୍ତୁ ଶାସ୍ତ୍ରୀୟ ବର୍ଣ୍ଣିକ ଛନ୍ଦ ପରଂପରାରେ ଲଘୁତ୍ୱ ଗୁରୁତ୍ୱକୁ ଧ୍ୟାନ ଦେଇ ଛନ୍ଦମାନ ଜନ୍ମିତ। ନାଟ୍ୟଶାସ୍ତ୍ରର ପଞ୍ଚଦଶ ଓ ଷୋଡ଼ଶ ଅଧ୍ୟାୟରେ ଭରତ ଏକାକ୍ଷର ଛନ୍ଦ 'ଉକ୍ତ' ଠୁ ଆରମ୍ଭ କରି ଛବିଶ ଅକ୍ଷର ଯୁକ୍ତ ଛନ୍ଦ 'ଉକ୍ତୃତି'ର ବିବିଧ ଉଦାହରଣମାନ ଉପସ୍ଥାପନ କରିଛନ୍ତି। ଛବିଶଠୁ ଅଧିକ ଅକ୍ଷରଯୁକ୍ତ ଛନ୍ଦକୁ 'ମାଳାବୃତ୍ତ' ବୋଲି ସିଏ କରିଛନ୍ତି ନାମିତ। ପରବର୍ତ୍ତୀ ସମୟରେ ତାହାକୁ କୁହାଗଲା 'ଦଣ୍ଡକ'। ସେହି 'ଦଣ୍ଡକ' ଅପଭ୍ରଂଶରେ ହୁଏତ ହୋଇଥାଇ ପାରେ 'ଦାଣ୍ଡୀ', ଶାରଳା ଦାସଙ୍କ ବୃତ୍ତର ଛନ୍ଦ। ବ୍ୟବହାରିକ ଦୃଷ୍ଟିରୁ ଛନ୍ଦ ପରମ୍ପରାର ଉଦୟ ସର୍ବପ୍ରଥମ ବାଲ୍ମୀକି ରାମାୟଣରୁ ଦେଖିବାକୁ ମିଳେ। ବାଲ୍ମୀକି ରାମାୟଣର ପ୍ରଧାନ ଛନ୍ଦ ଅନୁଷ୍ଟୁପ୍ ହେଲେ ମଧ୍ୟ ଇଂଦ୍ରବଜ୍ରା ଉପେନ୍ଦ୍ରବଜ୍ରା ଶ୍ରେଣୀୟ ଛନ୍ଦ (କିଷ୍କିନ୍ଧା କାଣ୍ଡ, ଅଧ୍ୟାୟ ୩୦) ଓ ବଂଶସ୍ଥ (ଅରଣ୍ୟକାଣ୍ଡ ୧୩-୨୫, ୩୮-୩୩) ଆଦି ସ୍ଥାନ ମାନଙ୍କରେ ହୋଇଥାଏ ଦୃଷ୍ଟିଗୋଚର। ତ୍ରିଷ୍ଟୁପ୍ ଓ ଜଗତୀର ମିଶ୍ରଣରେ ତିଆରି ହୁଏ 'ଅର୍ଦ୍ଧସମବୃତ୍ତ'। ସେହିଭଳି 'ରୁଚିରା' ଛନ୍ଦର ମିଳେ ନିଦର୍ଶନ। ଯାହାର ଗଣବ୍ୟବସ୍ଥା 'ଜ ଭ ସ ଜ ଗ' ତଥା ଯତି ବ୍ୟବସ୍ଥା ୪ ଓ ୯(ମୋଟ୧୩ ବର୍ଣ୍ଣ)।

କାଳିଦାସ ଓ କବି ଅଶ୍ୱଘୋଷଙ୍କ ରଚନାରେ ଛନ୍ଦର ବିବିଧତା ଦ୍ରଷ୍ଟବ୍ୟ ଅଧିକ। ସେମାନେ ପ୍ରାଚୀନ କବିଙ୍କ ପ୍ରଯୁକ୍ତ ଛନ୍ଦରେ କିଛିକିଛି ଏପଟ ସେପଟ କରି ତୋଳିଛନ୍ତି ନୂତନ ଛନ୍ଦର ଗୁଂଜନ। ଉଦାହରଣ ସ୍ୱରୂପ ମଂଦାକ୍ରାନ୍ତାକୁ ଟିକିଏ ଅଦଳ ବଦଳ କରି ତିଆରି ହୋଇଛି 'ଭାରାକ୍ରାନ୍ତା' ଓ 'ହରିଣୀ'। 'ସ୍ରଗ୍‌ଧାରା'ର ତୃତୀୟ ଯତି ଅଂଶ ଟିକିଏ ବଦଳାଇ ଦେଲେ ହୋଇଥାଏ 'ସୁବଦନା' ଛନ୍ଦ। ମହାକବି ଭଟ୍ଟି ନର୍ଦ୍ଦଟକ ଓ ଜଳୋଦ୍ଧତଗତି ଦୁଇ ଛନ୍ଦକୁ ମିଶ୍ରିତ କରି ଦେଇ ସୃଷ୍ଟି କଲେ 'ଅଶ୍ୱଲଳିତ' ଛନ୍ଦ। ମହାକବି

ମାଘ ତାଙ୍କ ଶିଶୁପାଳବଧରେ ଧୃତଶ୍ରୀ, ମଂଜରୀ, ଅତିଶାୟିନୀ, ରମଣୀୟକ ନାମରେ ଚାରୋଟି ଅପ୍ରସିଦ୍ଧ ବା ନୂତନ ଛନ୍ଦରେ କବିତାର କଳ୍ପଲତାକୁ ସଜିତ କରିଛନ୍ତି । ହେମଚନ୍ଦ୍ର ନର୍ଦ୍ଦଟକ ଓ ରଥୋଦ୍ଧତା ନାମକ ଦୁଇଛନ୍ଦର ଯତିଖଣ୍ଡକୁ ଯୋଡ଼ି 'ପ୍ରଭଦକ' ଛନ୍ଦ ତିଆରି କରିଛନ୍ତି, ଯାହାର ଉଦାହରଣ 'ଛନ୍ଦୋନୁଶାସନରେ ଦେଖିବାକୁ ମିଳେ ।

ଅପଭ୍ରଂଶ ତାଳ ଛନ୍ଦର ସର୍ବପ୍ରଥମ ପ୍ରୟୋଗ କାଳିଦାସଙ୍କ 'ବିକ୍ରମୋର୍ବଶୀୟ' ନାଟକର ଚତୁର୍ଥ ଅଙ୍କରୁ ମିଳିଥିଲା ଦେଖିବାକୁ । ଯେଉଁଠି ଅନେକ ଲୋକଗୀତାତ୍ମକ ଛନ୍ଦ ହୋଇଛି ପ୍ରଯୁକ୍ତ ।

ଗୋଟିଏ କଥା ହୁଏ ସ୍ପଷ୍ଟ, ଯେମିତି ଓଁ= ଅ+ଉ+ମ ଅଣଚାଶଟି ଯାକ ବର୍ଣ୍ଣର ମୂଳବୀଜ, ଠିକ୍ ସେମିତି ବେଦର ସାତଟି ଯାକ ଛନ୍ଦରୁ ଅନ୍ୟ ସମସ୍ତ ଛନ୍ଦର ଜନ୍ମ । ଓଡ଼ିଆ କବିତା ଛନ୍ଦର ଗୁଳାରେ ରହି ଆସିଛି ସଚ୍ଚିରାଉତରାୟଙ୍କ ପର୍ଯ୍ୟନ୍ତ । ସଚ୍ଚି ରାଉତରାୟ ବଂଗୀୟ ପ୍ରଭାବରେ ପରଂପରାର ଗୁଳା ଭଗ୍ନ କଲେ ସର୍ବ ପ୍ରଥମେ 'ପାଣ୍ଡୁଲିପି' ର ଫର୍ଦ୍ଦରେ ଏବଂ ନୂତନ ଛନ୍ଦର ଇସ୍ତାହାର କଲେ ଘୋଷଣା । ବାକ୍ ଭଙ୍ଗୀୟଛନ୍ଦ, ବାକ୍‌ଛନ୍ଦ, ପୟର ଜାତୀୟ ଛନ୍ଦ, ଗଦ୍ୟଛନ୍ଦ, ମୁକ୍ତଛନ୍ଦ ଏମିତି କବିତା ଅଭିବ୍ୟକ୍ତିର ନୂଆ ନୂଆ ପୋଷାକ । ଇଂରାଜୀ ପ୍ରଭାବିତ 'ସନେଟ୍' ଶୈଳୀକୁ ପିତଳ ଦୋଅଣୀ କରି 'ଫ୍ରିଭର୍ସ' ବା ସ୍ୱଚ୍ଛନ୍ଦ ଛନ୍ଦର ଶୃଙ୍ଖଳା ଓଡ଼ିଆ କବିତାକୁ ଦଖଲ କଲା । ଓଡ଼ିଆର ଆଦି ମହାକାବ୍ୟ ଶାରଳା ଦାସଙ୍କ 'ଦାଣ୍ଡୀ' ଠୁ 'ସ୍ୱଚ୍ଛନ୍ଦ' ଶୈଳୀରେ ବେଶୀ ପାର୍ଥକ୍ୟ ନଥିଲା । ଦାଣ୍ଡୀର ଅନ୍ତବର୍ଣ୍ଣ ମେଳ କେବଳ ଏଥିରେ ଅଦୃଶ୍ୟଥିଲା । ନିଜକୁ ସୁହାଇବା ଭଳି ତଥା ସୁଖଲାଗିଲା ଭଳି ସଂଳାପର ଭଙ୍ଗାଭଙ୍ଗା ଅଂଶରେ କବିତାର ଚିତ୍ରଟି ତିଆରି ହେଲା ।

ସଚ୍ଚିରାଉତରାୟ, ଗୁରୁପ୍ରସାଦ ଓ ଭାନୁଜୀରାଓଙ୍କ ପରେ ଓଡ଼ିଆ କବିତାରେ ଗୋଟିଏ ସୁବର୍ଣ୍ଣଯୁଗ ତିଆରି କଲେ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ରାଜେନ୍ଦ୍ର କିଶୋର ପଣ୍ଡା, ଦୀପକ ମିଶ୍ର ଭଳି ଅସ୍ତହୀନ ମହାମହା କବିବୃନ୍ଦ । ସେଇମାନଙ୍କ ପରଂପରାର ଦାୟଦ ନୂତନ ସହସ୍ରାବ୍ଦ ଆଦ୍ୟଦଶଂଧିର ଜଣେ ପ୍ରଚଣ୍ଡ ଶକ୍ତିଶାଳୀ କବୟିତ୍ରୀ ସୈରିନ୍ଧ୍ରୀ ଅଟନ୍ତି । ତାଙ୍କ 'ପ୍ରିୟତମେଷୁ'ର ଛନ୍ଦରେ ସିଏ ଗତ ଶତକର ଭାରତୀୟ ଶ୍ରେଷ୍ଠ କବୟିତ୍ରୀ ସରୋଜିନୀ ନାଇଡୁଙ୍କ ସମକକ୍ଷ ବୋଧ ହୁଅନ୍ତି । ସରୋଜିନୀଙ୍କ 'Palanquin bearers' କବିତାର କିୟଦଂଶ ଏଠାରେ ଉଦାହରଣ ସ୍ୱରୂପ ଉଦ୍ଧାରିତ କରୁଛି:

'Lightly, O lightly, we bear her along
She always like a flower in the wind of our song,
She skims like a bird on the foam of a stream

She flots like a laugh on the lips of a dream
Gaily, O gaily, we glide and we sing
We bear her along like a pearl on a string'

ସୈରିନ୍ଧ୍ରୀଙ୍କ ପ୍ରତ୍ୟେକ ଏପିସୋଡ଼ରେ ଏହିପରି ମଧୁର ଛନ୍ଦର ମୂର୍ଚ୍ଛନା, ରୂପକର ଚିତ୍ରଶାଳା, ଅନୁଭବ ଓ ଅବବୋଧର ସୌନ୍ଦର୍ଯ୍ୟପୂର୍ଣ୍ଣ ଉଚ୍ଛୁଳା ତରଙ୍ଗ ପରିପୂର୍ଣ୍ଣ। କବିତା ଓ ନାଟ୍ୟକୀୟତା ତାଙ୍କ ଭାବ ଓ ଭାବନାର ଧାରାକୁ ଗୋଟିଏ ରୂପାର ମକୁଟପରି କରିଛି ଉଜ୍ଜ୍ୱଳ। ଅଭିମାନିନୀ ତଥା ଗୋଟିଏ ଗୁମାନୀ ନାୟିକାର ପ୍ରଶ୍ୱାସର ଛନ୍ଦ ଶବ୍ଦର ପୁଷ୍ପରେ ମଣ୍ଡି ଦେଇଛି ଫର୍ଦ୍ଦ। ଶବ୍ଦ ପ୍ରୟୋଗରେ ସୈରିନ୍ଧ୍ରୀ ଖୁବ୍ ସତର୍କ। କାରଣଯୁକ୍ତ ଶବ୍ଦ ବ୍ୟତୀତ ସିଏ ଆଦୌ ପ୍ରୟୋଗ କରି ନାହାଁନ୍ତି ଅକାରଣଯୁକ୍ତ ଶବ୍ଦ। ତେଣୁ ତାଙ୍କର ସବୁ ଧାଡ଼ି ବୋଧ ହୁଏ ଲକ୍ଷ୍ୟ ଭେଦୀ ଏବଂ ସହୃଦୟଙ୍କ ମର୍ମକୁ କରିଥାଏ ବିଦ୍ଧ।

'ସଖା'ର ପରବର୍ତ୍ତୀ ସାରସ୍ୱତ ଉତ୍ତରଣ କବିତାର ପ୍ଲଟ ଦୃଷ୍ଟିରୁ 'ପ୍ରିୟତମେଷୁ', ଏକ ସଫଳ କୃତିତ୍ୱ। ଏହା ଏଭଳି ଏକ ଶବ୍ଦର ଇନ୍ଦ୍ରଧନୁ, ଯାହାର ରଙ୍ଗ ମାତ୍ର ଏକ, ତାହା ଅନୁରାଗ। ଅନୁରାଗୀମାନଙ୍କ ହୃଦୟର ଆକାଶକୁ କରିଦିଏ ଉଜ୍ଜ୍ୱଳ।

କବିତା ସୃଜନଶୀଳ ଗୋଟିଏ ସବୁଜମନ ଓ ମୁହୂର୍ତ୍ତର ଶ୍ରେଷ୍ଠ ଦଲିଲ୍। କାହିଁକି ଘଟେ ଏହାର ଅଭିବ୍ୟକ୍ତି? ମାନବ ହୃଦୟ ତରୁରେ କାହିଁକି ପଲ୍ଲବିତ ହୁଏ କବିତା? ଶବ୍ଦର ପୁଷ୍ପ ପ୍ରସ୍ଫୁଟିତ ହୁଏ କାହିଁକି? ପ୍ରତ୍ୟୁତ୍ତରରେ ଶ୍ରୀଅରବିନ୍ଦ ଲେଖିଛନ୍ତି, 'The word "expression' means only something that is manifested by the Ananda and of which Ananda is the essence. Love and Beauty are powers of Ananda as Light and knowledge are of consciousness'। ସାରସ୍ୱତ ଆନନ୍ଦ ଦ୍ୱାରା ସୈରିନ୍ଧ୍ରୀଙ୍କ ଏହି କାବ୍ୟିକତାର ପ୍ରତିଷ୍ଠା ଘଟିଛି। ଏହାର ନିର୍ଯ୍ୟାସ ସାରସ୍ୱତ ଆନନ୍ଦ। ଭଲପାଇବା ଓ ସୌନ୍ଦର୍ଯ୍ୟ ସେହି ଆନନ୍ଦରୁ ପ୍ରତିଷ୍ଠା ପ୍ରାପ୍ତ ହୋଇଛି। ଯେମିତି ଆଲୋକ ଓ ଜ୍ଞାନକୁ ପ୍ରତିଷ୍ଠିତ କରିଥାଏ ଚୈତନ୍ୟ।

ସୈରିନ୍ଧ୍ରୀଙ୍କ କବିତା ଉତ୍ତରଣମୁଖୀ ଏକ ସବୁଜ ସ୍ରୋତ। ଯେମିତି ହରଶିରରୁ ତାହା ଅବତରଣ କରୁଛି ହିମାଳୟକୁ ।

ତାଙ୍କ ଗତି ଅପ୍ରତିହତ। ତାଙ୍କ ଅଭୀପ୍ସା ଓ ନିନାଦ ତୀବ୍ର, ଆଗକୁ ପଥ ଅନେକ ଏବଂ ଏକ ତୃଷିତ ଭବିଷ୍ୟତ ତାଙ୍କୁ କରୁଛି ଆବାହନ।



# କଲେରିଜ୍ ଓ କବିସୂର୍ଯ୍ୟ: ବ୍ୟକ୍ତିତ୍ୱର ନୂତନ ଫର୍ଦ୍ଦ

*"What is poetry? is so nearly the same question with, What is poet? that the answer to the one is envolved in the solution of the other."*

- Samuel Coleridge in 'Biographia Literaria'.

ସ୍ଥାନ ବଡ଼ ଖେମଣ୍ଡି । ୧୭୧୯ ମସିହା ମାଘ ଶ୍ରୀପଞ୍ଚମୀ । ବୃଦ୍ଧ ଉଜ୍ଜ୍ୱଳ ରଥଙ୍କ ଆକୁଳ ଡାକ ଶୁଣି ଆରାଧ୍ୟ ଇଷ୍ଟଦେବ ପ୍ରଦାନ କଲେ କୁଳୋଜ୍ଜ୍ୱଳ ପାଇଁ ଗୋଟିଏ ପୁତ୍ର । ଇଷ୍ଟଦେବଙ୍କ ନାମାନୁଯାୟୀ ନାମିତ କରିଥିଲେ ପୁତ୍ରନାମ ବଳଦେବ । ବଳଦେବଙ୍କ ବୟସ ଦଶ । ଉପନୟନ ହେଲା ସମାପନ । ଏହାର ଠିକ୍ ଚାରିମାସ; ତାଙ୍କ ଜନନୀଙ୍କ ହେଲା ସ୍ୱର୍ଗବାସ । ମାତୃଛେଉଣ୍ଡ ଶିଶୁଟିକୁ ଅଜା ତ୍ରିପୁରାରୀ ଓତା ନେଇ ଆସିଥିଲେ ଆଠଗଡ଼ ।

ପ୍ରସିଦ୍ଧ ବହୁକବିଙ୍କ ଜୀବନ ପଥ ପ୍ରାୟ ଏକାପରି ! ନଅ ଭାଇ ଓ ଗୋଟିଏ ଭଉଣୀଙ୍କ ମଧ୍ୟରେ ସବା ସାନ ଥିଲେ ଇଂଲିଶ୍ କବି କଲେରିଜ୍ । ଡେଭୋନ୍‌ସେୟାରର ଛୋଟ ଗୋଟିଏ ଗାଁ, ଓଟେରୀ । ୧୭୭୨ ମସିହା ଜନ୍ମ ହୋଇଥିଲେ କଲେରିଜ୍ । ସୁଖ ଓ ଶାନ୍ତିମୟ ଶୈଶବ ତାଙ୍କ ସମାପ୍ତ ହୋଇଯାଇଥିଲା ମାତ୍ର ନଅବର୍ଷ ବୟସରେ; ଯେତେବେଳେ ତାଙ୍କ ପିତା ଗଲେ ଇହଧାମ ଛାଡ଼ି ! ଦୁଃଖ ଓ ଦ୍ୱଂଦ୍ୱରେ କରୁଣ ସାଧାରଣତଃ ମାନବ ଜୀବନ । ଅତିମାନସିକ କରୁଣାର ଆଲୋକ ହିଁ ହୁଏ ସେ ଜୀବନ ପରିବର୍ତ୍ତନର କାରଣ । କଲେରିଜ୍ ଲେଖିଛନ୍ତି :

'The saint will aid, if man will call,
For the blue sky bends over all.'

ବଳଦେବ ଅଜାଘରେ ରହିବା ଏକ ବର୍ଷରୁ ହୋଇଥାଏ କିଛିଦିନ ଅଧିକ । ଗାଁରେ ସେଦିନ ଅନୁଷ୍ଠିତ ହେବାକୁ ଥାଏ ଆତସବାଜୀ କ୍ରୀଡା । ସଂଧ୍ୟାପୂର୍ବରୁ ହୁ' ହୁ' ହୋଇ ପ୍ରବଳ ବାତ୍ୟା-ବାୟୁ ବ୍ୟାପି ଆସିଲା । ବଳଦେବଙ୍କ ସହିତ ଅନ୍ୟ ସମସ୍ତ ଶିଶୁଙ୍କ ମୁଖ ଦୁଃଖରେ ମଉଳି ଗଲା । ପ୍ରିୟ ନାତିର ବିଷାଦ ଦେଖି ତାଂତ୍ରିକ ଓତା ମୃତ ମନୁଷ୍ୟ ଦନ୍ତରେ ତିଆରି ମାଳାଟି ଆଣିବାକୁ ବଳଦେବଙ୍କୁ କହିଲେ ଏବଂ ମାଳାଟି ଧରି ଦେବୀ ମଂଦିରରେ ପ୍ରବେଶ କଲେ ।

ବଡ଼ ବିସ୍ମୟର କଥା, ଗାଁ' ବାହାରେ ନାଚୁଥାଏ ବାତ୍ୟାବାୟୁ । ବୃକ୍ଷରାଜି ପଡୁଥାନ୍ତି ଉଠୁଥାନ୍ତି । କିନ୍ତୁ ଗ୍ରାମ ଭିତର ସାଧାରଣ ଅବସ୍ଥା ! ଆରମ୍ଭ ହୋଇଗଲା ଆତସବାଜୀ କ୍ରୀଡା । ଅଜାଙ୍କ ଅଲୌକିକ କାର୍ଯ୍ୟରେ ବିସ୍ମିତ ବଳଦେବ ସେଦିନ କହିଥିଲେ- 'ଅଜା ମତେ ସେ ମଂତ୍ରଟି ଶିଖାଇ ଦିଅ' । ମାତ୍ର ଓତା ଆଶଙ୍କିତ, ତଂତ୍ର ଉପାସନା କଲେ ବ୍ୟକ୍ତି ହୁଏ ଅପୁତ୍ରିକ ଓ ନିର୍ବଂଶ । କେମିତି ସିଏ ଏକ ମାତ୍ର ଦୁଇକୁଳର ଦୀପଶିଖାକୁ ଶିଖାଇବେ ତଂତ୍ର ? ବେଳେବେଳେ ନାତି ଯିଦ୍ କରୁଥିଲା- 'ତମେ ନ ଶିଖେଇଲେ ମୁଁ ଆଜି ଖାଇବି ନାହିଁ !' ସେଦିନ ଅଜା ଅସୁସ୍ଥ ଥାଆନ୍ତି । ନାତିକୁ କହିଲେ, 'ତୁ ଯା, ଠାକୁରାଣୀ ଘର କବାଟ ଖୋଲି ତାଙ୍କ ମୁହଁ ପାଖରେ ଏ ଦୁଧ ବେଲାକ ଧରି କହିବୁ, ଅଜା କହିଲେ ତୁ ଦୁଧ ପି' ।

ଗୁଲୁ ଗୁଲୁ ସ୍ୱର । ବୟସ ମାତ୍ର ଏଗାର । ଲୀଳାମୟୀ ଜନନୀ ବାତ୍ସଲ୍ୟରେ ଯେମିତି ବିହ୍ୱଳ ! ଚାହୁଁ ଚାହୁଁ ଦୁଗ୍ଧପୂର୍ଣ୍ଣ ପାତ୍ର ହୋଇଗଲା ଶୂନ୍ୟ । ଯେମିତି ଗତ ୧୯୯୭ ମସିହା ସେପ୍ଟେମ୍ବରରେ କ୍ଷୀର ଶୋଷି ନେଉଥିଲେ ସମଗ୍ର ବିଶ୍ୱରେ ଗଣେଶମୂର୍ତ୍ତି ! ବିଜ୍ଞାନ ହୋଇଯାଇଥିଲା ବିବାକ୍ ।

'ଅଜା, ଠାକୁରାଣୀ ସବୁଯାକ ପିଇ ଦେଲା ।'

'ଯା, ଠାକୁରାଣୀକୁ ପଚାରେ, ଆଜି ରାତିରେ ଅଜା କ'ଣ ପିଇ ବଂଚିବ; ତୁ ତ ସବୁ ପିଇଦେଲୁ' !

ପାଷାଣ ଦେବୀ ପ୍ରତିମା ଶିଶୁ ବଳଦେବଙ୍କୁ ଇଙ୍ଗିତ କଲେ, ବେଲାଦେଖା ମୋ ବକ୍ଷ ପାର୍ଶ୍ୱରେ ! ପୁଣି ପୂର୍ଣ୍ଣ ହୋଇଗଲା ପାତ୍ର ! ଫେରିଲେ ବଳଦେବ ଅଜାଙ୍କ ପାଖକୁ । 'ଅଜା, ଦେଲା ।ଇଏ ଗାଈ ଦୁଧ ନୁହେଁ, ତା ନିଜ ଦୁଧ ।' ଓତାଙ୍କ ଚକ୍ଷୁରୁ ନିଗିଡି ଆସିଲା ଦୁଇବୁନ୍ଦା ଅଶ୍ରୁ ! ଆଜୀବନ ଉପାସନା କରି ଯାହା ମୁଁ ପାଇପାରି ନଥିଲି ତାହା ତୁ ହାସଲ କରିଦେଲୁ ! ପରମ ତୃପ୍ତିରେ ଦୁଗ୍ଧତକ ପାନ କରାଇ ଦେଲେ ବଳଦେବଙ୍କୁ । ବଳଦେବ ଥିଲେ ଜଣେ ଅତିସାଧାରଣ ବାଳକ । ସେହିଦିନଠାରୁ କ୍ରମେ କ୍ରମେ ତାଙ୍କ ମେଧାଶକ୍ତି ହୋଇଥିଲା ପ୍ରଖର । ପାଠ ସ୍ମୃତିପଟରେ ଲେଖିହୋଇ ରହିଗଲା । କେତୋଟି ବର୍ଷ ପରେ ସିଏ ନାନା ଶାସ୍ତ୍ରରେ ହୋଇଥିଲେ ସୁପଣ୍ଡିତ ଏବଂ ବଡ଼ ଖେମଡ଼ୀକୁ କରିଥିଲେ ପ୍ରତ୍ୟାବର୍ତ୍ତନ ।

ବୟସ ପନ୍ଦର । ବଳଦେବଙ୍କ ହେଲା ରତ୍ନମଣିଙ୍କ ସହ ବିବାହ । ବିବାହର ୫/୭ ବର୍ଷ ପରେ ପିତା ଉଜ୍ଜ୍ୱଳରଥ ନେଲେ ବିଦାୟ । ପିତାଙ୍କ ମୃତ୍ୟୁପରେ ରାଜଦତ୍ତ

ଅନୁଗ୍ରହରୁ ବଂଚିତ ବଳଦେବ ବଡ଼ଖେମୁଣ୍ଡୀ ତ୍ୟାଗ କରି ଗଲେ ଜଳନ୍ତର। ବଳଦେବଙ୍କ ଏହି ସ୍ଥିତିକୁ କଲେରିଜ୍ ଯେମିତି ଉପଲବ୍ଧି କରିଛନ୍ତି ! ସିଏ ସ୍ଥିତିଟିକୁ ଶବ୍ଦ-ଚିତ୍ରରେ ଆଙ୍କିଛନ୍ତି: ଯେମିତି ଏହା ମଣିଷର ଭାଗ୍ୟ-

'Is the night chilly and dark?

The night is chilly, but not dark.'

ମଣିଷ ଆଶାବାଦୀ ଏବଂ ଅନ୍ଧକାରର ଆସ୍ତରଣ ପଛରେ ଥାଏ ଆଲୋକର ଛଟା। ପୁଣି ମଣିଷ ଉଦ୍ୟମୀ। ତେଣୁ:

'The fair breeze blew, the white foam flew.

The furrow followed free.'

କବି ଯେମିତି ଅନିଶ୍ଚିତ ଜଳପଥରେ ପୋତ ମେ଼ଲି ଦେଲେ ! ଜୀବନର ମଧ୍ୟାହ୍ନ ପର୍ଯ୍ୟନ୍ତ ଶୁଣାଯାଇଥିଲା ତାଙ୍କୁ ସୁଖର ସଂଗୀତ। ସେତେବେଳେ ଜଳନ୍ତର ଥିଲା ଏକ ସୁସମୃଦ୍ଧ ରାଜ୍ୟ। ଏହାର ଏକ ପାର୍ଶ୍ୱେ ଚିକିଟି, ଅନ୍ୟପଟେ ମଂଜୁଷା ଓ ପାରଳା। ଓଡ଼ିଆ ସାହିତ୍ୟ ସମୃଦ୍ଧିର ଭୂମି। ସାରସ୍ୱତ ଶ୍ରୀକ୍ଷେତ୍ରମାନ। ସେତେବେଳେକୁ ବଳଦେବଙ୍କ ବୟସ ଅଠର। ରାମଚନ୍ଦ୍ର ଛୋଟରାୟ ଥିଲେ ଜଳନ୍ତରର କାବ୍ୟ-କବିତାପ୍ରେମୀ ରାଜନ। ବଳଦେବଙ୍କ ପାଣ୍ଡିତ୍ୟ ଓ କବିତ୍ୱରେ ମୁଗ୍ଧ ହୋଇ କଲେ ତାଙ୍କୁ 'କବିସୂର୍ଯ୍ୟ' ଉପାଧି ପ୍ରଦାନ। ଜଳନ୍ତର ରାଜସଭାରେ ସଂସ୍କୃତ ସାହିତ୍ୟ ସହିତ ସେତେବେଳେ ଆଲୋଚିତ ହେଉଥିଲା ଉପେନ୍ଦ୍ରଭଂଜଙ୍କ ରଚନା। ଭଂଜୀୟ କାବ୍ୟ-ସୁଖ ସାଧାରଣ ଲୋକେ ପ୍ରାପ୍ତ ହେଉଥିଲେ ବଳଦେବଙ୍କ ଦ୍ୱାରା ଶୁଣି ବିଶଦ ବ୍ୟାଖ୍ୟା। ରାଜା ମଧ୍ୟ ହେଉଥିଲେ ପୁଲକିତ ପୁନଃପୁନଃ ବଳଦେବଙ୍କ ଦ୍ୱାରା ସୁଲଳିତ ଆବୃତ୍ତି ଓ ବ୍ୟାଖ୍ୟା କୌଶଳ ପରିପାଟୀ ଶୁଣି। ବଳଦେବ ସୁନ୍ଦର ସୁନ୍ଦର ସାଙ୍ଗୀତିକତାପୂର୍ଣ୍ଣ କବିତା ବି ରଚନା କରୁଥାଆନ୍ତି। ମଧ୍ୟଯୁଗୀୟ ରତି-ରୀତି ମଧ୍ୟରେ ଆଧୁନିକ ଚେତନାର ନବ ଝଲକ ବଳଦେବଙ୍କଠାରୁ ହିଁ ଉନ୍ମେଷିତ। ତାଙ୍କ କବିତା କେତେ ଅଗ୍ରଗତିଶୀଳ ତାର ଭଲ ପ୍ରମାଣ ଏଇ ପଂକ୍ତି: 'କାହିଁରେ ମନ ସହି ପ୍ରସନ୍ନ ହେଉ ନାହିଁ / ଏଥିକି କହ କେଉଁ ଗତିକିରେ / କି କରି ଅରଜିବି କି କରି ବରଜିବି / ସେ ନବ ଘନଶ୍ୟାମ ରୀତିକିରେ।'

ଆଧୁନିକ ବିଷାଦବାଦର ବୀଜ ବୋଧେ ଏଇ କବିତାର ଅନ୍ତଃ-ଚେତନାରେ ପୋତା ଯାଇଛି। ରାମଚନ୍ଦ୍ର ଛୋଟରାୟ କନ୍ୟା ବିୟୋଗ ଦୁଃଖରେ ଦୁଃଖିତ। ତାଙ୍କ

ଦୁଃଖ ତପ୍ତ ହୃଦୟକୁ ଶାନ୍ତ କରିବାକୁ କବିତାଟି ହୋଇଥିଲା ରଚିତ। ରାଜାଙ୍କ ଦୁଃଖ ନିଜ ହୃଦୟରେ ଫଳିତ କରାଇ ତାହାକୁ ଶବ୍ଦରେ ବାଢ଼ିବା ଯେ ଅତ୍ୟନ୍ତ କଷ୍ଟକର କାମ। ତାହା ବଳଦେବଙ୍କ ପାଇଁ ଥିଲା ସୁଗମ। ପୁଣି ଦୁଃଖିତ ମାନବକୁ ଆଶ୍ୱାସନା ଦାନ ଠାରୁ କବିଙ୍କ ପାଇଁ ଆଉ ନାହିଁ ପୁଣ୍ୟ। କବି ସମୟ ସଚେତନ। ସମୟର ଭାର ଅତି ସୁନ୍ଦର ଭାବେ ସିଏ ବହନ କରିଛନ୍ତି ସ୍କନ୍ଧରେ: 'ଯୁଗଠାରୁ ଅଧିକ/ହୋଇଲାଣି ପଲକ/ କେମନ୍ତେ ସମ୍ଭାଳିବି ଧୃତିକିରେ। X X ମାନସେ ଭାବିଭାବି/ସତେ କି ଛାଡ଼ିଦେବି/ କୁଳ ବରତ ନୀତି ଜାତିକିରେ।'

'ତ୍ରିଭୁବନ ମୋହନ' ବାଳିକା କନ୍ୟା ସ୍ମୃତି 'ବିଷମ ବଂଶୀସ୍ୱନ କାହୁଁ ଚୁମ୍ବିଲା ମୋର ଶ୍ରୁତିକିରେ' ଭାବମୟୀ ବ୍ୟଂଜନାରେ ଉପସ୍ଥାପିତ ହୋଇଛି। ସ୍ମୃତି ଓ ଶୋକ କୃଷ୍ଣଚେତନାରେ ହୋଇଯାଇଛି ପରିବର୍ତ୍ତିତ। କବିତା ଆଙ୍ଗିକରେ ମଧ ଯୁଗୀୟ କୃଷ୍ଣ-ରସ ଚେତନା ଆବୃତ୍ତ ଥିବା ବେଳେ ଆଧୁନିକ ଚେତନାର ସିଂଦୂରା ଫିଟି ଆସିଛି।

କବିତା ମାନବ ହୃଦୟର ଭାଷା। ହୃଦୟର ଭାଷା ହୃଦୟ ଚିପୁଡା ରକ୍ତ ଝରା। ବଳଦେବଙ୍କ ପରି କଲେରିଜ୍ ବି ଜଣେ ଅସ୍ଥିର ମା'ର ଉପଲବ୍ଧିକୁ ଆଙ୍କିଛନ୍ତି:

'Suck, little babe, oh suck again!
It cools my blood, it cools my brain:
Thy lips, I feel them, babe ! they
Draw from my heart the pain away
Oh! press me with the little hand;
It loosens something at my chest;
About that light and deadly band
I fell the little fingers prest,

ଗୁମୁରା ମାତୃତ୍ୱକୁ ସୁଠାମ ଶବ୍ଦ ସଂଯୋଜନା କରିଛି ମୁକୁଳା। ଶୋକ ଓ ସ୍ମୃତି ସ୍ୱଚ୍ଛ ବିମ୍ବଟିଏ ହୋଇ ପାଠକଙ୍କ ସାମ୍ନାରେ ଠିଆ ହୋଇଛି। କଳା ପ୍ରତିଫଳକରେ ତାର ସାର୍ଥକତା ଉପସ୍ଥାପିତ କରିଛି। ପ୍ରାୟ ଅଠର ବର୍ଷ ବୟସ; ବଳଦେବ ଆସିଥିଲେ ଜଳନ୍ତର। ବାରବର୍ଷ ସେଠାରେ ରହିବା ପରେ ପ୍ରାୟ ତିରିଶ ବର୍ଷ ବୟସ ବେଳକୁ ଫେରିଲେ ଆଠଗଡ଼। ଜଳନ୍ତରରେ ତାଙ୍କର ସୁଦୀର୍ଘ ଗୋଟିଏ ଯୁଗ ଜୀବନର ଅବସ୍ଥାନ ଥିଲା ବଡ଼ ମହତ୍ତ୍ୱପୂର୍ଣ୍ଣ। ସତ୍ୟନିଷ୍ଠ, ନିର୍ଲୋଭ, ସର୍ବଜନ ହିତାୟ ବ୍ରାହ୍ମଣ ସ୍ୱଭାବ ଅଳ୍ପଦିନରେ ଜଳନ୍ତରରେ ତାଙ୍କୁ

କରିଦେଇଥିଲା ପ୍ରସିଦ୍ଧ ଏବଂ ଉଚ୍ଚ ରାଜପଦରେ ସିଏ ଥିଲେ ଅଧିଷ୍ଠିତ। ତାଙ୍କ ଉପରେ ନ୍ୟସ୍ତଥିଲା ରାଜ୍ୟର ଆୟ ଓ ବ୍ୟୟ ଦାୟିତ୍ୱ। କୃଷିର ଉନ୍ନତି ପାଇଁ ସିଏ ଖୋଳାଇ ଥିଲେ ଗୁଡିଏ ପୁଷ୍କରିଣୀ। ମନ୍ଦିରମାନଙ୍କରେ ଖଂଜାଇ ଥିଲେ ଜମିବାଡ଼ି। ରାଜ୍ୟରେ ଅତିଥି ଓ ଆଗନ୍ତୁକଙ୍କ ସତ୍କାର ଥିଲା ଏହି ଦେବୋତ୍ତର ସମ୍ପତ୍ତିର ଲକ୍ଷ୍ୟ। ଦୁସ୍ଥ ପ୍ରଜାଙ୍କୁ ରାଜକୋଷରୁ କୃଷି ପାଇଁ ସହାୟତା ବ୍ୟବସ୍ଥା କରାଇଥିଲେ। ଆନ୍ଧ୍ରପ୍ରଦେଶୀଙ୍କ ସଂସ୍ରବରେ ଆଚାର ଭ୍ରଷ୍ଟ ହୋଇଯାଉଥିବା ଲାଗି 'ଉତ୍କଳାଚାର' ନାମକ ସଭାଟିଏ ସ୍ଥାପିତ କରିଥିଲେ। ଉତ୍କଳୀୟ ସଂସ୍କୃତି ଓ ହିନ୍ଦୁ ଆଚାର ଶୁଦ୍ଧ କରି ରଖିବା ଥିଲା ଏହି ସଭାର କାର୍ଯ୍ୟ।

ମଳୟ ଯେତେବେଳେ ବୋହି ଯାଏ ତା ସାମ୍ନାରେ ନିମ୍ବ ପତ୍ର କିଂବା ବିଲ୍ୱବୃକ୍ଷ ପତ୍ର ସବୁକୁ ସିଏ କରିଦେଇଯାଏ ସୁବାସିତ ଚଂଦନ। ବଳଦେବଙ୍କ ଥିଲା ଏହି ମଳୟ ସ୍ୱଭାବ। ଜଳନ୍ତରର ମଂଜୁଷା ଥିଲା ଚିର ବିବାଦ ରାଜ୍ୟ। ଦୁଇ ରାଜ୍ୟ ବିବାଦରେ ପ୍ରଜା ହେଉଥିଲେ କ୍ଷତ ଓ ସହୁଥିଲେ କ୍ଷତି। ଦୁଇ ରାଜ୍ୟର ମଧ୍ୟସ୍ଥ ରୂପେ ବଳଦେବ ଆଗମନ କଲେ ମଂଜୁଷା। ତାଙ୍କ ରାଜନୀତି କୁଶଳତା, ବାକ୍ ପଟୁତା ଓ ପ୍ରତ୍ୟୁତ୍ପନ୍ନ ସ୍ୱଭାବ ମଂଜୁଷା ରାଜାଙ୍କୁ କଲା ବିମୁଗ୍ଧ। ଫଳରେ ଦୁଇରାଜ୍ୟ ମୈତ୍ରୀ ଡୋରରେ ହେଲେ ଆବଦ୍ଧ। ତୁଳସୀ ଦୁଇପତ୍ରରୁ ବାସିବା ପରି ମହନୀୟ ଥିଲା ତାଙ୍କ ସ୍ୱଭାବ।

ବଳଦେବଙ୍କ ସମୟ ଉତ୍କଳୀୟ ସଂଗୀତ ସାହିତ୍ୟର ଚରମ ବିକାଶ କାଳ। ଛାଂଦ ଓ ଚଉତିଶାର ସୁବର୍ଣ୍ଣ ଯୁଗ ଆନୀତ କରିଥିଲେ ଘୁମୁସରର କବି ଉପେନ୍ଦ୍ର ଭଂଜ। ବଳଦେବ ଆସିଥିବା ଆଠଗଡ଼ ଘୁମୁସରର ଥିଲା ଏକ ଅଂଶ। ଏହି ରାଜ୍ୟ ପୁରୀ ଗଜପତି ରାଜବଂଶର ଥିଲା କରଦ ରାଜ୍ୟ। ଶୌର୍ଯ୍ୟ, ପରୋପକାର ଓ ପାଣ୍ଡିତ୍ୟ ଏହି ରାଜ୍ୟର ଥିଲା ବୈଭବ।

ତୈଲଙ୍ଗୀୟମାନେ ଭାରତବର୍ଷରେ ସଂଗୀତ ଅଧ୍ୟୟନ ଓ ଅନୁଶୀଳନରେ ଅତି ପ୍ରାଚୀନ। ଥରେ ଜଣେ ସ୍ୱର ବିଜ୍ଞାନବିଦ୍ ସଂଗୀତାଚାର୍ଯ୍ୟ ଆଠଗଡ଼ରେ ହେଲେ ଉପସ୍ଥିତ। ସିଏ କହିଲେ, 'ଶିଶୁବେତ୍ତି ପଶୁର୍ବେତ୍ତି ଗୀତ ରସଂ ଫଣୀ'। ଅର୍ଥାତ୍ ରୋରୁଦ୍ୟମାନ ଅଜ୍ଞାନ ଶିଶୁ ସଂଗୀତ ରାଗରେ ରୋଦନ ନିବୃତ୍ତ ହୋଇ ହୋଇଯିବ ଶାନ୍ତ। ବିଷାକ୍ତ ସର୍ପମାନେ ସଂଗୀତ ସ୍ୱର ଦ୍ୱାରା ଆକୃଷ୍ଟ ହୋଇ ବିବର ମଧ୍ୟରୁ ଆସିବେ ବାହାରି। ଏହା ସମସ୍ତେ ଜାଣନ୍ତି। ମୁଁ ପରୀକ୍ଷା କରି ଏହା ଦେଖାଇ ଦେଇପାରିବି। ବାହ୍ୟଜ୍ଞାନ ଶୂନ୍ୟ ହୋଇ ଅରଣ୍ୟରୁ ପଶୁ ଆକର୍ଷିତ ହୋଇ ଚାଲିଆସିବ ମୋ ପାଖକୁ; ମୁଁ ଏପରି ସଂଗୀତ

ଜାଣେ ! ସେତେବେଳେ ଗୋଟିପୁଅ ନୃତ୍ୟ ସୃଷ୍ଟି ହୋଇନଥିଲା । କିନ୍ତୁ ପ୍ରସିଦ୍ଧ ଗାୟକମାନେ ଥିଲେ ଆଠଗଡ଼ବାସୀ ତେଲେଙ୍ଗା ତନ୍ତୀ ରାଜମଣି ପାତ୍ର, ମଦନମଣି ଓ ନାରାୟଣ ଜେନା ପ୍ରଭୃତି ଥିଲେ ପ୍ରସିଦ୍ଧ ସଂଗୀତ ଶିଳ୍ପୀ ।

ବୈଶାଖ ପୂର୍ଣ୍ଣମୀ ସଂଧ୍ୟା । ଅରଣ୍ୟ ପ୍ରକୃତି ପରିଧାନ କରିଥାଏ ଜ୍ୟୋତ୍ସ୍ନା । ପ୍ରମୋଦକାନନ । ଶୀତଳ ପବନ । ହେଲା ସଂଗୀତର ପରୀକ୍ଷା । ନାଗେଶ୍ୱର ଉଦ୍ୟାନରେ ନାଗେଶ୍ୱରମାଳା ଗଳାରେ ଧାରଣ କରି ତୈଲଙ୍ଗୀୟ ସଂଗୀତାଚାର୍ଯ୍ୟ ପରିବେଷଣ କଲେ ସଂଗୀତ । ରାଜା, ପାରିଷଦ ଓ ଶ୍ରୋତାଜନତା ମଂତ୍ରମୁଗ୍ଧ । ରାତ୍ରି ବଢ଼ିବା ସହିତ ସଂଗୀତର ମାଦକତା ପାଉଥାଏ ବୃଦ୍ଧି । ହଠାତ୍ ଦେଖାଗଲା ଅରଣ୍ୟର ହରିଣୀଟିଏ ବାହାରି ଆସି ଆଚାର୍ଯ୍ୟଙ୍କୁ କରିଦେଲା କୃତ୍ୟକୃତ୍ୟ । ଧାରଣ କରିଥିବା ନାଗେଶ୍ୱରମାଳା କେତେବେଳେ କାଢ଼ି ସିଏ ଲମ୍ୱାଇ ଦେଲେ ହରିଣୀ ଗଳାରେ । ମନୁଷ୍ୟ କରସ୍ପର୍ଶ ପ୍ରାପ୍ତ ହୋଇ ଭୟାତୁର ହରିଣୀ ଦ୍ରୁତ ଲଂଫ ଦେଲା ଅରଣ୍ୟକୁ ।

ବଳଦେବ ହାରିବା ମଣିଷ ନୁହନ୍ତି ! ତାଙ୍କ ଗାୟକ ମଦନମଣିଙ୍କୁ ନିର୍ଦ୍ଦେଶ ଦେଲେ ବଂଶୀବିନିଂଦ୍ୟ କଂଠରେ ଗାନ କରିବାକୁ:'ଯେବେ ନବଘନ ଶ୍ୟାମ ବଂଶୀସ୍ୱନ/ ନିଶାଥରେ ଥରେ ଶୁଣାଯିବ/ ସଖୀ ସୁଖେ ବନେ ମୋଦମୟ ମନେ/ ବିହରିବୁ ତୋର ଭଣାଜୀବ' ।

ସଂଗୀତର ପୀୟୂଷ ପ୍ରବାହ ଉଷ୍ମତର କରିଦେଲା ସାରା ପରିବେଶ । ପୁନର୍ବାର ସେହି ହରିଣୀଟି ସଂଗୀତାକୃଷ୍ଟ ହୋଇ ବନ ମଧ୍ୟରୁ ବାହାରି ଆସିଲା । ତୈଲେଙ୍ଗୀୟ ଆଚାର୍ଯ୍ୟ ଭୂୟସୀ ପ୍ରଶଂସା ବାଢ଼ି ଦେଲେ ଗାୟକ ମଦନମଣି ଓ କବି ବଳଦେବଙ୍କୁ । ବଢ଼ିଗଲା ଆଠଗଡ଼ରେ ବଳଦେବଙ୍କ ପ୍ରାଧାନ୍ୟ ।

କାବ୍ୟ ଶାସ୍ତ୍ରାଦିରେ ଅସାଧାରଣ ଶକ୍ତିମତ୍ତା ପ୍ରଦର୍ଶନ କରି ଦଶବର୍ଷ ଆଠଗଡ଼ରେ କାଳାତିପାତ କଲେ କବି । ତାଙ୍କ କବିତ୍ୱ, ପାଣ୍ଡିତ୍ୱ ଓ ବୁଦ୍ଧିମତାର ଖ୍ୟାତି ରାଜ୍ୟରୁ ରାଜ୍ୟକୁ ଯାଇଥାଏ ବ୍ୟାପି । ସେତେବେଳେ ପାରଳାଖେମଣ୍ଡି ରାଜା ପୁରୁଷୋତ୍ତମ ନାରାୟଣ ଦେବଙ୍କ ଘଟିଥାଏ ଦେହପ୍ରାପ୍ତି । ତାଙ୍କ ପୁତ୍ର ଜଗନ୍ନାଥ ଗଜପତି ଥିଲେ ଅପ୍ରାପ୍ତ ବୟସ୍କ । ରାଜ୍ୟ ପରିଚାଳନା କରୁଥିଲେ ଜଣେ ମ୍ୟାନେଜର ପଦ୍ମନାଭ ଦେବ ନାମକ । ୧୮୩୦ ମସିହା । ତତ୍କାଳୀନ ଗଂଜାମ କଲେକ୍ଟର Robert Bayard (୧୮୨୭-୧୮୩୦) ବଳଦେବଙ୍କୁ ପାରଳାଖେମଣ୍ଡିକୁ ଡକାଇ ଅପ୍ରାପ୍ତ ବୟସ୍କ ରାଜାଙ୍କର Guardian tutor (ଗୃହଶିକ୍ଷକ) ରୂପେ କଲେ ନିଯୁକ୍ତ । ବେୟାର୍ଡ ଥିଲେ ଓଡ଼ିଆ ଭାଷାରେ ସୁପଣ୍ଡିତ । ତାଙ୍କ ଅନୁରୋଧକୁ ବଳଦେବ କରିଥିଲେ ସ୍ୱାଗତ ।

୧୮୧୩ରୁ ୧୮୩୩ ପାରଳା ପ୍ରଜା ମହାଦୁଃଖରେ ଥାଆନ୍ତି। ପଦ୍ମନାଭଙ୍କ ଶୋଷଣ ହେତୁ ବିଶୋଇ ଓ ଦୋରାମାନେ ଅଶାନ୍ତି। ବିଧବା ରାଜମାତା ଓ ଦୁର୍ଗାରାଜ ନାମକ ରାଜବଂଶୀୟ ଜଣେ ବିଦ୍ରୋହରେ ଯୋଗ ଦେବାରୁ ପ୍ରବଳତରରୁ ପ୍ରବଳତମ ହେଲା ବିଦ୍ରୋହ ବହ୍ନି। ୧୮୩୦ ମସିହାରେ ଗଭର୍ଣ୍ଣମେଣ୍ଟ ନାବାଳାକ ରାଜାଙ୍କୁ କୋର୍ଟ ଅଫ୍ ୱାର୍ଡସ ଅଧୀନରେ ରଖନ୍ତି। ୧୮୩୨ରେ ପଦ୍ମନାଭ ଦେବଙ୍କ ମୃତ୍ୟୁ ଘଟିଛି। ବିଦ୍ରୋହ ଦମନ ପାଇଁ ମାନ୍ଦ୍ରାଜ ରେଭିନ୍ୟୁ ବୋର୍ଡର ଜଣେ ସିନିୟର ମେମ୍ବର ଜର୍ଜ ରସେଲ ପାରଳାରେ ଉପସ୍ଥିତ ହୋଇ ସାମରିକ ଆଇନଜାରି କରନ୍ତି ଏବଂ ବିଦ୍ରୋହୀଙ୍କୁ ରାଜ୍ୟରୁ ନିର୍ବାସିତ କରିଶାନ୍ତି ଫେରାଇ ଆଣନ୍ତି। ଏହି ଦୁଃସମୟରେ ଅପ୍ରାପ୍ତ ବୟସ୍କ ରାଜାଙ୍କୁ ରକ୍ଷା କରିବା ସହିତ ଗୃହଶିକ୍ଷକ ଭାବେ ଅତି ସାବଧାନ ଭାବେ ପାଞ୍ଚବର୍ଷ ବିତାଇ ଦିଅନ୍ତି। ପୃଷ୍ଠବ୍ରଣ ରୋଗରେ ଆକ୍ରାନ୍ତ ରାଜା ବାଲୁଙ୍କେଶ୍ୱର ଦେବ ଶଯ୍ୟାଶାୟୀ ହୋଇ ସମ୍ବାଦ ପ୍ରେରଣ କଲେ କବିଙ୍କୁ କାଳବିଳମ୍ବ ନକରି ଦେଖା କରିବାକୁ।

ବଳଦେବ ପାରଳା ତ୍ୟାଗ କରି ଆସିଲେ ଏବଂ ହସ କବିତା ଶୁଣାଇ ରାଜାଙ୍କ ପକ୍ୱ ପୃଷ୍ଠବ୍ରଣଟିକୁ ଫଟାଇଲେ ଏବଂ ରାଜା ଶଯ୍ୟାଶାୟୀ ହୋଇ ହାସ୍ୟରସ ମଧ୍ୟରେ କୃଷ୍ଣ ନାମ ଶ୍ରବଣ କରି କୃଷ୍ଣପ୍ରାପ୍ତି ହେଲେ।

୧୮୩୮ ରୁ ୧୮୪୩ Robert Alexander Bannerman ଥିଲେ ଗଞ୍ଜାମର କଲେକ୍ଟର। 'ମହୁରୀ' ବୋଲି ଗୋଟିଏ ରାଜ୍ୟଥାଏ ଗଂଜାମ ଅନ୍ତର୍ଗତ ଏବଂ ଆଧୁନିକ ବ୍ରହ୍ମପୁର ଏହି ମହୁରୀ ରାଜ୍ୟରେ ଥିଲା ଅବସ୍ଥିତ। ଖଜଣା ପୈଠ ନକରି ପାରିବାରୁ 'ମହୁରୀ ହୋଇ ଯାଇଥିଲା ନିଲାମ। ପଇଁତ୍ରିଶ ହଜାର ଟଙ୍କାରେ ନିଲାମ ଖରିଦଦାରଙ୍କଠାରୁ ପୂର୍ବ ରାଜବଂଶୀୟ ଜନୈକ କୃଷ୍ଣଚନ୍ଦ୍ର ନରେନ୍ଦ୍ର ଦେଓ ଖରିଦ କରିଥିଲେ ୧୮୨୧ ମସିହାରେ ଏହି ରାଜ୍ୟକୁ। ଜଣେ ଶିଶୁକୁ ସିଏ ପ୍ରଦାନ କରିଥିଲେ ସିଂହାସନ ଏବଂ କୋର୍ଟ ଅଫ୍ ୱାର୍ଡସ୍ ଅଧୀନରେ ରହିଥାଏ ପ୍ରଶାସନ। ମିଷ୍ଟର କାଜାଲେଟ ନାମକ ଜଣେ ଇଂରେଜ ନିଯୁକ୍ତ ଥିଲେ ମ୍ୟାନେଜର।

ରାଜା ପ୍ରାପ୍ତ ବୟସ୍କ ହେବାରୁ କାଜାଲେଟ ନେଲେ ବିଦାୟ। କିଂତୁ ରାଜ୍ୟ ପରିଚାଳନା ପାଇଁ ରାଜାଥିଲେ ଅକ୍ଷମ ଓ ରାଜାମାତା ଥିଲେ ସର୍ବେସର୍ବା। ରାଜ୍ୟରେ ନାନାବିଧ ବିଶୃଙ୍ଖଳା ହେଲା ଉପସ୍ଥିତ। ୧୮୪୦ ମସିହାରେ କଲେକ୍ଟର ବ୍ୟାନେରମ୍ୟାନ ବଳଦେବଙ୍କୁ ମ୍ୟାନେଜର ରୂପେ କଲେ ନିଯୁକ୍ତ। ବ୍ରହ୍ମପୁରର ବାଲାଜିପେଣ୍ଠରେ ବାସ କରି ବଳଦେବ ପରିଚାଳନା କଲେ ରାଜକାର୍ଯ୍ୟ।

ନିଯୁକ୍ତି ବେଳେ ବ୍ୟାନେରମ୍ୟାନ୍ ତାଙ୍କୁ ପଦୁଟିଏ ଗୁରୁମଂତ୍ର ଦେଇଥିଲେ; ରାଣୀଙ୍କ ସଂଗେ ସାକ୍ଷାତ-ସମ୍ବନ୍ଧ ଆଦୌ ରଖିବ ନାହିଁ। ମାତ୍ର ରାଣୀ ପାଇଛାମାଳୀ ଥିଲେ ଜ୍ଞାନ ଶାସ୍ତ୍ର ସମ୍ପନ୍ନା ଓ ବଡ଼ ବୁଦ୍ଧିମତୀ। ପ୍ରବାଦ ରହିଛି ଯେ ସିଏ ଅଶ୍ୱାରୋହଣ କରି ପୁରୁଷ ବେଶରେ ବିଭିନ୍ନ ଅଂଚଳ ଭ୍ରମଣ କରି ପ୍ରଜାଙ୍କ ଅବସ୍ଥା କରୁଥିଲେ ତନଖି। ସିଏ ପ୍ରଥମେ ପ୍ରଥମେ ବଳଦେବଙ୍କ କାର୍ଯ୍ୟ ଦେଖି ପ୍ରଦାନ କରିଥିଲେ ସମ୍ମାନ। ବଳଦେବ ମଧ୍ୟ କଚେରୀରୁ ରାଜକାର୍ଯ୍ୟ ସମାପ୍ତି ପରେ ସିଧା ଫେରୁଥିଲେ ସ୍ୱଗୃହ। ରାଣୀ ସ୍ୱନିକଟତମ ପ୍ରିୟ କର୍ମଚାରୀ ଯଦୁମଣି ରାୟଗୁରୁଙ୍କ ସଂଗେ ମହାପ୍ରସାଦ ଦ୍ୱାରା ଯୋଡ଼ି ଦେଲେ ବଳଦେବଙ୍କ ଦୃଢ଼ ସମ୍ପର୍କ। ନିବିଡ଼ ହେଲା ବଂଧୁତ୍ୱ ଏବଂ ଯଦୁମଣିଙ୍କ ଅନୁରୋଧ କ୍ରମେ କବିତା ରଚନା କରି ରାଣୀଙ୍କୁ ଦେଇଥିଲେ ଉପହାର। ବଳଦେବଙ୍କ କବିତା ପାଠରେ ବିଦୁଷୀ ପାଇଛାମାଳୀ ହେଲେ ବିମୁଗ୍ଧ। ଏହି ସମୟରେ ଆରମ୍ଭ ହେଲା ପ୍ରଜାମେଳି। ପ୍ରତ୍ୟୁତ୍ପନ୍ନ ମତି ବଳଦେବ ବିଦ୍ରୋହାନଳକୁ କରିଦେଲେ ନିର୍ବାପିତ। ରାଣୀଙ୍କ ସ୍ନେହ ସ୍ୱତଃ ତାଙ୍କ ପ୍ରତି ହୋଇଗଲା ଅମାପ ଏବଂ ବ୍ୟାନରମ୍ୟାନ କବିଙ୍କ ପ୍ରଶଂସାରେ ହେଲେ ଶତମୁଖ।

ଏହା ମଧ୍ୟରେ ଏକ ବର୍ଷ ବିତି ଯାଇଛି। ରାଣୀଙ୍କ ସନିର୍ବନ୍ଧ ନିମନ୍ତ୍ରଣ ସାକ୍ଷାତ ପାଇଁ କବି ପ୍ରାପ୍ତ ହୋଇଛନ୍ତି କିଂତୁ କଲେକ୍ଟରଙ୍କ ଉପେଦେଶ ମତେ ଛଳନା କରି ଭେଟି ନାହାନ୍ତି। ରାଣୀଙ୍କ ଠାରୁ ସମ୍ବାଦ ଆସିଛି। ସିଏ ଯାଇ ନାହାନ୍ତି। ପୁଣି ତା' ପରଦିନ ପୁନର୍ବାର ଆସିଲା ଡାକରା। ଗୁରୁ ଗମ୍ଭୀର ମୂର୍ତ୍ତି ଧାରଣ କରି ବଳଦେବ ପ୍ରବେଶ କଲେ ନଅରରେ। ରାଣୀ ସେହି ସମୟରେ ଥାଆନ୍ତି ସ୍ନାନକୁଣ୍ଡରେ, ସେହି ପଥ ଦେଇ ପରିଚାଳକ ତାଙ୍କୁ ଭିତରକୁ ନେଲେ। ତାହା ହିଁ ଥିଲା ରାଣୀଙ୍କ ଆଦେଶ।

ସ୍ନାନ ସମାପନ କରି ରାଣୀ କିଂଚିତ୍ ଅନ୍ତରାଳରେ ରହି ଦାମୀ ଆସନରେ ବସାଇଥିବା କବିଙ୍କୁ ପଚାରିଲେ କେତେକ ପ୍ରଶ୍ନ। ଖୁବ୍ କମ୍ ଶବ୍ଦରେ ଅତ୍ୟନ୍ତ ଗଂଭୀର ଭାବେ ବଳଦେବ ଦେଲେ ଯଥାଯଥ ଉତ୍ତର। ଆଶାନୁରୂପ ଉତ୍ତର ପ୍ରାପ୍ତ ନହୋଇ ରାଣୀ ହେଲେ ଅତ୍ୟନ୍ତ ବିରକ୍ତ ଏବଂ ଭୃତ୍ୟକୁ ଜିଜ୍ଞାସା କଲେ କାହିଁକି ଏହାଙ୍କୁ ମୋ ସ୍ନାନ ପଥ ଦେଇ ଆଣିଲୁ ?

ନମ୍ରତାର ସହିତ ଭୃତ୍ୟ ଉତ୍ତର ଦେଇଥିଲା, ତାହା ହିଁ ଥିଲା ତାଙ୍କରି ଆଦେଶ ! ତତ୍କ୍ଷଣାତ୍ ଅନ୍ତଃପୁରରୁ ଅନ୍ୟଏକ ପଥ ଦେଇ ତାଙ୍କୁ ବାହାର କରି ଦେବାକୁ ଦେଲେ ସଂକେତ।

'ବାଘମୁହଁ' ବାଟ ଦେଇ ଭୃତ୍ୟ ତାଙ୍କୁ କଢ଼ାଇ ଆଣିଲା ବାଟ। ରାଣୀ ଯାହାଙ୍କ ପ୍ରତି କ୍ରୁଦ୍ଧ ହୁଅନ୍ତି ତାଙ୍କୁ ସେଇ ପଥରେ ଛାଡ଼ନ୍ତି। ସେ ପଥଶେଷରେ ଥାଏ ଗୋଟିଏ ଗଭୀର କୂପ। ସେଇଠି ସିଏ ହୁଅନ୍ତି ସମାଧି ପ୍ରାପ୍ତ। ବଳଦେବ ଜାଣିଥିଲେ ଏଇ ରହସ୍ୟ। ତେଣୁ ଭୃତ୍ୟକୁ ଆଗରେ ଚାଲିବାକୁ ସିଏ ଦେଇଥିଲେ ନିର୍ଦ୍ଦେଶ।

ସେଦିନ ବଂଚିଗଲେ କବି। ଲେଖିଦେଲେ ନିଜ ଇସ୍ତଫା। କଲେକ୍ଟରଙ୍କୁ ଅବଗତ କରାଇ ଦେଲେ ସବୁକିଛି। ଇସ୍ତଫା ପତ୍ର ସହିତ ଦୁଇଟି କବିତା ସିଏ ରାଣୀଙ୍କୁ ଭେଟି ଦେଇଥିଲେ ଏବଂ ଭଣତିରେ ଏହାର ରଚୟିତା କୃଷ୍ଣଚନ୍ଦ୍ର ନରେନ୍ଦ୍ରଦେବ ବୋଲି ଉଲ୍ଲେଖ କରିଥିଲେ। କବିତା ଦୁଇଟିର କିୟଦଂଶ:

ପ୍ରଥମ କବିତା ରାଗ-ସାବେରୀ ଓ ତାଳ ଆଠତାଳରେ ଲିଖିତ।

'କର କ୍ଷମାରେ, ରତି ପ୍ରତିମା ତୁ ନଥିଲା<br>ମାଜଣା ବୋଲି ମୋତେ ଜଣା।<br>କେଉଁ ପ୍ରତିହାରିଣୀ କି ଦାସୀ<br>କହିଥାନ୍ତା ଯେବେ ଧାଇଁଆସି<br>ତା ନ ମାନି ପଶିଥିଲେ ଝାସି<br>ମାନ ଉଚିତ ମୋ ଠାରେ ତନୁ<br>ମଧ୍ୟମାରେ ।୧।<br>ବାରି ବାରି ନାହିଁରେ ସୁକେଶି<br>ବାରି ମଧ୍ୟେ ତୁ ଥିଲୁ ବିଳସି<br>ଚାରି ପାଖେ ଘେରିଥିଲେ ଦାସୀ<br>ଭାରି ନିତମ୍ବ ସ୍ତନ ଜଘନ<br>ସୁଷମାରେ' ।୨।

ଏହା କେବଳ କବିତା ନଥିଲା, ଥିଲା ଅବରୁଦ୍ଧ ମନର ଆବେଦନ। ସୁନ୍ଦରୀ ବିଦୁଷୀ ନାରୀଟି ପ୍ରତି ଅତି ସଂଭ୍ରମପୂର୍ଣ୍ଣ କ୍ଷମା ଆବେଦନ। କବିମାନେ ଶୃଙ୍ଗାର ପ୍ରିୟ କିନ୍ତୁ ଅତ୍ୟନ୍ତ ଭଦ୍ର; ଏହା ପ୍ରମାଣିତ କରିଛନ୍ତି ବଳଦେବ।

ଦ୍ୱିତୀୟ କବିତାଟି ଜୌନପୁର ତୋଡ଼ିରାଗରେ ହୋଇଥିଲା ରଚିତ;

'ଜଣା ପଡ଼ିଲାରେ ବଣାମୃଗାକ୍ଷି ତୋ ଚାଲି<br>ଅଣାଇ କପଟେ ବଣାକରି ବାଟେ

ଖଣାକୁ ଦେବାରେ ପେଲି।

X X X

ଶିରୀଷ ଦେହା ଯା ବକ୍ଷରେ ବହିଛୁ

ଗିରି ସମ ଶୋଭା ସ୍ତନ

ଗୁରୁ ସଦୃଶ ସେ ଶିଖାଇଛି ପରା

ପୁରୁଷ ମାରଣା କ୍ରମ।

X X X.

ଝରଇ ପୀୟୂଷ ଯେଉଁ ବଚନରୁ

ହରଇ ପ୍ରାଣ ସେ ଗୋଲେ

କରଇ ମୁଁ ଶଙ୍କା ଏଣୁ

କୃଷ୍ଣଚନ୍ଦ୍ର ନରେନ୍ଦ୍ର ଦେବ ବୋଲେ'।

କଲେରିଜ୍ ଲେଖିଛନ୍ତି; କବିତାର ଚରିତ୍ର ସିଏ ଆସିଥିବା ଶ୍ରେଣୀର ହୋଇଥିବ ପ୍ରତିନିଧି। ମଧ୍ୟଯୁଗୀୟ ଆକାଂକ୍ଷିନୀ ରାଣୀ ଚରିତ୍ର ଥିଲେ ପାଇଛାମାଳୀ। ତାଙ୍କ ଚିତ୍ରଣରେ ବଳଦେବ ଫୁଟାଇଛନ୍ତି ଯେଉଁ ବାସ୍ତବ ଦୃଷ୍ଟିକୋଣ ତାହା କେବଳ ଆଧୁନିକ ପ୍ରକୃତିବାଦୀଙ୍କ ଦ୍ୱାରା ସମ୍ଭବ।

ପୁଣି କଲେରିଜ୍ ଲେଖିଛନ୍ତି, GOOD SENSE is the BODY of poetic genius, FANCY its DRAPERY, MOTION its life and IMAGINATION the SOUL; that is everywhere and each; and farms all in to one graceful and intelligent whole' କବିତା ନିଜେ ଏହା ଏକ ପ୍ରକାର। ଏହାର ଅଙ୍ଗସୁଷମା ଭାବଠୁ ଅଭିନ୍ନ। ଏହା କବିଙ୍କୁ କରାଇଛି ଧନ୍ୟ।

କବିତା କେବଳ ବିଶୁଦ୍ଧ ଶବ୍ଦ ବସାଣ ନୁହେଁ, କବିତା କବିଙ୍କର ବଂଚିବା ଶୈଳୀ। କବିତା କବିଙ୍କର ଜୀଇବା ଶୈଳୀର ନାମ। ବଳଦେବ ବଂଚିଥିଲେ ସେହି ପ୍ରକାର ଏବଂ ତାଙ୍କ ବଂଚିବାକୁ ଦେଇଥିଲେ ଅକ୍ଷରରେ ରୂପ। ତାହାର ଗୁଣ, ଆନନ୍ଦ ଓ ସୌନ୍ଦର୍ଯ୍ୟ ଚିରକାଳ ବିଶୁଦ୍ଧ।



# ଏକ ଅନୁପମ ଔଚିତ୍ୟ : ଅନ୍ଧ କବି ଭୀମସନ୍ତୁ

## 'କବି କୃତେ ବର୍ଣ୍ଣିବାକୁ ନ ସ୍ଫୁରେ ସାହାସ'....

ଆଧୁନିକ ଫରାସୀ କବିତାର ଦେବଦୂତ ଚାର୍ଲସ୍ ବୋଦ୍‌ଲେୟାରଙ୍କ ଉପରେ ନିଜର ପ୍ରବନ୍ଧ ଉପସ୍ଥାପନ କଲାବେଳେ ଆଧୁନିକ ଇଂରାଜୀ କବିତାର ଗୁରୁ ଥୋମାସ୍ ଷ୍ଟାର୍ଣ୍ଣ ଇଲିୟଟ ପ୍ରତୀକବାଦୀ ଟି.ଇ ହ୍ୟୁମ୍ (T.E. Hulme)ଙ୍କ କେତୋଟି ପଙ୍‌କ୍ତିର କରିଛନ୍ତି ଉଚ୍ଚାରଣ। ହ୍ୟୁମ୍‌ଙ୍କ ରଚିତ 'ସ୍ପେକୁଲେସନ୍ସ'ରୁ ଉଦ୍ଧୃତ ସେହି ପଂକ୍ତି 'A man is essentially bad. He can only accomplish any thing of value by discipline-ethical and political. Order is thus not merely negative but creative and liberating. Institutions are necessary.'

- Selected Essays, P. 430/ T.S. Eliot.

ଆଉ ଟିକିଏ ଆଗକୁ ଯାଇ ଇଲିୟଟ ଲେଖିଛନ୍ତି (ପୃଷ୍ଠା ୪୯୦) 'For the modern humanist, as for romantic, the problem of evil disappears, the conception of sin dissappers'.

ମଣିଷ ଚିରଦିନ ଅନୈତିକ। ମଣିଷ ଏକ ଶାଶ୍ୱତ ସ୍ଖଳିତ। ପାପର ଦୂଷିତରୁ ତାକୁ ପରିଷ୍କୃତ କରେ ନୈତିକତା। ଜୀବନରେ ସୁଖର ପୁଣ୍ୟ ଆଣେ ସାମାଜିକ ଶୃଙ୍ଖଳା। ଧର୍ମୀୟ ଧାରଣା ତାକୁ କରିଥାଏ ଧଳା। ହ୍ୟୁମ୍‌ଙ୍କୁ ଉଦ୍ଧୃତ କରିଥିଲେ କ୍ୟାଥଲିକ୍ ନୀତିବାଦୀ କବି ଇଲିୟଟ ବିଂଶ ଶତକର ପ୍ରଥମାର୍ଦ୍ଧରେ, କିଂତୁ ଉନବିଂଶ ଶତକ ଦ୍ୱିତୀୟାର୍ଦ୍ଧରେ ଉତ୍କଳ ମାଟିର ତୃଣମୂଳ କବି ବା ଦୀର୍ଘ ଅନୁନ୍ନତ ଗୋଟିଏ ଭୂଖଣ୍ଡର ମାଟିର ମହାକବି ଅନ୍ଧକନ୍ଧ ଭୀମଭୋଇ ଉଲ୍ଲେଖ କରିଥିଲେ: ମେଣ୍ଟି ନାହିଁ ସ୍ଥିତାବସ୍ଥା ପଣ!'

'ପାପ କର୍ମେ ବିହି ନେଉଛି କଢ଼ାଇ ଯେସନେ ନାଗରୀ ନଟ/ ମାୟାଜାଲ ଫାନ୍ଦେ ପଡ଼ିରହି ଛନ୍ଦେ/ ହେଉଅଛି ଛଟପଟ।'ଏହାର ନିଦାନ ମଧ୍ୟ କରିଛନ୍ତି ନିରୂପଣ:'ଆରେ ମିଥ୍ୟାପଦ କେତେ କରୁବାଦ/ ପଛନ୍ତେ ନ ଦେବୁ ଦୋଷ/ ଜାଣିଲେ କରଣ ଆଦି ବ୍ରହ୍ମପିତା/ ନଥୋଇବେ ଦଶଦିଶ। X X X ସତ୍ୟ ଯେ ପାଳୁଛି ଧର୍ମେ ଯେ ଚାଲୁଛି/ ଶ୍ରୋତା ଲାଗୁଛି ଶୂନ୍ୟରୁ/ ନାମ ବ୍ରହ୍ମପଦ ହୃଦୟରେ ଲୟେ/ ସଙ୍ଗେ ସଙ୍ଗେ ଛନ୍ତି

ଗୁରୁ/' ପୁଣି ସେହି ମହାକବି ଉଲ୍ଲେଖ କରିଛନ୍ତି 'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ/ ଦେଖୁ ଦେଖୁ କେବା ସହୁ/ ମୋ ଜୀବନ ପଛେ ନର୍କେ ପଡିଥାଉ/ ଜଗତ ଉଦ୍ଧାର ହେଉ।'

୧୮୫୭ ମସିହା ସିପାହୀ ବିଦ୍ରୋହ। ଭାରତ ମାଟି ଦେଶପ୍ରେମୀ ଶହୀଦଙ୍କ ଶୋଣିତରେ ଲୋହିତାକ୍ତ। ଏଣେ ଉତ୍କଳ ଭୂମି ଖଣ୍ଡ ବିଖଣ୍ଡିତ ବହୁ ଦେଶୀୟ ରାଜ୍ୟରେ ବିଭକ୍ତ। ଶେଷ ଦୁର୍ଗ ଖୋରଧା ୧୮୦୩ ମସିହାରେ ହୋଇଛି ଇଂରେଜ ହସ୍ତଗତ। ଅର୍ଥନୈତିକ ଦୁଃସ୍ଥିତି ଓଡ଼ିଆ ଭାଷା ଭୂଖଣ୍ଡକୁ ଅସ୍ଥିର କରି ପକାଇଛି। ନାହିଁ ଶିକ୍ଷା, ସ୍କୁଲ ନାହିଁ! କୃଷି ବ୍ୟତୀତ ଅନ୍ୟ କେଉଁଠୁ କଉଡ଼ିଟିଏ ମିଳିବାର ପନ୍ଥା ନାହିଁ। କୃଷି କେଉଁ ବର୍ଷ ମରୁଡି ତ କେଉଁ ବର୍ଷ ବନ୍ୟା ବିପ୍ୟତ୍ତି ହେତୁ ନଷ୍ଟ। ଭୋକିଲା ମଣିଷ। ମଣିଷ ଅସୁସ୍ଥ ଓ ଶୂନ୍ୟହାତ। ବଂଚିବା ତାର ଭାଗ୍ୟ ଓ ବିଧାତା ଉପରେ କରୁଛି ନିର୍ଭର। ସେହି ଭୟାନକ ସମୟର କବି ଭୀମଭୋଇ ପରମ ଆସିକ୍ତବାଦୀ ଓ ସନ୍ଥକବି। କବିତ୍ୱ ତାଙ୍କର ସୁନିର୍ମଳ। ମର୍ମସ୍ପର୍ଶୀ।

ତାଙ୍କ ଶବ୍ଦର ଆବେଦନ : ଦ୍ରୌପଦୀ ପରାୟ କଷଣ ଦେଉଛି/ କଳିକାଳ ମିଥ୍ୟା ପାପ/ ଯାଉଅଛି ଭେଦି ପକାଅନା ଛେଦି/ ଅକଳ୍ପନା ଶ୍ରୁତି ଜପ।'

ଶବ୍ଦ ବ୍ରହ୍ମରେ ଜଗତର ଚିତ୍ର କେବଳ ତୋଳନ କରି ନଥିଲେ ସିଏ; ଜଗତର ଭୟାନକ ରୂପକୁ ଅଙ୍ଗେ ନିଭାଇ ତାହାର କଲ୍ୟାଣ ବା ସଜଡ଼ା ସଂସାର ପାଇଁ ନିରନ୍ତର କରୁଥିଲେ ପ୍ରାର୍ଥନା। ତାଙ୍କ ନିଜ ଶବ୍ଦରେ: 'ଦେଖ ଏ ବ୍ରହ୍ମାଣ୍ଡ କେମନ୍ତେ ହେଲାଣି/ ଦିନୁ ଦିନ ମହାଘୋର/ ଛପ୍ନ କୋଟି ଜୀବ ଅଚେତା ହେବାରୁ ଡାକୁଛି ମୁଁ ନିରନ୍ତର।'କବି ଏଠି ନୁହନ୍ତି କେବଳ ଜଣେ ଶବ୍ଦଶିଳ୍ପୀ। ବରଂ ସିଏ ଅଟନ୍ତି କବି - ଋଷି।'ନ ଶାବ୍ଦିକଂ ପ୍ରାହ ନ ତାର୍କିକଂ ବା'। ଜଗତ୍ ଉଦ୍ଧାର ପାଇଁ ପ୍ରାର୍ଥନା କରୁଥିବା ହେତୁ ସିଏ 'ପ୍ରଜାପତିଃ' ବା ସ୍ୱୟଂ ବ୍ରହ୍ମା ଅଟନ୍ତି।

ହାଭାର୍ଡ ବିଶ୍ୱବିଦ୍ୟାଳୟର ଅର୍ଥନୀତି ଅଧ୍ୟାପକ ସୁଧୀର କାକ୍‌କର ଲେଖିଛନ୍ତି 'ଆସେଟିକ୍ ଅଫ ଡିଜେୟାର' ଗୁପ୍ତ ଯୁଗୀୟ ମହାକବି 'କାମସୂତ୍ର'ର ପ୍ରଣେତା ବାତ୍ସାୟନଙ୍କ ଜୀବନୀ। ବାତ୍ସାୟନ ସୂତ୍ରରୁ ସିଏ ଉଦ୍ଧାର କରିଛନ୍ତି- ମୁଁ ଜାଣିଥିଲି ଯେ କୌଣସି ବ୍ୟକ୍ତି ପାଇଁ 'କବି'ଠୁ ବଳି ନାହିଁ ଅନ୍ୟ କୌଣସି ଶ୍ରେଷ୍ଠ ବିଶେଷଣ। ତେଣୁ ସ୍ୱୟଂ ବିଷ୍ଣୁ 'କବି' ସମ୍ବୋଧନରେ ହୋଇଥାନ୍ତି ଅତ୍ୟନ୍ତ ପ୍ରୀତ; ବିଷ୍ଣୁ ସହସ୍ର ନାମରେ ବ୍ୟାସ କରିଛନ୍ତି ଉଲ୍ଲେଖ। ଭୀମଭୋଇ ଉତ୍କଳର ଜାତୀୟ କବି ଏବଂ ଉତ୍କଳର ଜାତୀୟ

କବି ଜଗନ୍ନାଥ ଦାସ । ଉତ୍କଳ ଏକ ଗ୍ରାମ ବହୁଳ ପ୍ରଦେଶ । ଯେଉଁ ଗ୍ରାମକୁ ଯିବ, ସେଠାରେ ଦୁଇଟି ଟୁଙ୍ଗୀ ସାଧାରଣତଃ ଦେଖିବାକୁ ମିଳିବ । ଗୋଟିଏ ପରମ ସନ୍ଥ ଜଗନ୍ନାଥ ଦାସଙ୍କ ଭାଗବତ ଟୁଙ୍ଗୀ ଏବଂ ଅନ୍ୟଟି ଭୀମ ଭୋଇଙ୍କ ଅଲେଖ ଅବଧୂତ ଟୁଙ୍ଗୀ । ଭୀମଭୋଇ ଉତ୍କଳୀୟ ଜନଜୀବନ ଓ ଧାରାର କବି । ତାଙ୍କ ରଚିତ ତିନିଶ ଦଶଟି ଭଜନ ଅଦ୍ୟାବଧି ଜନଜୀବନକୁ ଶୁଦ୍ଧ କରୁଛି । ସାରା ରାତ୍ରି ଅଲେଖ ଟୁଙ୍ଗୀରୁ ଏହି ଭଜନମାନ ସତ୍ୟ ମହିମା ଧର୍ମ ଅବଲମ୍ବୀ ସାଧୁ ଓ ପ୍ରେମୀଭକ୍ତଙ୍କ କଣ୍ଠରୁ ସମଗ୍ର ପରିବେଶକୁ ପରିବର୍ତ୍ତିତ କରୁଛି । ଭୀମଭୋଇଙ୍କ ସୃଷ୍ଟି ଈଶ୍ୱର ବା ଅ-ଲେଖଙ୍କ ପ୍ରଶଂସା କରିଛି । ସାମାଜିକ ଜୀବନକୁ ଦୁଃଖ ଦୈନ୍ୟର ଜୀବନ୍ତ ଯାତନାରୁ ଉଦ୍ଧାରି ପାରୁଛି । ପ୍ରାର୍ଥନାର ଶିଖା ଶିକ୍ଷା ହୋଇ ମାନବ ଚୈତନ୍ୟକୁ ଉର୍ଦ୍ଧାୟିତ କରିଛି ।

ଉପନିଷଦୀୟ ଅମୃତ ଚିନ୍ତାଧାରା ଉପରେ ଆଧାରିତ କବି ଗୁରୁ ରବୀନ୍ଦ୍ରନାଥଙ୍କ ନୋବେଲ ପୁରସ୍କୃତ କବିତା 'ଗୀତାଂଜଳି'ର ମୁଖବଂଧ ଲେଖକ ଆଇରିଶୀୟ କବି ଡବ୍ଲୁ ବି ଇଏଟସ୍ କହନ୍ତି, 'ଯଦି ସାହିତ୍ୟ ଜାତିର ସମଷ୍ଟିଗତ ବା ସମୂହଗତ ପ୍ରାଣକୁ ସ୍ପର୍ଶ ନ କଲା, ଯଦି ସାହିତ୍ୟ ଜନସାଧାରଣଙ୍କ ପ୍ରାଣରେ ଉଦ୍‌ବୋଧନ ଆଣି ନଦେଲା, ତାହା ଜାତୀୟ ସାହିତ୍ୟ ଆଖ୍ୟା ନ ପାଇପାରେ ।' ଇଏଟସ୍ କହନ୍ତି କବିତା ଜୀବନର ସମାଲୋଚନା ନୁହେଁ, ତାଙ୍କ ପାଇଁ କବିତା ଜୀବନର ଆବିର୍ଭାବ । ଠିକ୍ ସେମିତି ଭୀମଭୋଇଙ୍କ ପାଇଁ କବିତା ପାପର ସମାଲୋଚନା ନୁହେଁ, ପୁଣ୍ୟ ପାଇଁ ପ୍ରାର୍ଥନା । ଆଧ୍ୟାତ୍ମିକ ଅଭୀପ୍ସା । ସାମାଜିକ ମଣିଷ ପାଇଁ ପରିଷ୍କୃତ ହେବାକୁ ଏକ ପ୍ରକାର ନଂଦନତାତ୍ତ୍ୱିକ ବ୍ୟବସ୍ଥା । ଏହି ନାଂଦନିକ ତତ୍ତ୍ୱକୁ ଏତେ ସୂକ୍ଷ୍ମ ଓ ମର୍ମସ୍ପର୍ଶୀ ଭାବେ ଇଲିୟଟ ଉପସ୍ଥାପନ କରିପାରି ନାହାନ୍ତି ତାଙ୍କ Four Quartets ରେ । ଧାର୍ମିକ ଧାରଣାର ଗଭୀରତମ ଅଭିବ୍ୟକ୍ତି ପାପବୋଧ । ମଣିଷ 'a wretched creature, who can yet apprehend perfection, though he never can reach it' । କିନ୍ତୁ ଭୀମଭୋଇ ଆଶାବାଦୀ । ଘଟେ ଘଟେ ବାସ ଅଲେଖ ପୁରୁଷ; ତାଙ୍କୁ ସିଏ କରିଛନ୍ତି ଠାବ ଏବଂ ଅନ୍ୟମାନଙ୍କୁ ଦେଇଛନ୍ତି ସେହି ପରାମର୍ଶ: 'ଧର୍ମେ ଯେବେ ଥିବ ଧର୍ମ ସାହା ହେବ ରଖିବେ ବାନା ଘୋଡ଼ାଇ/ ଦୋଷ ଅପରାଧ ଖଣ୍ଡନ କରିବେ ବ୍ରହ୍ମ ଅନଳେ ପୋଡାଇ ।'

ଭୀମଭୋଇ ରଚନା କରିଛନ୍ତି 'ସ୍ତୁତି ଚିନ୍ତାମଣି' ଏକଶତ ବୋଲିରେ ବିଭକ୍ତ ତାଙ୍କର ଶ୍ରେଷ୍ଠ ଗ୍ରନ୍ଥ । ପ୍ରତ୍ୟେକ 'ବୋଲି'ରେ ରହିଛି କୋଡ଼ିଏଟି ଲେଖାପଦ ଏବଂ ପ୍ରତି ଦୁଇପାଦରେ ଏକ ପଦ । ମୋଟ ଦୁଇ ହଜାର ପଦ ବା ଚାରି ସହସ୍ର ପାଦ । ଜଗନ୍ନାଥ

ଦାସଙ୍କ ଭାଗବତପରି ଏହା ଓଡ଼ିଆ ଜାତିର ଐଶ୍ୱର୍ଯ୍ୟ। 'ବ୍ରହ୍ମ ନିରୂପଣ ଗୀତା', 'ଆଦି ଅନ୍ତ ଗୀତା', 'ଅଷ୍ଟକ ବିହାରୀ ଗୀତା', 'ନିର୍ବେଦ ସାଧନା', 'ଶ୍ରୁତି ନିଷେଧ ଗୀତା', 'ଚଉତିଶାଗ୍ରନ୍ଥମାଳା', ପ୍ରଭୃତି ଅମ୍ଲାନ ରଚନା ଜନ ସାଧାରଣଙ୍କ ଭାଷାରେ ରଚିତ ହୋଇ ପ୍ରାପ୍ତ ହୋଇଛି ଅଭୁତ ସାଫଲ୍ୟ। ଏତଦ୍ ବ୍ୟତୀତ ତିନିଶତ ଦଶଗୋଟି ଭଜନ-ଜଣାଣ ସହସ୍ର ବ୍ୟକ୍ତିଙ୍କର ଦ୍ୱାରା ହୁଏ ଗାନ।

ଭୀମଭୋଇଙ୍କ ପ୍ରତ୍ୟେକ ପଂକ୍ତିରେ ମହିମାର ଆଲୋକ ପଡ଼ିଛି। ଋକ୍‌ବେଦର ଋଷି ଲେଖିଛନ୍ତି, 'ଯାବତ୍ ବ୍ରହ୍ମବିଷ୍ଠିତଂ ତାବତୀ ବାକ୍' (ଋଗ୍‌ବେଦ ୧୦/୧୬୪/୮); ସେହି ପରମ ଚେତନା ବ୍ରହ୍ମ ଏବଂ ସେହି ଚେତନାଙ୍କ ସ୍ୱତସ୍ଫୂର୍ତ୍ତ ପ୍ରକାଶ ଅଟେ ବାକ୍। ଯେଉଁ ଅନୁଭବ ଓ ଅନୁଭୂତିକୁ କବି ଶବ୍ଦରେ ଦିଅନ୍ତି ମୁକ୍ତି ତାହା ତାଙ୍କ ଠାରୁ ଭିନ୍ନ ନ ହୋଇ ପାରେ କିଛି! ପୁନଶ୍ଚ କବିତାର ବିଷୟ ହେଉ ଯାହା, ତାହା ଉପରେ ଯଦି ମହିମାର ଆଲୋକ ନ ପଡ଼େ ତାହା କବିତା ହେବ ନାହିଁ, ହେବ ଅନ୍ୟ କିଛି! ଭୀମ ଭୋଇଙ୍କ ପ୍ରତ୍ୟେକ ପଂକ୍ତି ପ୍ରାର୍ଥନାର ଜ୍ୱଳନ୍ତ ଶିଖା। ତାର ଉଦ୍‌ଭାସରେ ଅନ୍ଧକାରମୟ ଜୀବନର ଦିଗନ୍ତ ହୋଇଥାଏ ଚିର ଆଲୋକିତ।

ମାନବ ଚୈତନ୍ୟ ସଦା ଆଛନ୍ନ। ସେହି ଆଛନ୍ନ ଚୈତନ୍ୟ ବା ଚିଦାବରଣକୁ ଭାଙ୍ଗି ଦିଏ ଭୀମଙ୍କ ସର୍ଜନ। ନବୀନ ଦୀପ୍ତି ଅନୁଭବ କରେ ଚୈତନ୍ୟ।

ଆରମ୍ଭରେ ଉଲ୍ଲେଖ କରାଯାଇଛି, 'ମ୍ୟାନ୍ ଇଜ୍ ଏସେନ୍ସିଆଲୀ ବ୍ୟାଡ୍'। ମଣିଷ ଅମୃତର ସନ୍ତାନ। ସିଏ ଖରାପ ହେଲା କେମିତି? ଭୀମ ଲେଖିଛନ୍ତି, ମଣିଷ ଭିତରେ ତ୍ରିଗୁଣ ରଜ୍ଜୁରେ ବନ୍ଧା ପାଞ୍ଚ ମନ ଓ ପଚିଶ ପ୍ରକୃତି। ସେମାନେ ମଣିଷକୁ କଂଢ଼େଇ ପରି ନଚାନ୍ତି। ତହିଁରୁ ରକ୍ଷା ପାଇବାର ପଥ ଭୀମ ଦେଖାଇଛନ୍ତି: 'ବ୍ରହ୍ମ ସାଗରେ ପିଣ୍ଡ ଝସାଅ ନେଇ/ତ୍ରିଗୁଣ ଛିଡି ଯିବ ନିଷ୍କାମ ହୋଇ'।

ମହାଯୁଦ୍ଧର ଅନ୍ଧକାରରେ ପୃଥିବୀ ବୁଡିଗଲା ବେଳେ ମାନବ ଜାତିକୁ ଉଦ୍ଧାର କରିବାକୁ ଭାରତ ବର୍ଷରେ ଗୋଟିଏ ସମୟରେ ଅନେକ ମହାପୁରୁଷ ଭିନ୍ନ ଭିନ୍ନ ସ୍ଥାନରେ ଧାରଣ କରିଥିଲେ ଦେହ। ଧର୍ମ, ସଂସ୍କୃତି ଓ ସଭ୍ୟତାକୁ ବଂଚାଇବାକୁ ଶ୍ରୀରାମ କୃଷ୍ଣ ପରମ ହଂସ, ସରସ୍ୱତୀ ଦୟାନଂଦ, ରମଣ ମହର୍ଷି, ଶ୍ରୀ ନିଗମାନଂଦ, ସତ୍ୟସାଇ, ଶ୍ରୀ ଅରବିଂଦ ଓ ବିବେକାନନ୍ଦଙ୍କପରି ଅବତରି ଥିଲେ ଭୀମ ଭୋଇ ଜଣେ ପରମ ସନ୍ଥ। ସତ୍ୟ ମହିମା ଧର୍ମର ପ୍ରଚାର ପାଇଁ ଏହି ଅନ୍ଧକନ୍ଧ ପ୍ରାପ୍ତ ହୋଇ ଥିଲେ କବିତ୍ୱର ଅମୃତ। ଅମୃତ ସେହି କବିତାର ସ୍ରୋତ ଆଜି ଯେତିକି ଲୋକଙ୍କୁ କରୁଛି ପବିତ୍ର, ସେତିକି ଲୋକ

ଚିହ୍ନି ନ ଥିବେ ଆମ ବିଦ୍ୟାଳୟର ପାଠ। ସେମାନଙ୍କୁ ସ୍ପର୍ଶ କରି ନଥିବ ଆମ ବହୁ ପ୍ରଚାରିତ କବିମାନଙ୍କ ନାମ ଓ ଗନ୍ଧ।

## କିଂବଦନ୍ତୀର ନାୟକ : କବି

କିଏ ସେହି କବି? ଅମୃତର ଉପାସନାରେ ସୁଷମାନ୍ୱିତ ତାଙ୍କର କବିତାର ଛବି। ଶୋଷଣ, ଯାତନା, ଅନ୍ୟାୟ ଓ ଅସହାୟତା ଅନ୍ଧକାରପୂର୍ଣ୍ଣ କାରାକକ୍ଷରେ କୃଷ୍ଣଚନ୍ଦ୍ରଙ୍କ ଉଦୟପରି ଇତିହାସର ଏକ ଭୟାନକ କ୍ଷଣରେ ବିତରିଲେ ସତ୍‌ଜ୍ଞାନ ସିଦ୍ଧି। ସତ୍ୟ ମହିମା ଜ୍ୟୋତି ତାଙ୍କରି କବିତାରୁ ସମାଜକୁ ବଦଳାଇବାକୁ କେମିତି ନିର୍ଝରି ଆସିଛି?

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି 'ସ୍ତୁତିଚିନ୍ତାମଣି' ମୁଖବନ୍ଧରେ ଉଲ୍ଲେଖ କରିଛନ୍ତି, ସମ୍ଭବତଃ ଖ୍ରୀଷ୍ଟିୟ ୧୮୫୫ ମସିହାରେ ଭୀମଭୋଇ ରେଢ଼ାଖୋଲରେ ଗୋଟିଏ କନ୍ଧ ପରିବାରରେ କରିଥିଲେ ଜନ୍ମଲାଭ ଏବଂ ୧୮୯୫ ମସିହାରେ କରିଥିଲେ ଦେହତ୍ୟାଗ। ପଣ୍ଡିତ ବିନାୟକ ମିଶ୍ର ଉଲ୍ଲେଖ କରିଛନ୍ତି ଭୀମଭୋଇ ୧୮୬୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୮୯୫ରେ କରିଥିଲେ ଦେହତ୍ୟାଗ।

ଭୀମଭୋଇ ଜନ୍ମ ହେବାର ପ୍ରାୟ ତିନିଶତ ବର୍ଷ ପୂର୍ବରୁ ମାଳିକା ରଚୟିତା କବି ଅଚ୍ୟୁତାନଂଦ ତାଙ୍କ ରଚିତ 'କଚ୍ଛ ସଂହିତା'ରେ କରିଥିଲେ ଉଲ୍ଲେଖ:

'ଭୁମି ଏକାନ୍ତ ଗ୍ରାମ ପୁରେ/ ଯେ ଜମ୍ବୁଦ୍ୱୀପ ଧରିତ୍ରୀରେ। ଯେ ନିତ୍ୟେ ରାଧା ମୋ ଭଗତ/ ସେ ମର୍ତ୍ତ୍ୟେ ହୋଇଥିବ ଜାତ। ତା ଦ୍ୱାରେ ପ୍ରବେଶିବୁ ଯାଇ/ ତା ନାମ ଅଟେ ଭୀମଭୋଇ।' ପୁଣି 'ଆଦି ସଂହିତା'ରେ ଉଲ୍ଲେଖ କରିଛନ୍ତି : 'ଏ ନିତ୍ୟ ରାଧା ମହାସତୀ/ ମର୍ତ୍ତ୍ୟେ ହୋଇବ ଉତ୍ପତି। ପୁଲିଙ୍ଗେ ପ୍ରକାଶ ତା କାୟ/ ଅତି ଦରିଦ୍ରାବସ୍ଥା ଦେହ। କୁଳଶୀଳ ତା ଅଟେ କନ୍ଧ/ ସେ ଭକ୍ତ କୁଳେ ଦୂତୀଚାଂଦ'। 'ନିର୍ଗୁଣ ସଂହିତା'ରେ କୁହାଯାଇଛି: 'ତୁ ରାଧା ଜନ୍ମିବୁ ସେ ମହୀ/ ନାମ ତୋ ହେବ ଭୀମଭୋଇ'।

ଭୀମଭୋଇ ଭଜନମାଳାରେ ନିଜେ ଉଲ୍ଲେଖ କରିଛନ୍ତି: 'ଅଭୟ ମଣ୍ଡଳରେ ଅନାଦି ଯୋଗେଶ୍ୱର/ ବିଚାର କଲାବେଳେ ଥିଲି ମୁଁ ଶ୍ରୀଛାମୁର/ ଆଜ୍ଞା ଦେଲେମୁଁ ହେବି ପ୍ରବୁଦ୍ଧ ଅବତାର/ ମୁହିଁ ବୋଇଲି ମୋତେ ମର୍ତ୍ତରେ ଜାତ କର/ କୃପା କରି ବୋଇଲେ ଯାଅ ସିରେ କୁମର/ ମୁହିଁ ଯାଉଛି ଆଗେ ତୁ ଏବେ ଶୁଭ କର/ ଅନନ୍ତ କୋଟି ସାଧୁ ଚୌଷଠି ସିଦ୍ଧ ମୋର/ ଅଚେତା ହୋଇ ଜନ୍ମିଛନ୍ତି ଗୃହର ଭିତର/ ଭେଟ ପାଇବୁ ଦୀକ୍ଷା ଉଦେ ପୂର୍ବ

ଦିଗର/ ବସି ବର୍ଣ୍ଣିବି ପଦ ତୋର ହୃଦ ପଦ୍ମର/ ଶୂନ୍ୟ ମହିମା ଧ୍ୱନି ହେବ ପ୍ରକାଶ । ୩ ।'

ଅନେକ କବି କିଂବଦନ୍ତୀର ନାୟକ। ଠିକ୍ ସେମିତି ଭୀମଭୋଇଙ୍କ ଚରିତ? କବି ଅଚ୍ୟୁତାନଂଦ ଉଲ୍ଲେଖ କରିଛନ୍ତି ମହାନିତ୍ୟ ରାଧା ସ୍ୱାମୀଦ୍ରୋହ ଦଣ୍ଡରେ ଦଣ୍ଡିତା ପୁରୁଷ ରୂପରେ କନ୍ଧ ଘରେ ଅବତରିବା ପାଇଁ ହୋଇଥିଲେ ଆଦେଶ ପ୍ରାପ୍ତ। କବି ଶ୍ରୀଧର ଦାସ ତାଙ୍କ ରଚିତ 'ସିଦ୍ଧ ଚନ୍ଦ୍ରିକା'ରେ କରିଛନ୍ତି ବର୍ଣ୍ଣିତ:

'ବଉଦ ରେଢ଼ାଖୋଲଠାରେ/ ପ୍ରଭୁ ବିଜୟ ଏକାନ୍ତରେ। କନ୍ଧ ଅଂଶରେ ଜନ୍ମ ହୋଇ/ ନିତ୍ୟ ରାଧିକା ଥିବ ତହିଁ। ପୁଲିଙ୍ଗେ ହୋଇଥିବ ଜାତ/ ଜନ୍ମରୁ ନେତ୍ର ତା ମୁଦିତ। ଅନ୍ତେ ତା ସ୍ଫୁରୁଥିବ ନାମ/ ବାଛୁରୀ ରଖୁଆଳ କର୍ମ। ନିଶି ପ୍ରଭାତେ ଶୂନ୍ୟ ହରି/ ଡାକିବେ ତାର ନାମ ଧରି।'

ବହୁ କିଂବଦନ୍ତୀର ନାୟକ କବି ଅକ୍ଷରରେ ଅଙ୍କିତ କରିଛନ୍ତି ନିଜର ଛବି। 'ସ୍ତୁତିଚିନ୍ତାମଣି' ତାଙ୍କର ଆତ୍ମଜୀବନୀ। ବାଲ୍ୟକାଳରୁ ସିଏ ଥିଲେ ଅରକ୍ଷିତ ପିତୃମାତୃ ଶୂନ୍ୟ ବାଳକ। ଦାରିଦ୍ର୍ୟ ତାଙ୍କ ସହଜାତ। ଧେନୁ ଚାରଣ ଥିଲା ତାଙ୍କ ଜୀବିକା। ନିଜର ଦୈନ୍ୟ ଅତି ନିର୍ମମ; କରିଛନ୍ତି ନିଜେ ସେ ଉଲ୍ଲେଖ :

'ଗର୍ଭଧାରୀ ପିତା ଛାଡିଗଲେ ମୋତେ
ଜନ୍ମରୁ ନିଶାଖା ହୋଇ।
ସୁସ୍ୱେ ଭୋଜନ ସୁଖଭୋଗ ବାଂଛିଲେ
କାହିଁରୁ ପାଇବି ନାହିଁ।
ଲୁହ ନାହିଁ ରକ୍ତ ବହୁଥାଇ ମୋର
ଶ୍ରୀହସ୍ତେ ଦିଅଇ ପୋଛି।
କେହି ନ ଜାଣନ୍ତି ଶ୍ରୀଗୁରୁ ଜାଣନ୍ତି
ଯେତେ କଷ୍ଟ ପାଇଅଛି।'

ବୟସର ନଈ ବଢ଼ିଲା। ଶୈଶବର ସ୍ରୋତ ଯେତେବେଳେ ପହଂଚେ ଚାରିବର୍ଷରେ କବି କରିଛନ୍ତି ନିଜ ସିଦ୍ଧିର ଉଲ୍ଲେଖ। ଜ୍ୟେଷ୍ଠମାସ। ଡହ ଡହ ଖରାରେ ନିର୍ବେଦ କର୍ମଯୋଗୀ ପୁତ୍ର ଜଣେ କଷା କୌପୁନୀ ପିନ୍ଧି କରୁଥାନ୍ତି ଗ୍ରାମକୁ ଗ୍ରାମ ଭ୍ରମଣ। ପ୍ରଚ୍ଛନ୍ନ ରୂପ। ଭୀମଭୋଇ ଦେଖିଲେ ତାଙ୍କ ଦୁଇ ଭୁଜରେ ଶଂଖଚକ୍ର !

'ବିଜୟେ ଶ୍ରୀଗୁରୁ ଅବନା ମଂଦିରୁ
ଶୂନ୍ୟେ ଯା ବାନା ପ୍ରକାଶ
ଜ୍ଞାନ ନେତ୍ରେ ଦେଖି ଉଠିଲେ ଚମକି
ରୂପ ବିଜୁଳିର ତ୍ରାସ ହେ।' (ଭଜନମାଳା)

ଭୀମଭୋଇ ଥିଲେ ଆବାଲ୍ୟରୁ ଅନ୍ଧ। 'ଓଡ଼ିଶାରେ ମହିମାଧର୍ମ' ପୁସ୍ତକରେ ଚିତ୍ତରଂଜନ ଦାସ କରିଛନ୍ତି ପ୍ରକାଶ। ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଛନ୍ତି- 'ଭୀମ ଯେ ଆଜନ୍ମ ଅନ୍ଧ ଥିଲେ ସେ ବିଷୟରେ ଶ୍ୟାମଘନଙ୍କ 'ଅଲେଖା ମାଳିକା', ଅଚ୍ୟୁତାନନ୍ଦଙ୍କ ଉପରୋକ୍ତ କଚ୍ଛ, ଆଦି ନିର୍ଗୁଣ, ପରଂବ୍ରହ୍ମ ଓ ମହାଶୂନ୍ୟ ସଂହିତା ଏବଂ ଶ୍ରୀଧର କୃତ 'ସିଦ୍ଧି ଚନ୍ଦ୍ରିକା', ଯଶୋବନ୍ତ ଦାସଙ୍କ କୃତ 'ମାଳିକା' ସମସ୍ତେ ଏକମତ।' 'ସିଦ୍ଧି ଚନ୍ଦ୍ରିକା'ରେ ଲେଖିଛନ୍ତି ଶ୍ରୀଧର ଦାସ – 'ଜନ୍ମରୁ ଅନ୍ଧ ଥିଲା ହୋଇ। ନେତ୍ର ଫିଟିଲା ପ୍ରଭୁ ଚାହିଁ।' ମାଟିର ମହାକବି ସାରଳା ଦାସ ଉଲ୍ଲେଖ କରିଛନ୍ତି ଦେବୀଙ୍କ କୃପାରୁ କବିତ୍ୱ ଓ ପାଣ୍ଡିତ୍ୱ ହୋଇଥିଲା ତାଙ୍କର ପ୍ରାପ୍ତି। କବିତ୍ୱ ପ୍ରାପ୍ତି ସମ୍ବନ୍ଧରେ 'ଭୋଜ ପ୍ରବନ୍ଧ'ରେ କାଳିଦାସଙ୍କ ସମ୍ବନ୍ଧରେ କିଂବଦନ୍ତୀଟିଏ ମଧ୍ୟ ରହିଛି। ଠିକ୍ ସେହିଭଳି ନିଜ କବିତ୍ୱ, ପାଣ୍ଡିତ୍ୱ ଓ ଶିକ୍ଷାପ୍ରାପ୍ତି କଥା ଭୀମଭୋଇ ବର୍ଣ୍ଣନା କରିଛନ୍ତି:

୧. 'ଯେତେବେଳେ ଗୁରୁ କହି
ଯେ ଦ୍ୟନ୍ତି ଭେଦ
ତେଣୁ ସେ ଯୋଡଇ କବି
ଯେ କୃତ୍ୟ ପଦ।
ଗୁରୁ ନ କହିଲେ ମୋତେ
ଯେ ନ ଆସଇ
ଶ୍ରୀଗୁରୁ ବ୍ୟତୀକେ ଅନ୍ୟ
ଯେ ଆଜ୍ଞା ନାହିଁ।' (୪ର୍ଥ ଅଧ୍ୟାୟ, ଆଦିଅନ୍ତ ଗୀତା)

୨. 'ଶ୍ରୀଗୁରୁ କୃପାରେ
ମୋର ଗୋ କବିପଣ
ବାଳକ ବୟସ ବୁଦ୍ଧି ମୋ ନାହିଁ ଜ୍ଞାନ
ଗୁରୁ ଆଜ୍ଞାରେ ମୁଁ କରିଛି କବି-କୃତ୍ୟ
ମୁହିଁ କିସ କହିବାକୁ ଯେ ସାମରଥ'। (୧ମ ଅଧ୍ୟାୟ, ଆଦିଅନ୍ତ ଗୀତା)

୩. ‘ଜନମ କାଳରୁ ମୂର୍ଖ ମୁଁ ହୋଇଥିଲି
ଷୋଳ ବରଷକେ କବି ମୁଁ କୃତ୍ୟ କଲି
ବେଦ ଶାସ୍ତ୍ର ବୋଲି
କିଛି ମୁଁ ଜାଣେ ନାହିଁ
ଗୁରୁ ହୃଦପଦ୍ମେ ବସି
ଯେ ଦେଲେ କହିଁ।’ (୮ମ ଅଧ୍ୟାୟ, ଆଦିଅନ୍ତ ଗୀତା)

ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍‌ଟର ସଦାଶିବ ମିଶ୍ର, ବିଶ୍ୱବିଦ୍ୟାଳୟ ପ୍ରକାଶିତ ‘ସର୍ବ ବେଦବେଦାନ୍ତ ସାରତତ୍ତ୍ୱ ଶିରୋମଣିଃ, ଅଲେଖ ପରଂବ୍ରହ୍ମ ଦର୍ଶନମ୍’ (ପୂର୍ବାର୍ଦ୍ଧ) ମୁଖବନ୍ଧରେ- ‘ସ୍ୱୟଂ ଅଲେଖ ସ୍ୱାମୀ ସଂସାରରେ ଅବତୀର୍ଣ୍ଣ ହୋଇ ପ୍ରଥମେ ଏଇ ଉତ୍କଳ ଭୂମିରେ ଏ ଧର୍ମର ପ୍ରଚାର କରିଥିଲେ ଏବଂ ଏହି ଧର୍ମର ଅବଧୂତ ସନ୍ନ୍ୟାସ ଭୀମଭୋଇଥିଲେ ପ୍ରଧାନ। x x ସେ ଥିଲେ ଅନ୍ଧ ଏବଂ ସାଧାରଣ ବିଦ୍ୟାଳାଭର ସୁଯୋଗ ପାଇନଥିଲେ, ମାତ୍ର ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କରି ତାଙ୍କର ପ୍ରତିଭା ବିକଶିତ ହୋଇ ଉଠିଲା। ସେ ସ୍ତୁତି, ଜଣାଣ, ଆବେଦନ ଏବଂ ଉପଦେଶ ଆକାରରେ ଏ ଧର୍ମକୁ ସାଧାରଣରେ ପ୍ରଚାର କଲେ।’

‘ସତ୍ୟ ମହିମାଧର୍ମ ଇତିହାସ’ (ପୃଷ୍ଠ ୫) କହନ୍ତି ମହିମା ସ୍ୱାମୀଙ୍କ ଆଜ୍ଞାରେ ମହିମାଧର୍ମରେ ଦୀକ୍ଷିତ ଚାରି ଜଣ ବ୍ରାହ୍ମଣ ହରି ପଣ୍ଡା ଓ ବାସୁ ପଣ୍ଡା ପ୍ରଭୃତି ଭୀମ ବସି ଆବୃତ୍ତି କଲାବେଳେ ତାଳପତ୍ର ଓ ଲେଖନୀ ଧରି ଲେଖି ଚାଲନ୍ତି ଏବଂ ତାହା ପ୍ରତ୍ୟହ ହୁଏ ଗାୟନ। ଭୀମଭୋଇ ଥିଲେ ଗୌରବର୍ଣ୍ଣର ଏବଂ ଚେହେରା ତାଙ୍କର ଥିଲା ବଳିଷ୍ଠ। ମୁହଁଟି ସୁନ୍ଦର।.ସିଏ ଥିଲେ ବିବେକୀ, ଜ୍ଞାନୀ, ଭକ୍ତ, ବିନୟୀ ଓ ମଧୁର ଆଳାପୀ ସ୍ୱଭାବ। ସିଏ ଥିଲେ ସୁଚରିତ୍ର ଓ ସୁଗାୟକ। ନିଜେ ଖଂଜଣୀ ବାଦନ କରି ଗାନ କରି ଶତ ଶତ ଲୋକଙ୍କୁ କରୁଥିଲେ ଆକୃଷ୍ଟ।

ଭୀମଭୋଇ ଥିଲେ ଜାତିରେ କନ୍ଧ କିଂତୁ ଜଣେ ବ୍ରାହ୍ମଣ କନ୍ୟା, ଅନ୍ନପୂର୍ଣ୍ଣାଙ୍କୁ କରିଥିଲେ ବିବାହ। ତାଙ୍କର ଥିଲା ଗୋଟିଏ ପୁତ୍ର କପିଳେଶ୍ୱର ଏବଂ କନ୍ୟା ନାମ ଲାବଣ୍ୟବତୀ। ‘ଖଲିଆପାଲି’ଠାରେ ଏହି ଦୁଇଙ୍କ ସମାଧିମାନ ରହିଛି।

୧୮୭୬ ଖ୍ରୀଷ୍ଟାବ୍ଦ। ଗୁରୁ ମହିମା ସ୍ୱାମୀ ହୋଇଥିଲେ ଅନ୍ତର୍ଦ୍ଧାନ। କବି ଭୀମଭୋଇ ଶ୍ରୀ ପ୍ରତାପରୁଦ୍ର ସିଂହଦେବଙ୍କ ଆଜ୍ଞାରେ ତାଙ୍କ ରାଜ୍ୟ ସୀମାଠୁ ପାଞ୍ଚକୋଶ ଦୂର ‘ଖଲିଆପାଲି’ଠାରେ ରହି ସ୍ୱରଚନାବଳୀରେ ଲାଗିଥିଲେ।

'Modern Budhism and its followers in Orissa' ପୁସ୍ତକରେ ନଗେନ୍ଦ୍ର ନାଥ ବସୁ ମଧ୍ୟ ଭୀମଭୋଇ ସମ୍ବନ୍ଧରେ ଟିକିଏ ଅଲଗା କିଂବଦନ୍ତୀ ରଚନା କରିଛନ୍ତି। ଭୀମଙ୍କୁ ଗୋଟିଏ ଦଉଡିରେ ବାନ୍ଧି ପ୍ରଭୁ ଯୋରନ୍ଦା ନେଇ ଆସିଥିଲେ। ସେଠାରେ ଗୋଟିଏ ମନ୍ଦିରରେ ବଂଦୀ କରି ରଖିଲେ। କହିଲେ - 'ତୁ ଯଦି ସିଦ୍ଧି ପ୍ରାପ୍ତ ହୋଇଛୁ, ମୁଁ ତିନିଥର ତାଳି ମାରିବି, ତାରି ଭିତରେ ତୁ ଦେଉଳରୁ ପଦାକୁ ବାହାରି ଆସିବୁ'।

ଭୀମ ପରୀକ୍ଷାରେ ହେଲେ ଉତ୍ତୀର୍ଣ୍ଣ। ସନ୍ତୁଷ୍ଟ ହୋଇ ପ୍ରଭୁ ତାଙ୍କୁ କହିଲେ- 'ବର୍ତ୍ତମାନ ମୋର ଆଦେଶ, ତୁ ଏହି ଠାରେ ରହି ମୋ ଧର୍ମର ପ୍ରଚାର ଲାଗି ପଦ୍ୟମାନ ରଚନା କର। ଆଉ ତତେ ଏତେସେଣେ ବୁଲିବାକୁ ହେବ ନାହିଁ। ସେହି ଠାରେ ରହି ଭୀମ ହେଲେ ଗୃହସ୍ଥ ଏବଂ ସତ୍ୟ ମହିମା ଧର୍ମର ପ୍ରଚାର ଓ ପ୍ରସାର ଲାଗି ରଚନା କରିଚାଲିଲେ ଭଜନ ଓ ଜଣାଣ। କଥିତ ରହିଛି, ୧୮୯୫ ମସିହା, ଏକ ଶୁଭଦିବସର ସକାଳ। ଖଳିଆପଲ୍ଲୀ-ସ୍ଥାନର ନାମ। କବିଙ୍କ ବୟସ ୪୬ ବା ୪୭ ହେବ। ପ୍ରାତଃ ଶରଣ ଦର୍ଶନ ସମାପ୍ତ କରି କବି ପୂର୍ବାଭିମୁଖ ହୋଇ କଲେ ଉପବେଶନ। ଅଲେଖ ନିରଂଜନଙ୍କୁ ସ୍ମରଣ କରୁ କରୁ ଉର୍ଦ୍ଧ୍ବକୁ ଉଠି ଯାଇଥିଲା ତାଙ୍କ ଆତ୍ମକପୋତ। ଯଥେଷ୍ଟ ପୂର୍ବରୁ ନିଜ ବାହୁଡ଼ା ବିଜୟ ସୂଚନା ଭକ୍ତଙ୍କୁ ଦେଇଥିଲେ ସିଏ। ସେଇଠି ତାଙ୍କ ପାଇଁ ନିର୍ମିତ ହେଲା ସମାଧି ମଂଦିରଟିଏ। ତାଙ୍କ ପାଖକୁ ତାଙ୍କ ପତ୍ନୀ ଅନ୍ନପୂର୍ଣ୍ଣାଙ୍କ ସମାଧି ମଂଦିରଟି ମଧ୍ୟ ରହିଛି।

ସତ୍ୟ ମହିମା ଧର୍ମର ଦୀପ୍ତ ଦୀପଶିଖା ଦୁଇଟି ଅମ୍ଳାନ ହୋଇ ଏବେ ବି ଜଳୁଛନ୍ତି ଯେମିତି ।।

## ସମାଲୋଚକଙ୍କ ଦୃଷ୍ଟିର ଦର୍ପଣରେ ଭୀମଭୋଇ ରାଧାନାଥ ଓ ମଧୁସୂଦନଙ୍କଠୁ ଆଧୁନିକ

'ଆଧୁନିକ ଓଡ଼ିଆ କବିତାର ଇତିହାସ: ଏକ ସୂଚନା'ରେ ଅଧ୍ୟାପକ କୁମୁଦ ଚଂଦ୍ର ଦାଶ କରିଛନ୍ତି ଉଲ୍ଲେଖ, 'କଳା ଏକାଧାରରେ ସମକାଳର ଓ ମହାକାଳର। କଳାର ସ୍ଥିତି ସମକାଳରେ ତାର ଗୌରବ ମହାକାଳ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇପାରେ। ଏହି ଦୃଷ୍ଟିରୁ ଭୀମଭୋଇ ଆଧୁନିକ କବି। ରାଧାନାଥ ଓ ମଧୁସୂଦନଙ୍କ ଠିକ୍ ସମକାଳରେ ସେ ଲେଖନୀ ଚାଳନା କରିଛନ୍ତି। କଳା ଦୃଷ୍ଟିରୁ ତାଙ୍କ ସୃଷ୍ଟି ରାଧାନାଥ ଓ ମଧୁସୂଦନଙ୍କ ଠାରୁ ଆଦୌ ନ୍ୟୂନ ନୁହେଁ, ବରଂ ସାଂପ୍ରତିକ ଦୃଷ୍ଟିରେ ସେ ପୂର୍ବୋକ୍ତ କବି ଯୁଗଳଙ୍କ ଅପେକ୍ଷା ଆଧୁନିକତାର ଅଧିକ ନିକଟବର୍ତ୍ତୀ। ଭାଷା ଓ ଛଂଦ ଦୃଷ୍ଟିରୁ ଭୀମଭୋଇଙ୍କ

କବିତା ରାଧାନାଥ ଓ ମଧୁସୂଦନଙ୍କ ସୃଷ୍ଟିଠାରୁ ବହୁ ସରଳ। ରାଧାନାଥ ଓ ମଧୁସୂଦନଙ୍କ କବିତାରୁ ପ୍ରତିଫଳିତ ଆନ୍ତରିକତା ଅପେକ୍ଷା ଭୋଇଙ୍କ କବିତାରେ ଆନ୍ତରିତା ଅଧିକ ଦୃଢ଼। ପ୍ରତିମା ବିନ୍ୟାସରେ ପରିବେଶ ଦୃଷ୍ଟିରୁ ପାରଂପରିକତାର ପ୍ରଭାବ ଥିଲେ ମଧ, ବହୁ ସ୍ଥଳରେ ଭୋଇଙ୍କ କବିତାରେ ପ୍ରତିମା ବିନ୍ୟାସର ଏପରି ଉଦାହରଣ ମିଳେ, ଯାହା ବହୁ ଅଧ୍ୟୟନର ପରିଣତି ସ୍ୱରୂପ କେବଳ ମାତ୍ର ସ୍ୱାଧୀନତା ପରବର୍ତ୍ତୀ କାଳରେ ଆମକୁ ପ୍ରଚୁର ପରିମାଣରେ ମିଳେ। ଭୀମଭୋଇଙ୍କ କବିତାରେ ଗୀତିଧର୍ମ ସହିତ ଚିନ୍ତାରଶ୍ମିର ଅନନ୍ତ ସ୍ଫୁରଣ ବେଶ୍ ଗୋଟିଏ ଦ୍ରଷ୍ଟବ୍ୟ ପ୍ରସଙ୍ଗ। ମଧୁସୂଦନ ଯେପରି ତାଙ୍କ ବ୍ରାହ୍ମ ଧର୍ମର ବ୍ରହ୍ମଙ୍କୁ ଧରିଛନ୍ତି, ଭୋଇ ସେପରି ଧରିଛନ୍ତି ତାଙ୍କର ନିର୍ଗୁଣ ବ୍ରହ୍ମ ଅଲେଖଙ୍କୁ। ବଙ୍ଗଳାରୁ ଉଦିତ ବ୍ରାହ୍ମ ଧର୍ମରୁ ଯାହା ପାଇଛନ୍ତି ମଧୁସୂଦନ, ଓଡ଼ିଶାରେ ଯୁଗ ଯୁଗ ଧରି କ୍ରମବିକଶିତ ଧର୍ମଧାରାର ଏକ ରମ୍ୟ ଅନ୍ତିମ ଉତ୍ତରଣ ମହିମା ଧର୍ମରୁ ଭୀମଭୋଇ ତାହା ଲାଭ କରିଛନ୍ତି। ମଧୁସୂଦନ ଥିଲେ ଓଡ଼ିଆ କବିତାରେ ସନେଟ୍ ବା ଚତୁର୍ଦ୍ଦଶପଦୀ କବିତାର ବଳିଷ୍ଠ ପ୍ରବର୍ତ୍ତକ। ଭୋଇଙ୍କ 'ସ୍ତୁତି ଚିନ୍ତାମଣି'ରେ ଆମେ ଦେଖିବାକୁ ପାଉଁ ଏକଶତ 'ବିଂଶପଦୀ କବିତା'। ପ୍ରତ୍ୟେକ କବିତାକୁ ସେ 'ବୋଲି' ନାମରେ ଅଭିହିତ କରିଛନ୍ତି। ଏପରି ଆଳଙ୍କରିକ ବନ୍ଧନ ବିମୁକ୍ତ ଆଙ୍ଗିକ ଏକ ରୂପତ୍ୱର ପ୍ରତିଷ୍ଠାନ ମୌଳିକ ଭାବରେ କୌଣସି ପ୍ରାଚୀନ କିଂବା ଆଧୁନିକ କବି କରିପାରି ନାହାନ୍ତି।'

ଅଧ୍ୟାପକ ଦାଶ ପୁନଶ୍ଚ ସତର୍କ ଓ ସୂଚିତ କରାଇଛନ୍ତି: 'ଭୀମଭୋଇଙ୍କୁ ଏହି ଭାବରେ ଆଲୋଚନା ନ କଲେ ଆମେ ସାହିତ୍ୟ ଶାସ୍ତ୍ରର ତର୍କସିଦ୍ଧତାକୁ ଅସ୍ୱୀକାର କରିବୁ। ଭୀମଭୋଇ ସ୍କୁଲ କଲେଜରେ ପଢ଼ି ନଥିଲେ ଏବଂ ତାଙ୍କ କବିତା ପତ୍ରିକାରେ ବାହାରି ନଥିଲା ବୋଲି ତାଙ୍କୁ ଅବହେଳା କରାଯାଇ ନପାରେ'।



# କ୍ଲାସିକ୍ ରେନେସାଁର ଆର୍ଟ: ରଚନାର ପ୍ରଥମ ପାଠ

ଗ୍ରୀକ୍ ନାଟ୍ୟକାର ଆରିଷ୍ଟୋଫେନ୍ ତାଙ୍କ ନାଟକ 'ଫ୍ରଗ୍'ରେ କବି ଏସିଲସ୍(AEschylus)ଙ୍କ କଂଠରେ ଉଚ୍ଚାରିତ କରାଇଥିଲେ, 'pray, tell me on what particular ground a poet should claim admiration'? ୟୁରିପିଡେସ୍‌ଙ୍କ ସହିତ ତାଙ୍କର ବାଦାନୁବାଦ ବେଳେ ଉତ୍‌ଥିତ ହୋଇଥିଲା ଏହି ପ୍ରଶ୍ନ।

କେଉଁ ନିର୍ଦ୍ଦିଷ୍ଟ ଭୂମିରେ ଜଣେ ସ୍ରଷ୍ଟା ଦାବି କରିବା ଉଚିତ୍ ତାଙ୍କର ପ୍ରଶଂସା ? ପ୍ଲାଟୋଙ୍କ ପାଦ ତଳେ ଥିଲା ଯେଉଁ ଯୁକ୍ତିର ସବୁଜ ଭୂମି, ସିଏ ଦର୍ଶାଇଥିଲେ, ବରଂ ଅଭିଯୋଗ କରିଥିଲେ, 'a work of art, as a mere imitation of reality, is only a copy of copy'. ଶିଳ୍ପୀର ପ୍ରିୟ ଏବଂ ଶିଳ୍ପ ଦ୍ୱାରା ହୋଇଥାଏ ତାଙ୍କର ଆଦୃତି ଓ ଶିଳ୍ପହିଁ ତାଙ୍କର ସ୍ୱୀକୃତି। ସେହ ସୃଷ୍ଟି ସ୍ରଷ୍ଟାଙ୍କ ଶ୍ରେଷ୍ଠ ପ୍ରଶଂସା, ଡେମୋଡୁକ୍ସ(Demodocus)ତାଙ୍କ ବକ୍ତବ୍ୟରେ କରିଛନ୍ତି ଉଚ୍ଚାରିତ।

ଗ୍ରୀକ୍ ଶିକ୍ଷକମାନଙ୍କ ମଧ୍ୟରେ ୟୁରିପିଡେସ୍ ଥିଲେ ଅତି ଆଧୁନିକ। ତାଙ୍କ ସ୍କୁଲ ଭ୍ରାନ୍ତଯୁକ୍ତି ମୁକ୍ତ ଓ ଅଭ୍ରାନ୍ତ ସିଧା ପ୍ରଶ୍ନରେ କରୁଥିଲା କଳାର ସମୀକ୍ଷା। ସତ୍ତା କ'ଣ? ଭଲ କ'ଣ? ଜ୍ଞାନ କ'ଣ? ପୁଣ୍ୟ କ'ଣ? ବାକ୍ କ'ଣ ଏବଂ ଶୈଳୀ କ'ଣ?ଚରିତ୍ର କ'ଣ? କବିତାର କାମ କ'ଣ ଏବଂ ଏହାର ଉଦ୍ଦେଶ୍ୟ କ'ଣ? ସମକାଳୀନ ଜୀବନର ଜ୍ୱଳନ୍ତ ସମସ୍ୟା ଉପରେ କେଉଁ କାର୍ଯ୍ୟ ବା କିପ୍ରକାର କାର୍ଯ୍ୟ ସଂପାଦନ କରୁଛି କଳା? ୟୁରିପିଡେସ୍ କରୁଥିଲେ ଏହାର ଗବେଷଣା।

କଳା ପରିବହନ କରେ ନନ୍ଦନତତ୍ତ୍ୱ ବା ଅତ୍ୟୁଲ୍ଲାସ; କଳାର ଆଙ୍ଗିକକୁ ସ୍ୱୀକୃତି ପ୍ରଦାନ କରି ଉଚ୍ଚାରଣ କରିଥିଲେ ଲଙ୍ଗିନସ୍(Longinus), ରୋମାନ୍ ପଣ୍ଡିତ। ଶିଳ୍ପୀ ଯାହା ଉପସ୍ଥାପିତ କରନ୍ତି, ତାହା ଶିଳ୍ପର ଆଙ୍ଗିକ, ବସ୍ତୁର ନକଲ ହେତୁ ନୁହେଁ ସତ୍ୟ। କଳା ମାୟା ଦର୍ପଣ। ଉଚ୍ଚାରଣ କରିଛନ୍ତି ପ୍ଲାଟୋ, '...the art deals an illusion; ପୁନଶ୍ଚ 'It is the appearances which the artist imitates, not Reality'.ସେହି ପ୍ଲାଟୋହିଁ ତାଙ୍କ କଳାତତ୍ତ୍ୱର ଭୂମି ଉପରୁ ଦର୍ଶାଇଥିଲେ, 'something beautiful' ଉପସ୍ଥାପିତ କରିଥାଏ ଚିତ୍ରୀ, କବିତା ଲେଖି କବି। ବଢ଼େଇ ତିଆରି କରେ ପଲଙ୍କ। ସେହି ପଲଙ୍କକୁ ଦେଖି ଚିତ୍ରୀ ଆଙ୍କେ ଛବି।

ପଲଙ୍କ ନୁହେଁ ଜଣେ ବଢ଼େଇର ମୌଳିକ ସୃଷ୍ଟି। ସିଏ ବୃକ୍ଷ କାଟି ଅନ୍ୟ କାହା ପଲଙ୍କକୁ ଦେଖି ନିଜେ ତିଆରି କରିଛି ଏବଂ ସେହି ପଲଙ୍କକୁ ଦେଖି ସୁନ୍ଦର

ଛବି ଆଙ୍କିଛନ୍ତି ଶିଳ୍ପୀ। ଏହି ଦୃଷ୍ଟିରୁ କଳାକୁ 'only a copy of a copy' ବୋଲି ସିଏ କହିଛନ୍ତି। ପ୍ଲାଟୋ ଆଉ ଆଗକୁ ଯାଇ କହି ନାହାଁନ୍ତି ଶିଳ୍ପଟି କେମିତି ହେବ ମୌଳିକ ! କଳା ସୃଷ୍ଟିରେ ପଡୁଥିବା ପ୍ରଭାବ ଓ ଶିଳ୍ପୀର ଆବେଗ ପ୍ରତି ତାଙ୍କର ଦୃଷ୍ଟି ସକରାତ୍ମକ।

ମାନବର ସୌନ୍ଦର୍ଯ୍ୟବୋଧରୁ ରୂପ ନିଏ ଆର୍ଟ ଏବଂ ନିଜର ଆନନ୍ଦ ପାଇଁ ଓ ଅନ୍ୟମାନଙ୍କ ସୁଖ ପାଇଁ ସିଏ ହୁଏ କଳା ସୃଷ୍ଟି; ପ୍ଲାଟୋଙ୍କ ପରେ ଆରିଷ୍ଟଟଲଙ୍କ 'କାବ୍ୟତତ୍ତ୍ୱ' (Poetics, VII,1450b,ଏବଂ XIV,1433b) ରେ ଉପସ୍ଥାପିତ କରିଛନ୍ତି। '... art, whether it to be a picture or poem, is a thing of beauty; and that it affords pleasure appropriate to its own kind'। ନକଲ କରିବା ବା କଳା ସୃଷ୍ଟି ଦ୍ୱନ୍ଦ୍ୱାତ୍ମକ। ସାହିତ୍ୟର ଅବ୍‌ଜେକ୍ଟିଭର ଉପସ୍ଥାପନ। ଯାହାଜୀବନ, ତାହାଥାଏ,କଳ୍ପନାରେ ବା କଳାରେ ଏହା ପୁନର୍ଗଠିତ ହୁଏ। ସେହି ପୁନର୍ଗଠନର ଉପାଦାନ ଅବ୍‌ଜେକ୍ଟିଭ୍। ସେହି ନିଶ୍ଚିତ ଅବ୍‌ଜେକ୍ଟିଭ୍ ଗୁଡିକ କଳା ସୃଷ୍ଟିର ମାଧ୍ୟମ। ତହିଁରେ ଖଂଜା ଯାଇଥାଏ ଭାଷା, ନିୟମିତ ଭାବେ ଘଟଣାବଳୀର ପୁନରାଗମନ ଏବଂ ସୁସଂଗତ ଓ ମେଳ ଖାଉଥିବା ଅବସ୍ଥା। ଏହା ମଝିରେ ଆରିଷ୍ଟଟଲ ଉପସ୍ଥାପିତ କରିଛନ୍ତି ଏକ ନୈତିକ ବିଚାର। ମିଳନ ଓ ବିୟୋଗ ଶବ୍ଦର ଚରିତ୍ରରୁ ବାରିହେବ ଏବଂ କଳାର ଚରିତ୍ର ତାହା ଭୋଗ କରୁଥିବ।

ବିୟୋଗ ବା ଟ୍ରାଜେଡିରେ 'the plot is the first thing',ଗୁରୁତ୍ୱପୂର୍ଣ୍ଣ ଓ ଆଦର୍ଶ ଚରିତ୍ର ଚିତ୍ରଣରେ ଉତ୍ତୀର୍ଣ୍ଣ ହୁଏ ଏହାର ମହତ୍ୱ। ମାନବୀୟ ନୀଚ ପ୍ରକୃତି ଓ ପ୍ରବୃତ୍ତିକୁ ଏଥିରେ ଅନାବୃତ୍ତ କରିବାକୁ ହୁଏ। ଆଦର୍ଶ ଓ ନୈତିକତାର ଘଟେ ବିଜୟ। କଳା ବା ନାଟକ ସଂଯୋଜନାର ଉପାଦାନ ତିନୋଟି, ସେଗୁଡିକ ପ୍ରତି ସ୍ରଷ୍ଟା ଦେବେ ପୂର୍ଣ୍ଣ ଦୃଷ୍ଟି। ଆରିଷ୍ଟଟଲ ଦର୍ଶାଇଛନ୍ତି, ସେଗୁଡିକ ହେଲା, plot, character ଓ thought। ପ୍ଲଟ ହିଁ ପୂର୍ବରୁ ସୂଚିତ କରିଥାଏ ଚରିତ୍ର ଓ ଚିନ୍ତାର ଚାରିତ୍ରିକତା। ଶବ୍ଦ ସଜ୍ଜା (Diction) ଓ ଚିନ୍ତା ପ୍ଲଟକୁ କରାଇଥାନ୍ତି ପ୍ରକଟିତ। ଚରିତ୍ର ଜଣେ ନାୟକ, ଗ୍ରୀକ୍ ଟ୍ରାଜେଡିରେ ...'hero should be one who is highly renowned and prosperous I' ଏବେ ମଧ୍ୟ ଆମ ଉପନ୍ୟାସ, ଗଳ୍ପ ଓ ନାଟକରେ ଜଣେ ନାୟକ ପରଂପରା ଉଦ୍‌ଜୀବିତ। ତା ଚରିତ୍ରର ଉଜ୍ଜ୍ୱଳ ଦିଗ ଆମ ନୈତିକ ଚେତନାକୁ କରୁଛି ରସାଣିତ ଓ ମାର୍ଜିତ।

ଆରିଷ୍ଟଟଲଙ୍କ ପାଇଁ ସମସ୍ତ ଆର୍ଟ ଥିଲା imitation, ନକଲ। ନକଲର ଅବ୍‌ଜେକ୍ଟମାନ ବଛାଯାଇ ଗଠିତ ହୁଏ ପ୍ଲଟ। ଅବିଭକ୍ତ ସଂଳାପରେ ତିଆରି ହୁଏ ଚରିତ୍ର। ଚରିତ୍ରର ଚାରିତ୍ରିକ ବୈଶିଷ୍ଟ୍ୟକୁ ଆଲୋକିତ କରେ ସଂଳାପ। ଆର୍ଟରେ, ଉପନ୍ୟାସରେ ବା ଗଳ୍ପରେ ଭାଷା, ଚରିତ୍ର ବା ଚରିତ୍ରପରି ପ୍ଲଟ ବି ଏକ ଉପାଦାନ। ଗୋଟିକୁ ବ୍ୟାଖ୍ୟା କଲେ ଅନ୍ୟ ଦୁଇଟି ସ୍ୱତଃ ପ୍ରକଟିତ ହୋଇଥାନ୍ତି।

କଳା ବାସ୍ତବରେ ନୂତନତ୍ୱହୀନ ନକଲ ନୁହେଁ; ଜୀବନର ପାରିପାର୍ଶ୍ୱିକ ଉତ୍‌ଥାପନ, ଆରିଷ୍ଟଟଲ ପ୍ଲାଟୋଙ୍କୁ ଦେଇଥିଲେ ଉତ୍ତର। ମାଂସ ଓ ରକ୍ତର ଉତାପ ତହିଁରୁ ସିଏ କରିଥିଲେ ଅନୁଭବ। ଶିଳ୍ପୀ ବା ସ୍ରଷ୍ଟା କଳାଗତ ସତ୍ୟକୁ ଜାଣିଲେହିଁ ତାଙ୍କ ସୃଷ୍ଟିରୁ ତାହା ହୁଏ ଅନୁଭବ। ସୃଷ୍ଟି ପାଇଁ ତେଣୁ ସିଏ ବାଛିଥାନ୍ତି ସଫଳ ସମ୍ଭାବନା ଥିବା ଅସମ୍ଭବକୁ ଏବଂ ଅସଫଳ ସମ୍ଭାବନା ଥିବା ସମ୍ଭବକୁ କରିଥାନ୍ତି ତ୍ୟାଗ। ଆରିଷ୍ଟଟଲଙ୍କ ସେହି ପଦ ଦୁଇଟି ହେଲା, 'probable impossibilities' ଏବଂ 'improbable' possibilities' ।

କାରଣ ପ୍ରତି ନୁହେଁ କଳାର ଆବେଦନ, ଏହା ଆବେଗ ପ୍ରତି, ଉଦ୍ଦୀପନା ପ୍ରତି ଦିଏ ଖାଦ୍ୟ। ସବୁଠୁ ମୂଲ୍ୟହୀନ ପ୍ରାଣର ଅଂଶ ପ୍ରତି ଜୀବନ୍ତ ହେବାକୁ ଯୋଗାଇ ଥାଏ ଖୋରାକ୍। ଯନ୍ତ୍ରଣା ବା ବେଦନାର ଦର୍ଶକ ନୁହେଁ ଟ୍ରାଜେଡି, ଏହା ତାହାର ଉପଶମକାରି ଆଶ୍ୱାସନା ପ୍ରଦାନି। ଭୁଲକୁ, ଅସତ୍ୟକୁ ଓ ମିଥ୍ୟାକୁ ଧରା ପକାଇ ଦିଏ।

ସମୀକ୍ଷକ ଭାବେ କେବଳ ଆରିଷ୍ଟଟଲ୍ ନୁହଁନ୍ତି, ସବୁ ସ୍ରଷ୍ଟାଙ୍କ ଏକ ତ୍ରୁଟି ସେ, ସେମାନେ ଅତୀତ ଉପରେ ନିଜର ଦୃଷ୍ଟି କେନ୍ଦ୍ରିଭୂତ କରିଥାନ୍ତି। ସେମାନେ ପଛକୁ ଦେଖନ୍ତି। ପୁନଶ୍ଚ ଲେଖାର ମନୋରମ, ବୁଦ୍ଧି ଓ ଇନ୍ଦ୍ରିୟ ସାହାଯ୍ୟରେ ହୃଦୟଙ୍ଗମ କରିବା ପ୍ରବଣତାକୁ ପ୍ରବର୍ତ୍ତାଏ ସ୍ୱଷ୍ଟ ଶୈଳୀର ମାଧ୍ୟମ। ଶବ୍ଦ ଖଞ୍ଜା ଯଥାଯଥ ହେଲେ କଳାର ସ୍ୱଚ୍ଛତା ଓ ଗୋପନ କ୍ରିୟା ସୃଷ୍ଟିକୁ କରେ ସ୍ୱାଦିଷ୍ଟ।

କଳାର ଦୁଇଟି କାମ, 'to instruct and to delight' ; ରୋମାନ୍ ସମୀକ୍ଷକ କୁଇଁଲିଅନ୍ (Marcus Fabius Quintilianus) ତାଙ୍କ ଦୃଷ୍ଟି ଆଙ୍ଗିକ ଉପରେ କରିଥିଲେ କେନ୍ଦ୍ରିଭୂତ। ଆଙ୍ଗିକର ବ୍ୟବସ୍ଥାରେ ସ୍ୱଚ୍ଛତା ହିଁ ଅଟେ ସୃଷ୍ଟିଟିର ଚେତନା। ହୃଦୟ ଓ ମସ୍ତିଷ୍କ, ଦୁହିଁଙ୍କ ପ୍ରତି ଆବେଦନ ସୃଷ୍ଟି କରିବ ଆଙ୍ଗିକ। ସେ ହିଁ ସର୍ବପ୍ରଥମ ଦାବି କରିଥିଲେ, 'the writing of prose is an art' । ମାନସିକ ସମୃଦ୍ଧି ସୌନ୍ଦର୍ଯ୍ୟ ଦ୍ୱାରା ହୁଏ ନାହିଁ ଦୁର୍ବଳ। ବରଂ ସୌନ୍ଦର୍ଯ୍ୟ କଳାର ସହଚର। ଶବ୍ଦର ଅଦଳବଦଳରେ ଶୈଳୀର ସୁଷମା ହୋଇଥାଏ ଆହତ ଓ ଆଘାତ ପ୍ରାପ୍ତ। ଭାବନା ସହ ଭାଷାର ସଂପର୍କ ଏକ ଅପରିହାର୍ଯ୍ୟ ପ୍ରଶ୍ନ।

କାରଣ ସହିତ ଅଂଶ ଗ୍ରହଣ କରି ବା ସହଯୋଗ କରି ସୁନ୍ଦର ହୁଏ ଶରୀର। କାରଣ ଯାହା ସର୍ବୋତ୍ତମ (Divine) ଙ୍କ ଠାରୁ ହୋଇଥାଏ ପ୍ରବାହିତ। ପ୍ଲୋଟିନସ୍‌ଙ୍କ ଏହି ତତ୍ତ୍ୱକୁ ସମର୍ଥନ କରି ଲଙ୍ଗିନସ୍ ଉଚ୍ଚାରିତ କରିଥିଲେ 'the greatest writers are above what is mortal' । ଗୋଟିଏ କୃତିତ୍ୱ ବା ଲେଖାର ଲକ୍ଷ୍ୟ ପାଠକକୁ କୌଣସି (ଧର୍ମ) ଦିଗକୁ ମନାଇବା ନୁହେଁ, ଉଲ୍ଲାସ ପ୍ରଦାନ କରିବା ଓ ଆତ୍ମହରା କରିଦେବା ବୋଲି ଉଲ୍ଲେଖ କରିଛନ୍ତି ସେହି ଲଙ୍ଗିନସ୍ (De sublimitate,8,4) । ପୂର୍ବରୁ ଗୋଟିଏ ରଚନାର ଆଭିମୂଖ୍ୟ 'to instruct and to delight' ବୋଲି ହୋଇଛି ସୂଚିତ।

ଲଙ୍ଗିନସ୍ ଯୁକ୍ତି ଦିଗକୁ ନଯାଇ ଗମନ କରିଥିଲେ କଳ୍ପନା ଦିଗକୁ। କିନ୍ତୁ ଥୋମାସ ଡି କ୍ୱିନ୍‌ସି (De Quincey, Thomas) ଲିଟିରେଚର୍ ଅଫ୍ ନଲେଜ୍ ଦିଗକୁ ଗତି କରି ଦର୍ଶାଇ ଥିଲେ ଏହାର ପ୍ରଥମ କାର୍ଯ୍ୟ 'To teach'। ନୂତନତ୍ୱ ପ୍ରକଟନ ପ୍ରତି ସମକାଳୀନ ମାନବ ଜାତିର ଆଗ୍ରହ, ଆସକ୍ତି ଓ ଆବେଦନ ବେଶୀ। ତେଣୁ ସିଏ ପ୍ରଭାବିତ କଳାଭଳି ଶବ୍ଦ ବାଛିବା, ଶୈଳୀର ଅଳଙ୍କାର, ଶାନ୍ତ ଏବଂ ଗମ୍ଭୀର ରଚନା ପ୍ରକ୍ରିୟା ପ୍ରତି କରିଛନ୍ତି ନିର୍ଦ୍ଦେଶ। କଳା ଏକ ବାହ୍ୟ ବିନ୍ଦୁ ନୁହେଁ, ଏହା ସ୍ୱୟଂ ପ୍ରକୃତି ବା ତାହା ଲେଖକଙ୍କ ନିଜ ପ୍ରକୃତି, ରଙ୍ଗ ଓ ଶବ୍ଦରେ ହୋଇଥାନ୍ତି ରୂପାୟିତ ମୂର୍ତ୍ତି। ଏକ ଅଦୃଶ୍ୟ ତୃଷା ତୃଷିତ ବ୍ୟକ୍ତିର ପାଗଳାମୀ ତାହା, ପଦମାନଙ୍କରୁ ପ୍ରବାହିତ ହୋଇ ଆସିଥାଏ ସୃଜନଶୀଳ କର୍ମ କରିବାକୁ ସଂପାଦନ।

'ଇଲିଆଡ' ଓ 'ଓଡେସୀ'ର କଳ୍ପନା ନାଟ୍ୟକୀୟ ଉଦ୍ଦେଶ୍ୟ, ଆକ୍ରନ, ବେଗ ଓ ଉତ୍ତେଜନାକୁ ଅମାନ୍ୟ କରି ଲଙ୍ଗିନସ୍ ହିଁ ତାହାକୁ ତିରୋହିତ କରାଇ, ବାସ୍ତବବାଦୀ ନିଛକ ଜୀବନ ଓ ବ୍ୟବହାରର ଛବି, ତାହା ବଦଳରେ ଆଣିଥିଲେ ପାଠକଙ୍କ ପାଖକୁ। ସେ ହିଁ ବହୁ ପ୍ରଶ୍ନ ଓ ଦନ୍ଦ୍ୱ ସମସ୍ୟାର ହୋଇଥିଲେ ସମ୍ମୁଖୀନ। କ୍ଲାସିକାଲ୍ ରେନେସାଁର ଏହି ମହାନ ସମୀକ୍ଷକଙ୍କ ପାଖରେ ଥିଲା କେବଳ ଗୋଟିଏ ଉତ୍ତର 'Popular taste' ତାଙ୍କର ଦରକାର। ଲେଖାଟି ପ୍ରିୟ ଲାଗିବ। ଲେଖାଟିରୁ ପ୍ରିୟ ସ୍ୱାଦ ମିଳିବ। ସାହିତ୍ୟ କେମିତି ଲେଖିବାକୁ ହେବ, ଲେଖିଛନ୍ତି ଗ୍ରୀକ୍ ପଣ୍ଡିତ ହୋରାସ୍ (Quintus Horatius Flaceus), 'Avoid the excesses on insensate excitemet...' Restraint is the first lesson of writing. Avoid 'sterile abundance'. Nothing too much. Let every thing be in its place and the begining and end respond to the middle !' ଅଧିକ ମାତ୍ରାର ସ୍ପର୍ଶାନୁଭୂତି ଶୂନ୍ୟ ଉଦ୍ଦୀପନା ବା ମାନସିକ ଉତ୍ତେଜନା ରଚନାକୁ ନ କରୁ ଭାରାକ୍ରାନ୍ତ। ରଚନାର ପ୍ରଥମ ପାଠ ହେଲା ସଂଯମ ରକ୍ଷା। ଶବ୍ଦ ଖର୍ଚ୍ଚରେ ସ୍ରଷ୍ଟା ନ ହେବେ ଅପଖର୍ଚ୍ଚୀ । ତ୍ୟାଗ କରିବେ ବନ୍ଧ୍ୟା ପ୍ରାଚୁର୍ଯ୍ୟ । ଅଧିକ ନୁହେଁ କିଛି । ପ୍ରତ୍ୟେକ ଜିନିଷ ତାର ସ୍ଥାନରେ ଥିବ ଯଥାଯଥ । ଆରମ୍ଭ ଓ ଶେଷ ମଝିରେ ଥିବା ସୃଷ୍ଟି ଆଙ୍ଗିକ ହୋଇଥିବ ଆରମ୍ଭ ଓ ଶେଷର ଅନୁରୂପ ।

ସମକାଳୀନ ଶବ୍ଦାବୟବରେ ଦେଖାଯାଉଛି ଆରମ୍ଭ ସୁନ୍ଦର, ବଳିଷ୍ଠ, ଓ ଶେଷରେ ପରିଣତି ମର୍ମସ୍ପର୍ଶୀ, କିନ୍ତୁ ସୃଷ୍ଟିଟିର ମଝି ଅଧ୍ୟାୟ ଦୁର୍ବଳ ନିହାତି । କେଉଁଠି ଶେଷଭାଗ ଆଙ୍ଗିକ ଓ ଆତ୍ମିକ ଉଭୟ ଦିଗରୁ ହୋଇଛି ବିପର୍ଯ୍ୟୟଗ୍ରସ୍ତ । ବାକ୍ ସଂଯମ ଶୂନ୍ୟ ବନ୍ଧ୍ୟା ପ୍ରାଚୁର୍ଯ୍ୟର ପ୍ରାଦୁର୍ଭାବ ଘଟିଛି ଅନେକ । କଳାର ନୀତି ହରାଇଛି ତାର ସତୀତ୍ୱ । ଏହିଭଳି ଏକ ଭୂମିରେ ସ୍ରଷ୍ଟାଙ୍କ ପ୍ରଶଂସା ଦାବି କେତେ ଉଚିତ ?



# ଆନ୍ତର୍ଜାତିକ ସାହିତ୍ୟ ଓ ଆନ୍ତର୍ଜାତିକ ସିନେମାର ବ୍ୟକ୍ତିତ୍ୱ

ଦୁଇହଜାର ପାଞ୍ଚ ମସିହା ଦଶହରା ବେଳକୁ ଆନ୍ତର୍ଜାତିକ ପ୍ରକାଶନ ସଂସ୍ଥା 'ଲିଟିଲ୍ ବ୍ରାଉନ୍' ଆନ୍ତର୍ଜାତିକ ବହି ବଜାରକୁ ଛାଡ଼ିଥିଲେ ଖଣ୍ଡିଏ ବହି 'Two lives',ଏହାର ପୃଷ୍ଠା ସଂଖ୍ୟାଥିଲା ପାଞ୍ଚଶହ ତିନି, ମୂଲ୍ୟଥିଲା କୋଡ଼ିଏ ଡଲାର୍। ସେହି ବହିକୁ ଭାରତୀୟ ବଜାରକୁ ଛାଡିଥିଲେ 'ପେଙ୍ଗୁଇନ୍', ପୃଷ୍ଠା ରଖିଥିଲେ ପାଞ୍ଚଶହ ବାର, ମୂଲ୍ୟଥିଲା ଛଶହ ପଞ୍ଚାନବେ ଟଙ୍କା। ଏହାକୁ  ରଚନା କରିଥିଲେ ପ୍ରସିଦ୍ଧ ଭାରତୀୟ ଲେଖକ ବିକ୍ରମ ସେଠ୍। ଏହା ଏକ ଜୀବନୀ ଓ ସ୍ମୃତି।

ଶାନ୍ତି ଅଙ୍କଲ୍ ଓ ହିନୀ ଆଣ୍ଟିଙ୍କ ଜୀବନ ବଂଚିବା ଦୃଷ୍ଟି ତମାମ ବହିରେ ବର୍ଣ୍ଣିତ ହୋଇଛି। ଲଣ୍ଡନ, ୧୮କୁଇନ୍ସ ରୋଡରେ ଷାଠିଏ ବର୍ଷ ବୟସ୍କ ଅଙ୍କଲ ଓ ଆଣ୍ଟି ରୁହନ୍ତି। ସତର ବର୍ଷ ବୟସ୍କ ଲେଖକ 'ଟନ୍‌ବ୍ରିଜ' ବ୍ରିଟିଶ ସ୍କୁଲରେ ପାଠ ପଢ଼ିବାକୁ ଯାଇ ସେଠାରେ ପହଞ୍ଚିଛନ୍ତି। ଶାନ୍ତି ଅଙ୍କଲ ଓ ହିନୀ ଆଣ୍ଟିଙ୍କୁ ଔପନ୍ୟାସିକ ହଠାତ୍ ଦିନେ ବିଶ୍ୱ ପ୍ରସିଦ୍ଧ କରି ଦେଇଛନ୍ତି ପ୍ରକାଶିତ କରି 'Two lives'। ସେହି ଦୁଇ ପ୍ରାଣୀଙ୍କ ପ୍ରତି ଏହା ଥିଲା ବିକ୍ରମ ସେଠ୍‌ଙ୍କ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି (tributes)।

ସେହିଭଳି ଖଣ୍ଡିଏ ଶ୍ରଦ୍ଧାଞ୍ଜଳି ପୁସ୍ତକ ଚଳିତ ବର୍ଷ ଦଶହରା ବେଳକୁ ଆନ୍ତର୍ଜାତିକ ମାର୍କେଟକୁ ଛାଡ଼ିଛନ୍ତି କେଣ୍ଟୁକୀ ୟୁନିଭର୍ସିଟୀ (University of Kentucky)।ଏହାକୁ ରଚନା କରିଛନ୍ତି ଲୋଏରା ୟୁନିଭର୍ସିଟୀର ଫିଲ୍ମ ହିଷ୍ଟ୍ରୀ ଓ ମଡର୍ଣ୍ଣ ଲିଟିରେଚର ପଢ଼ାଉଥିବା ଅଧ୍ୟାପକ ଜେନ୍.ଡି.ଫିଲିପ୍ସ। ବହିଟିର ଶୀର୍ଷକ 'Beyond the epic: The life & films of David Lean'। ଡାଭିଡ ଲିନ୍, ଯିଏ କି ନିଜକୁ କହୁଥିଲେ ଜଣେ 'Auteur'। 'Auteur' ଗୋଟିଏ ଫରାସୀ ଶବ୍ଦ, ମୂଳ ଲାଟିନ୍‌ରୁ ଆନୀତ ଏହି ଶବ୍ଦର ଇଂରାଜୀ ଭାବ ବା ଅର୍ଥ 'Author'।

'Jonathan Yardly' ଲେଖିଛନ୍ତି, 'The auteur, it is commonly assumed, is a director'...। ଚଳଚ୍ଚିତ୍ର ନିର୍ଦ୍ଦେଶକଙ୍କୁ ମଧ୍ୟ କୁହାଯାଏ 'auteur' ବା ସ୍ରଷ୍ଟା। ସିନେମାର ଇତିହାସରେ  Jean-Luc Godard, Michelangelo Antonioni, John Cassavetys ଓ Zbig Rebczynski ପ୍ରଭୃତି ପ୍ରସିଦ୍ଧ (auteur) ସ୍ରଷ୍ଟାମାନଙ୍କର କୃତିତ୍ୱର ରହିଛି ଉଲ୍ଲେଖ। କେଭିନ୍ ବ୍ରାଉନଲୋ ୧୯୯୬ରେ ରଚନା

କରିଛନ୍ତି 'ଡ଼ାଭିଡ୍ ଲିନ୍'ସୁସଙ୍ଗତ ଭାବେ ଲିନ୍‌ଙ୍କ ଅନ୍ୟ ଖଣ୍ଡିଏ ଜୀବନୀ। ତହିଁରେ ଲିନ୍ କହିଛନ୍ତି, 'I am really still an editor at heart' ଏବଂ editor ବା ସଂପାଦକଙ୍କ ଭୂମିକା ସମ୍ବନ୍ଧରେ ତାଙ୍କ ବକ୍ତବ୍ୟ ଥିଲା- 'Part of what makes a great editor is what you take out, not just what you leave in'।

ସିଏ ପ୍ରସିଦ୍ଧ ନୋବେଲ ବିଜେତା ନାଟ୍ୟକାର ବର୍ଣ୍ଣାଡଶଙ୍କ 'ମାଇଁ ଫେୟାର୍‌ଲେଡି', ଚଳଚିତ୍ର ଓ 'Pygmalion' (୧୯୩୮) ଚଳଚିତ୍ରଟିର କରିଥିଲେ ସଂପାଦନା। ଲିନ୍‌ଙ୍କ ନିର୍ଦ୍ଦେଶିତ ବିଶ୍ୱବିଖ୍ୟାତ ଚଳଚିତ୍ର, ୧-Doctor Zhivago, ୨-Lawrence of Arabia, ୩-The Bridge on the River Kwai, ୪-Ryan's Daughter ୫-A Pasage to India ପ୍ରଭୃତି। 'ଦି ବ୍ରିଜ୍ ଅନ୍ ଦି ରିଭର୍ କାଇ' (୧୯୫୭) ଏକ ବୃହତ୍ତମ ଯୁଦ୍ଧ ସିନେମା। ଏଥିରେ ଯୁଦ୍ଧ ବିରୋଧି ଦୃଷ୍ଟି ଶକ୍ତ ଭାବେ ପ୍ରତିଫଳିତ। ମରୁଭୂମିର ଦୀର୍ଘତମ କାବ୍ୟ; ଅନ୍ତରଙ୍ଗତା, ରୋମହର୍ଷଣ ଓ ଅତ୍ୟଧିକ ପ୍ରଶଂସାପୂର୍ଣ୍ଣ ଛବି ତାଙ୍କ 'ଲରେନ୍‌ସ ଅଫ୍ ଆରବିୟା'। ଉଇଲିୟମ ହୋଲ୍‌ଡ଼େନ୍‌ଙ୍କ ପ୍ରଣୟ ବିଂଶଶତକ ହଲିଉଡ୍ ଇତିହାସକୁ କରିଛି ପ୍ରଭାବିତ; ଯାହାକୁ 'କାଇ'ରେ ସିଏ କରିଥିଲେ ଦୃଶ୍ୟ। ଜୀବନ ଓ କୃତିତ୍ୱ ଉର୍ଦ୍ଧ୍ୱରେ ଲିନ୍ ଥିଲେ ଜଣେ ଉଜ୍ଜ୍ୱଳ ମଣିଷ। ତାଙ୍କ ପାଇଁ ବ୍ୟବହୃତ auteur ଫରାସୀ ଶବ୍ଦଟିରୁ ଅନୁମିତ ହୁଏ ତାଙ୍କ ବ୍ୟକ୍ତିତ୍ୱ। ସିନେମାର ସବୁ ଇତିହାସ ଛାତ୍ର ତାଙ୍କ ଜୀବନୀ ସହିତ ପରିଚିତ।

ଡାଭିଡ ଲିନ୍ ଜଣେ ମାମୁଲି ମଣିଷ। ଜୀବନର ଚାପରେ ସିଏ ଥିଏଟର ସହିତ ହୁଅନ୍ତି ସଂପୃକ୍ତ। ତାଙ୍କୁ ଏକ ଆଶାଶୂନ୍ୟ ଘଟଣା ଭାବି ଘରୁ ତଡି ଦେଇଥିଲେ ତାଙ୍କ ବାପା। ସେହି ଅଦରକାର ଯୁବକ ଥିଏଟରରୁ ୧୯୩୦ ମସିହାରେ ଆସିଥିଲେ ଫିଲ୍ମ ଇଣ୍ଡଷ୍ଟ୍ରିଜକୁ ଏବଂ ଅତିଶୀଘ୍ର ବାଛି ନେଇଥିଲେ ସେଠାରେ ନିଜ ସ୍ଥାନ। ବ୍ରିଟିଶ ଫିଲ୍ମ ଇଣ୍ଡଷ୍ଟ୍ରିଜରୁ ମୁକୁଳିତ ତାଙ୍କ ଜୀବନର କଢ଼ ଆଜି ବିଶ୍ୱସାହିତ୍ୟର ବିପଣୀରେ ହେଉଛି ଏକାଧିକ ଲେଖକଙ୍କ ଦ୍ୱାରା ବିପଣନ।

ତା' ନହେଲେ ତାହା କ'ଣ ନଥିଲା ଧୂସରିତ ଏକ ଅପାଂକ୍ତେୟ ମାମୁଲି ଜୀବନ ?

ଆମ ସାରସ୍ୱତ ସଂସାରର ଐତିହାସିକ ମୁହୂର୍ତ୍ତମାନଙ୍କର ଜଣେ ମହାପୁରୁଷ ଭି.ଏସ୍.ନାଇପାଲ। ସେ ପ୍ରସିଦ୍ଧ ଫ୍ରିଲେନ୍‌ସ ଲେଖକ Rachel Donadio ଙ୍କୁ ଏକ ସାକ୍ଷାତକାରରେ କହିଥିଲେ ଉପନ୍ୟାସ ଆଙ୍ଗିକ ବାଧ୍ୟ କରେ ସ୍ରଷ୍ଟାକୁ କେତେକ ନିର୍ଦ୍ଦିଷ୍ଟ ବସ୍ତୁ ଓ ନାଟ୍ୟକୀୟତାକୁ ଏକ ନିର୍ଦ୍ଦିଷ୍ଟ ଭାବେ ପ୍ରକାଶ କରିବାକୁ। କିନ୍ତୁ ନନ୍‌ଫିକ୍ସନ ବିଶ୍ୱରେ ଘଟାଇ ପାରେ ବିସ୍ଫୋରଣ। ଗୋଟିଏ ର୍‌ୟାପ୍ ଗ୍ରୁପର ସଭ୍ୟା ଅଭିନେତ୍ରୀ

Karrine Steffans ଗତ ବର୍ଷ ନିୟୁର୍କରେ ଘଟାଇଛନ୍ତି ବିସ୍ଫୋରଣ ଲେଖି 'Confessions of a Video Vixen' ଶୀର୍ଷକ ନିଜ ଅନୁଭୂତି । ନିଜ ସହିତ ଅନ୍ତରଙ୍ଗ ଭାବେ ସଂପର୍କିତ ମଣିଷମାନଙ୍କୁ ସିଏ ନିଜ ବହିରେ ଚିହ୍ନାଇ ଦେଇଛନ୍ତି । ତାଙ୍କ ଦେହ ସହ ସୁଖଖେଳ ଖେଳିଥିବା କେତେକ ଚଳଚିତ୍ର ତାରକାଙ୍କ ଭଦ୍ରମୁଖା ସିଏ କାଢ଼ି ଦେଇଛନ୍ତି । ବିଶିଷ୍ଟ ଆମେରିକୀୟ ଗାୟକ ବବି ବ୍ରାଉନ କହନ୍ତି, ବହିଟି "ଏ କଂପ୍ଲିଟ ଫାବ୍ରିକେସନ୍", ସଂପୂର୍ଣ୍ଣ ମିଥ୍ୟା । ବହିଟି ଗୋଟିଏ ତାଲିକା ଜଣେ ର୍ୟାପ୍ ତାରକା ସହିତ ଚଗଲା ଆଚରଣ କରିଥିବା ଯୌନ-ଦୁଃଖି କେତେକ ପ୍ରତିଭାବାନ ଶିଳ୍ପୀଙ୍କ । କାରୀନ୍ ପ୍ରଥମ ଆମେରିକୀୟ ଗର୍ବିଣୀ ମହିଳା ଯିଏ ନିଜ ପୁସ୍ତକରେ ଗୀତ ଓ ବାଦ୍ୟ ସଂଗୀତର ଶିଳ୍ପୀଙ୍କୁ ମୃଦୁ ଆଘାତ ଦେଇଛନ୍ତି ଘଟଣା କରି ସେମାନଙ୍କ ଗୋପନୀୟ ଜୀବନ୍ତ ଲାଳସା ।

ଅଭିନେତ୍ରୀମାନଙ୍କ ଜୀବନ ସ୍ଖଳିତ ଓ ଅନୈତିକ ଲୋକେ ଜାଣିଥିଲେ, ମାତ୍ର କେତେ ସ୍ଖଳିତ ଓ କେତେ ଅନୈତିକ ତାହା ଜଣେ ଅଭିନେତ୍ରୀ ମୁହଁରୁ ଶୁଣିଗଲେ ଏଇ ବହିଟିରେ । ଅଭିନେତା ଓ ଅଭିନେତ୍ରୀଙ୍କ ଯୌନଦୂଷିତ ଜୀବନର ସତ୍ୟଚିତ୍ର Karrineଙ୍କ କଲମରେ ଆମେରିକାରେ ସର୍ବପ୍ରଥମେ ନେଇଛି ସାହସ୍ୱିତ ରୂପ । ତାଙ୍କ ପୂର୍ବରୁ କେହି ଯୌନନିର୍ଯ୍ୟାତିତା ଅଭିନେତ୍ରୀ ହୋଇ ନାହାଁନ୍ତି ଲେଖିକା । ସିନେମାରେ ଆମେରିକାନ୍‌ମାନଙ୍କ ସ୍ୱପ୍ନକୁ କ୍ରୟ କରି ନେଇଥିବା ଅନ୍ୟଜଣେ ସିଂହ Louis B.Mayer ! ତାଙ୍କ କାହାଣୀ 'Lion of Hollywood' । ଗୋଟିଏ ପ୍ରସିଦ୍ଧ ସିନେମା ସିଏ ତିଆରି କରିଥିଲେ 'The Wizard of Oz' ଏବଂ 'A Night at the Opera' ଭଳି ପ୍ରସିଦ୍ଧ ଚଳଚିତ୍ର ମଧ୍ୟ । ୧୮୮୪ ଜୁଲାଇ ୧୨ରେ ୟୁକ୍ରାନିଆନ୍ ସହରରେ ଜନ୍ମିତ ଅସଂଖ୍ୟ ଭୋକିଲା ମଣିଷଙ୍କ ମଧ୍ୟରେ ସିଏ ଜଣେ ନିଆରା ଲୋକ । 'ଦି ବାର୍ଥ ଅଫ୍ ଏ ନେସନ୍' ର ଟିକେଟ୍ ପାଇଁ ବନ୍ଧକ ଦେଇ ଦେଇଥିଲେ ପତ୍ନୀଙ୍କ ନିର୍ବନ୍ଧ ମୁଦି । ଏତେ ଅଭାବ ଭିତରୁ ଶିଖାଟିଏ ପରି ଉର୍ଦ୍ଧ୍ୱାୟିତ ହୋଇଥିବା ବ୍ୟକ୍ତିତ୍ୱଙ୍କୁ Scott Eyman ଦେଇଛନ୍ତି ଶ୍ରଦ୍ଧାଞ୍ଜଳି । 'ଲାଏନ୍‌ସ ଅଫ୍ ହଲିଉଡ୍: ଦି ଲାଇଫ୍ ଏଣ୍ଡ ଲିଜେଣ୍ଡ ଅଫ୍ ଲୁଇସ୍ ବି.ମେୟର' ସ୍କଟଙ୍କ ରଚିତ ବହିଟିର ଶୀର୍ଷକ । ଏହାକୁ ପ୍ରକାଶ କରିଛନ୍ତି 'ସିମନ୍ ଏଣ୍ଡ ସୁଷ୍ଟେର୍" ଆନ୍ତର୍ଜାତିକ ପ୍ରକାଶକ । ପାଞ୍ଚଶତ ଛୟାନବେ ପୃଷ୍ଠାର ବହିଟିର ମୂଲ୍ୟ ରହିଛି ପଇଁତ୍ରିଶ ୟୁରୋ ।

ମଂଚ ଓ ପରଦା ଅଭିନେତା ଲରେନ୍ସ ଅଲିଭରଙ୍କ ଏକ ସ୍ୱୀକୃତ ଜୀବନୀ ଗତବର୍ଷ ପ୍ରକାଶ କରିଛନ୍ତି 'ବ୍ଲୁମ୍‌ସବରୀ' । ଏହାକୁ ରଚନା କରିଛନ୍ତି Terry Colman । ବହିଟିର ଶୀର୍ଷକ Oliver: The Authorised Biography, ଛଅଶହ ସାତ ପୃଷ୍ଠାର

ଏହି ବହିଟିର ମୂଲ୍ୟ କୋଡ଼ିଏ ପାଉଣ୍ଡ ରଖା ଯାଇଛି। ୧୯୪୪ ବେଳକୁ ମଞ୍ଚରେ ବୃତ୍ତିଗତ ସ୍ଥିତି ଦୃଢ଼କରି ନେଇଥିବା ବ୍ୟକ୍ତି ଅଲିଭର। ଜିଲ୍ଲ ଇସ୍‌ମଣ୍ଡ ତାଙ୍କ ପତ୍ନୀ। ଅତୃପ୍ତ ଯୌନଜୀବନ ହେତୁ ଦୁହେଁ ପରସ୍ପରଠୁ ହୋଇଥିଲେ ବିଚ୍ୟୁତ। ଅଭିନେତ୍ରୀ ଭିଭିଏନ୍ ଲାଇ ଅଭିନୟ କରୁକରୁ ହୋଇଥିଲେ ତାଙ୍କର ନିକଟତମ। ୧.Gone with the wind, ୨-A street Car Named Desire,୩-Elephant walk ପ୍ରଭୃତି କ୍ଲାସିକ୍ ସିନେମାରେ ଦୁହେଁ ଅଭିନୟ କରୁ କରୁ କରିଥିଲେ ପ୍ରକୃତ ରୋମାନ୍ସ। ଦେହ ସହିତ ଦେହ ରଚିଥିଲା ସୁଖସଂପର୍କ। ସେକ୍ସପିୟରଙ୍କ ମ୍ୟାକ୍‌ବେଥ୍, ହାମ୍‌ଲେଟ୍ ଓ ଓଥେଲୋ ଭଳି ପ୍ରସିଦ୍ଧ ନାଟକ ମାନଙ୍କରେ ତାଙ୍କର ଅଭିନୟ ଥିଲା ତୃପ୍ତିପୂର୍ଣ୍ଣ। ବୃତ୍ତିଗତ ଅସନ୍ତୋଷ ଓ ଯୌନସଂପର୍କ ଅସଫଳ ଇଚ୍ଛା ତାଙ୍କୁ କରିଥିଲା କଳଙ୍କିତ ଓ ଦୋଷଯୁକ୍ତ। ସଂସାରର ସବୁ ଅଭିନେତା ଜଣେ ଜଣେ ଅତୃପ୍ତ ମଣିଷ ଓ ଜଣେଜଣେ କଳଙ୍କିତ ନାୟକ। ଅଲିଭର ତହିଁରୁ କେମିତି ବା ହେବେ ବିଚ୍ୟୁତ? ଅନ୍ୟଙ୍କୁ ସୁଖ ବିତରିତ କରୁକରୁ ଆଖି ବୁଜି ଦେଇଥାଏ ସେହି ଜଳନ୍ତା ଚରିତ୍ର। ତାହା ପାଇଁ ଆହାଟିଏ କରିଛନ୍ତି Colman, ତାଙ୍କ ଜୀବନୀ ଲେଖକ।

ଭେନିସ୍ ଓ ଟରେଣ୍ଟୋ ମଝିରେ ଆୟୋଜିତ ହୋଇଥିଲା ଏକତ୍ରିଂଶତମ The Deauville Festival of American Cinema ଗତବର୍ଷ। ଏହି ଉତ୍ସବର ଉଦ୍ଦେଶ୍ୟ ହଲିଉଡ୍ ବ୍ୟକ୍ତିତ୍ୱ କେତେକଙ୍କ ପାଇଁ ଶ୍ରଦ୍ଧାଞ୍ଜଳି ସମର୍ପଣ। ଦୁଇ ହଜାର ପାଞ୍ଚ ବର୍ଷରେ ଅଳ୍ପ ପରିବର୍ତ୍ତିତ ହୋଇଥିଲା ସେମାନଙ୍କ ଉଦ୍ଦେଶ୍ୟ।

ସେମାନେ ବାଛିଥିଲେ ଜଣେ ଔପନ୍ୟାସିକ Budd Schulberg ଙ୍କୁ କରିବାକୁ ସମ୍ବର୍ଦ୍ଧିତ। ୧୯୧୪ ଜନ୍ମିତ ଏହି ମହାନ ସ୍ରଷ୍ଟାଙ୍କ ଉପନ୍ୟାସ ‘Sanctuary’ ଯାହା ୧୯୬୯ରେ ହୋଇଥିଲା ପ୍ରକାଶିତ, ସେହି ବହି ପାଇଁ ତାଙ୍କୁ କରାଗଲା ଅଭିନନ୍ଦିତ। ଅବଶ୍ୟ ୧୯୫୪ରେ ପ୍ରକାଶିତ ତାଙ୍କ ଉପନ୍ୟାସ ‘On the water front’ହୋଇଛି ଚଳଚ୍ଚିତ୍ର। ଡାର୍ଟମାଉଥ୍ ଠାରେ ସୁଲବର୍ଗ ସପ୍ତାହାନ୍ତ ବିତାଇଥିଲେ ଥରେ ପ୍ରସିଦ୍ଧ ଔପନ୍ୟାସିକ F.Scott Fitzgerald ଙ୍କ ସହିତ ଏବଂ ତାଙ୍କ ସହ ସିଏ ଥିଲେ ଯୁଗ୍ମ ଲେଖକ ‘The Disenchanted’ ନାଟକଟିର, ଯାହା ଉଇଣ୍ଟର କାର୍ଣ୍ଣିଭାଲ୍‌ରେ ହୋଇଥିଲା ପ୍ରଦର୍ଶିତ।

ଫିଟ୍‌ଜେରାଲଡଙ୍କ ସ୍ମୃତି ଚାରଣ କରି ସୁଲବର୍ଗ କହନ୍ତି, ସେତେବେଳେ କେହି ବିଶ୍ୱାସ କରି ନଥିଲେ ଫିଟ୍‌ଜେରାଲ୍‌ଡଙ୍କ ବହି ନିୟୁତ ନିୟୁତ ହୋଇ ହେବ ବିକ୍ରୀ। ଯେତେବେଳେ ସୁଲବର୍ଗଙ୍କ ବୟସ କୋଡ଼ିଏ ସିଏ ଯାଇଥିଲେ ମସ୍କୋ। ୧୯୩୪

ରାଇଟର୍ସ କନ୍‌ଫରେନ୍‌ସରେ ଯୋଗ ଦେଇ ସିଏ ଭେଟିଥିଲେ Isaac Babel ଓ Maxim Gorky ଙ୍କୁ। ହୋଇଥିଲେ ପାର୍ଟି ସଭ୍ୟ।

ସାହିତ୍ୟ ଓ ସିନେମା ପରସ୍ପର ସଂପର୍କିତ। ସାହିତ୍ୟ ଏକ ବୃକ୍ଷ ହେଲେ, ଏହାର ବିଚ୍ୟୁତ ଗୋଟିଏ ଶାଖାର ପ୍ରସ୍ଫୁଟିତ ପୁଷ୍ପ ଚଳଚ୍ଚିତ୍ର। ଆନ୍ତର୍ଜାତିକ ସାହିତ୍ୟଶିଳ୍ପ ଯେତିକି ବ୍ୟାପକ ଚଳଚିତ୍ରଶିଳ୍ପ ତାହାଠାରୁ କମ୍ ପରିବ୍ୟାପ୍ତ। ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହି ଶୃଙ୍ଖଳାର ଘଟିଛି ବିପରୀତ। ଓଡ଼ିଆ ଭାଷାର ଶ୍ରେଷ୍ଠ ଉପନ୍ୟାସ "ମଲାଜହ୍ନ", ଅମଡ଼ାବାଟ", "କା" ଓ "ବଧୂନିରୁପମା" ପ୍ରକୃତି ହୋଇଛି ଚଳଚିତ୍ର। କିନ୍ତୁ ଚଳଚ୍ଚିତ୍ର ଗୁଡ଼ିକ ହୋଇନାହିଁ ବହିପରି ଆଦୃତ। ସିନେମାରେ ଦର୍ଶକ ସଂସ୍କୃତି ଖୋଜନ୍ତି ନାହିଁ, ଖୋଜିଥାନ୍ତି ସୁଖ। ଆଖିକୁ ଭଲ ଲାଗିଲାଭଳି ଦୃଶ୍ୟ ଓ ମନକୁ କୁତୁକୁତୁ କଲାଭଳି ଗୀତ ଓ ସଂଳାପ। ପ୍ରଥା ଓ ପରଂପରାର ଧୂଳିଆ ଗୁଳା ଉପରେ କେହି ଆଉ ନିଜ ଇଚ୍ଛାର ମଟର ସାଇକେଲ ଚଲାଇବାକୁ ଚାହେଁନା। ପୁଣି ସବୁ ଗାଁରେ ପ୍ରଧାନମନ୍ତ୍ରୀ ଯୋଜନାର ପକ୍‌କା ରାସ୍ତା ପରି ବଦଳିଚି ମଣିଷ ରୁଚିର କସ୍ତା। ସୂତା ପ୍ରିଣ୍ଟ୍ ଶାଢ଼ୀର ମାର୍କେଟ ପରି ଛବିଳ ତୃଷାରେ ତୃଷିତ ଦୈନନ୍ଦିନର ଦର୍ଶକ। ସୂଚନା ଓ ନୂଆ ଜ୍ଞାନବିଜ୍ଞାନ ସୁଖ ତା'ର ହେଉଛି ଆବଶ୍ୟକ। ସୁଲବର୍ଗ ନିଜ ସ୍ମୃତି ଚାରଣରେ ସେଥିପାଇଁ କହିଛନ୍ତି, I remember every moment, every word, my assignment',କର୍ତ୍ତବ୍ୟ ଓ ଅଙ୍ଗୀକାରବଦ୍ଧତା। ତଦନୁଯାୟୀ ବଦଳିଛି ତାଙ୍କ ଦୃଷ୍ଟି ସୃଷ୍ଟିର ରାସ୍ତା।

Jimmy Mc Donough ଲିଖିତ ଖଣ୍ଡିଏ ପୁସ୍ତକ Big Bosom and Square Jaws: The Biography of Russ Meyer, King of The the sex film' କୁ ମାର୍କେଟିଂ କରିଛନ୍ତି ଆନ୍ତର୍ଜାତିକ କ୍ରାଉନ୍ ପବ୍ଲିଶର। ପାୟୋନିୟର ମହିଳା ଅଭିନେତ୍ରୀ ଭର୍ଜିନିଆ ବେଲ୍, କୁନ୍ ଉଇଲ୍‌କିନ୍‌ସନ୍ ଓ ହାଯି ପ୍ରଭୃତି ଅତ୍ୟଧିକ ହାଇହିଲ୍ ଯୁବତୀ, ପଞ୍ଚାବନ ଇଞ୍ଚ ଚୌଡ଼ା ଛାତି ସେରୀ ନାଇଟ୍ ଓ ଉସ୍କି ଡିଗାର୍ଡଙ୍କ ଭଳି ଯୌନ-ରାକ୍ଷସୀଙ୍କ ଗ୍ଲାମୋର ଓ ବୃତ୍ତିର ବର୍ଣ୍ଣନା କରାଯାଇଛି। ଏହାର ମୂଳକଥା Russ Meyer ଙ୍କ ଜୀବନୀ, ଯିଏ ଦୁଇ ହଜାର ଚାରିରେ ବୟାଅଶୀ ବର୍ଷ ବୟସରେ ହଲିଉଡ୍ ହିଲ୍‌ରେ ଦେହତ୍ୟାଗ କରିଛନ୍ତି। ତାଙ୍କ ସହିତ ଲେଖକ ଯିମ୍ମୀ ମ୍ୟାକ୍‌ଡୋନଫ୍ ଗୁଡିଏ ଅବିସ୍ମରଣୀୟ ମୁହୂର୍ତ୍ତ ବିତାଇଛନ୍ତି। Russ Meyer ଙ୍କ ସଫଳତାର ଗୋପନ ସୂତ୍ର ସିଏ ତାଙ୍କଠାରୁ ଶୁଣିଛନ୍ତି। ଥରେ ସିଏ ତାଙ୍କୁ କହିଥିଲେ ତାହାର ସାରାଂଶ, 'ବଡ଼ ବଡ଼ ସ୍ତନ ଓ ଚାରିକୋଣିଆ ପାଟି'। ରୁସ୍ ମେୟର ନିଜ ପ୍ରକାଶିତ ତିନି ଖଣ୍ଡରେ ବିଭକ୍ତ ଏକ ହଜାର ଦୁଇଶହ

ପୃଷ୍ଠାର ଆତ୍ମଜୀବନୀ 'A Clean Breast' ସବୁବେଳେ ପଢ଼ନ୍ତି। ଦୁଇ ହଜାର ମସିହାରେ ପ୍ରକାଶିତ ଏହି ବହିର ମୂଲ୍ୟ ତିନିଶହ ପଚାଶ ଡଲାର।

୧୯୫୮ରେ ରୁସ୍ ତିଆରି କରିଥିଲେ ଗୋଟିଏ କୋଡ଼ିଏ ମିନିଟର ସିନେମା 'The Immoral Mr.Teas'। ଏଥିରେ ଆବିର୍ଭୂତ ହୋଇଥିବା ପ୍ରତ୍ୟେକ ନାରୀଥିଲେ ବସ୍ତ୍ରରହିତ। ଏହାକୁ ପ୍ରଦର୍ଶନ ବେଳେ ଜବତ କଲା ଆମେରିକା San Diego ପୁଲିସ୍ । ୧୯୫୯ରେ ପୁଣି ଏହା ଲସ୍ ଏଞ୍ଜେଲସ୍ ଠାରେ ହେଲା ପ୍ରଦର୍ଶିତ। ଏହା ପରେ ସିନେମାର କ୍ରମଶଃ ବିକାଶ ପଥରେ ଉତ୍ତରି ଆସିଥିଲା ଉଲଗ୍ନଯୁଗ। ସିନେମା ପରଦାରେ ଅଶ୍ଳୀଳ ଯୁଗ। ତାଙ୍କ ତିଆରି 'Faster, Pussycat ! kill ! kill ! ଚମକାଇ ଦେଲା ଦର୍ଶକଙ୍କ ରୁଚି, ତୃଷ୍ଣା ଓ ସ୍ୱଭାବ। ଏହାର ଏକ ବର୍ଷପରେ 'Soap Opera' ଫିଲ୍ମ 'ଗୁଡ୍‌ମର୍ଣ୍ଣିଂ ଏଣ୍ଡ ଗୁଡ୍‌ବାଏ'! ଯୌନ ଉଦ୍ଦୀପକ ଗୁଡ଼ିଏ ଚଳଚ୍ଚିତ୍ର ମାର୍କେଟକୁ ଦେଇ ରୁସ୍ ଭଲ ଆୟ ଓ ସ୍ୱୀକୃତି ଲାଭ କରିଛନ୍ତି। ହାଇୱେ ପାର୍ଶ୍ୱର ଯୌନ ସୁଖଠୁ ତାଙ୍କ ନିତିଦିନିଆ ବକ୍ଷ ମର୍ଦ୍ଦନ ସୂଚନା ଅଧିକ ଅଶ୍ଳୀଳ ଓ ଅଧିକ ସଫଳ ବୋଲି ସିଏ ଦାବୀ କରନ୍ତି।

ରୁସ୍ ମେୟରଙ୍କ ପାରିବାରିକ ଜୀବନ ମଧ୍ୟ ଯୌନ-ବିଶୃଙ୍ଖଳିତ। ତାଙ୍କ ବାପା ଉଇଲିୟମ୍ ଅର୍ଥର ମେୟରଙ୍କୁ ସିଏ କହୁଥିଲେ 'a bastard'। ଅନ୍ୟମାନଙ୍କୁ ଅସୁବିଧାରେ ପକାଇବାକୁ ତାଙ୍କ ମା' ଲିଡିଆ ଲୁସିଣ୍ଡା ଧାରାବାହିକ ନୂଆନୂଆ ପୁରୁଷଙ୍କୁ କରୁଥିଲେ ବିବାହ। ତାଙ୍କ ବାପା ଉଇଲିୟମ ଅର୍ଥର ରୁସ୍‌ଙ୍କ ପୃଥୁଳବକ୍ଷା ଯୁବତୀ-ବନ୍ଧୁମାନଙ୍କୁ କହୁଥିଲେ 'Cows'। ରୁସ୍ ବି ସେମାନଙ୍କୁ ବ୍ୟବହାର କରୁଥିଲେ ଯେମିତି 'door mats'।

ଅର୍ଥ ଓ ସୁଖ ସମୃଦ୍ଧ ଚଳଚ୍ଚିତ୍ର ବ୍ୟକ୍ତିତ୍ୱଙ୍କ ଜୀବନ କିପରି ପାଶବିକ ଓ ଥିଲା ବଣ୍ୟ ତାହା ରୁସ୍‌ଙ୍କ ଜୀବନରୁ ହୁଏ ଅନୁମେୟ। ଏବେ ବି ଆମ ବଲିଉଡ୍ ଓ ଓ଼ଲିଉଡ୍ ବ୍ୟକ୍ତିତ୍ୱଙ୍କ ଜୀବନ ତହିଁରୁ ନୁହେଁ ଭିନ୍ନ। ଆମେ ସେମାନଙ୍କ ସହିତ ଘନିଷ୍ଠ ଭାବେ ନ ମିଶିଥିବା ହେତୁ ସେମାନଙ୍କ ଜୀବନ ପରଦା ପଛର ଦୃଶ୍ୟ ଆମକୁ ବୋଧ ହେଉଛି ସଭ୍ୟ, ସୁସ୍ଥ ଓ ଶ୍ଳୀଳ।



# ଗଦ୍ୟକବିତା

## କବିତା ବଦଳିଚି

କେଉଁ ଆଦି କାଳରୁ ପ୍ରବାହିତ ହୋଇ ଆସିଛି କବିତାର ସ୍ରୋତ। ଛନ୍ଦର ବନ୍ଧ, ଯତିର ନିୟମ ଓ ଅକ୍ଷରର ଶୃଙ୍ଖଳା ଭିତରେ କବିତା ହୋଇଅଛି ଶାସ୍ତ୍ରୀୟ। କବିତା ହୋଇଅଛି ମନ୍ତ୍ର। ଶିଡ଼ିର ଶୃଙ୍ଖଳାରେ ଖଡ୍ଗର ଧାର। ନିୟମର ମେଖଳାରେ ଗଙ୍ଗୋତ୍ରୀର ସ୍ୱର। କବି ଧାର। ଅର୍ଦ୍ଧ-ଈଶ୍ୱର ନୁହନ୍ତି ମାମୁଲି ଶୋଣିତ, ସ୍ନାୟୁ ଓ ମାଂସର ଜୀବ, ଭାବି ଆସିଛନ୍ତି ଅନେକ।

ସାଧାରଣ ସାମାଜିକ ମନୁଷ୍ୟଙ୍କ ଏହି ଭାବନାକୁ ଉନବିଂଶ ଶତକରେ ପରିବର୍ତ୍ତିତ କରିଦେଲେ କବି କେତେଜଣ। ବୋଦ୍ଲେୟାର ଲେଖିଲେ “ପାପର ପୁଷ୍ପ”, ତାଙ୍କ ସହିତ ର୍ୟାମ୍ବୋ, ମାଲାର୍ମେ, ଭାଲେରୀ, ଲାଫର୍ଗ, ଆପୋଲନାଇରି, ଆରାଗଁ ଓ ଆନ୍ଦ୍ରେଁ ବ୍ରେଟୋନ ପ୍ରଭୃତି ଥାକେ ନୂତନ ଲୋକ ବଦଳାଇ ଦେଲେ କବିତାକୁ। କବିତା ମାମୁଲି ସ୍ପାଟିଏ ପରି ବୋଧହେଲା Paul Eluardଙ୍କୁ। ଇଲ୍‌ଶାକୁ ଦର୍ପଣ ଉପରେ ଦେଖି ସର୍‌ରିଆଷ୍ଟ ଆରାଗଁଙ୍କ ଉପଲବ୍ଧି ହେଲା ଜୀବନ ତ କବିତାଟିଏ। କବିତା ଜୀବନଠୁ ଅଲଗା କିଛି ନୁହେଁ। Blaise Cendrars କବିତାରେ ପ୍ରବେଶ କରାଇଲେ ନୂତନ ଗାଣିତିକ ପଏଣ୍ଟ ଓ ଜ୍ୟାମିତିକ ସଂକ୍ଷିପ୍ତ ପଂକ୍ତି। ମୁକ୍ତଛନ୍ଦ, ଗଦ୍ୟ-କବିତା ଓ ବହୁବାଦର ବିବାଦରେ ବିଂଶ ଶତକ ପ୍ରଥମାର୍ଦ୍ଧ ବେଳକୁ କବିତା ମଣିଷପରି ଦିଶିଲା ଅଚିହ୍ନା ଓ ଅବୁଝା। ଅବୁଝାପଣକୁ ସାତ ଭାଗରେ ବିଭକ୍ତ କରି ‘ସେଭେନ୍ ଟାଇପ୍ସ ଅଫ୍ ଆମ୍ବିଗ୍ୟୁଟି’ ରଚନା କରିଦେଲେ ଇଂଲିଶ୍ ପ୍ରାଜ୍ଞ William Empson ।

ସମଗ୍ର ବିଶ୍ୱରେ ରଚିତ ହେଉଥିବା କବିତା ଆଜି ସାମାଜିକ ମଣିଷମାନଙ୍କ ପରି ବଦଳିଚି। ପୁରା ବାବୁ ପାଇଟିଚି। ନୂଆ ବୁନିଆଦିଟିଏ ତିଆରି କରିଛି। ମନ୍ତ୍ର, ରସ, ଧ୍ୱନି, ବକ୍ରୋକ୍ତି ପ୍ରଭୃତି ପାରମ୍ପରିକତା ବଦଳିଛି। ମିଥ୍, ବିଂବ, ପ୍ରତୀକ ଆଦି ଉତ୍ତର-ଆଧୁନିକ କାଳରୁ ଅପସରି ଗଲେଣି। ଗାଈ ଦୁଧପରି ସଫା ଓ ଅମୃତଭଣ୍ଡା ପରି ଏକଦମ୍ ସାଦା କବିତା ରଚନାର ସମୟ ଏଇଟା। ଏଣେ ସୁସ୍ଥ, ସବଳ ଓ ସମୃଦ୍ଧ ଗଦ୍ୟ କବିତାରୁ ତା ଆଙ୍ଗିକରେ ଆହରଣ କରିଛି ସାଙ୍ଗୀତିକତା। ସାଙ୍ଗୀତିକତା ଓ ସଂଳାପ ଏବେ ଅତ୍ୟାଧୁନିକ ଗଦ୍ୟର ଅନ୍ତର୍ବସ୍ତ୍ର। ଏଇ ପରିପ୍ରେକ୍ଷୀରେ ବିଶ୍ୱସାହିତ୍ୟରେ ମୂଳଗଦ୍ୟ-କବିତାର ଆଙ୍ଗିକ ସୃଷ୍ଟି ଓ ଟେକ୍‌ନିକ ଉପରେ ଏଠାରେ କରାଯାଉଛି ଆଲୋକପାତ।

## ଗଦ୍ୟକବିତାର ଉନ୍ମେଷ

ଆଲେକ୍ସ ପ୍ରିମେଂଜର ସଂପାଦିକ 'କବିତା ଓ କବିତାତତ୍ତ୍ୱ' ଏନ୍‌ସାଇକ୍ଲୋପିଡ଼ିଆରେ କୁହାଯାଇଛି Aloysius Bertrand ଙ୍କ ରଚିତ ପୁସ୍ତକ 'Gaspard de la nuit' (୧୮୪୨) ପ୍ରଥମ ଗଦ୍ୟ-କବିତା ପୁସ୍ତକ। ଗଦ୍ୟ-କବିତା (Prose poem) ପଦଟିକୁ ସର୍ବପ୍ରଥମେ ବହୁଳ ଭାବେ ପ୍ରସାରିତ କରିଥିଲେ ବେଦ୍‌ଲେୟାର ୧୮୫୫ ମସିହାରେ ପ୍ରକାଶିତ କରି ତାଙ୍କ ପୁସ୍ତକ Petit poemes en prose'। ତାଙ୍କ ପଛକୁ ୧୮୮୬ରେ ପ୍ରକାଶିତ କଲେ ର୍‌ୟାମ୍ବୋ ନିଜ ପୁସ୍ତକ 'Les Illuminations' । ୧୮୯୭ରେ ପ୍ରକାଶିତ ହେଲା ଷ୍ଟିଫେନ୍ ମାଲାର୍ମେଙ୍କ ପ୍ରେଜ୍-ପୋଏମ୍ ପୁସ୍ତକ 'Divagations' ।

ଭି.କ୍ଲେଟନ ତାଙ୍କ ରଚିତ 'ଦି ପ୍ରୋଜ ପୋଏମ୍‌ସ ଇନ୍ ଫ୍ରେଂଚ ଲିଟିରେଚର ଅଫ୍ ଏଇଟିନ୍‌ଥ ସିଂଚୁରି' ପୁସ୍ତକରେ ଉଲ୍ଲେଖ କରିଛନ୍ତି ଗଦ୍ୟ-କବିତାର ସଂଜ୍ଞା ଓ ସୀମା। ଗୋଟିଏ ଫର୍ଦ୍ଦ ଉପରେ ଗଦ୍ୟ-କବିତାର ସମଗ୍ର ଆଙ୍ଗିକ ନୁହେଁ ଗଦ୍ୟ, ସାଙ୍ଗୀତିକତାରେ ଥାଏ ପୂର୍ଣ୍ଣ। ମୁକ୍ତ ଛନ୍ଦରେ ଧାଡି ଭଙ୍ଗା ଯାଏ କିନ୍ତୁ ଏହାର ଧାଡ଼ି ଯେମିତି ଛୋଟ ଗୋଟିଏ ଗଦ୍ୟାଂଶ (short prose passage) । ଅନ୍ତଚ୍ଛନ୍ଦ ଓ ବୃତ୍ତ ପଂକ୍ତି ଭିତରେ ଛପି ରହିଥାଏ। ଗଦ୍ୟ-କବିତା କଳେବର ଅର୍ଦ୍ଧପୃଷ୍ଠା ମଧ୍ୟରେ ବା ଗୋଟିଏ ବା ଦୁଇଟି ପାରାଗ୍ରାଫ୍ ମଧ୍ୟରେ ରହେ ସୀମିତ। ତାହାଠୁ ଦୀର୍ଘ ହେଲେ ଏହାର ଉଦ୍‌ବେଗ (tensions) ଓ ସଂଘାତ (impact) ହୁଏ ଅଧିକାରଚ୍ୟୁତ।

ବାଇବେଲକୁ ଖଣ୍ଡିଏ ଉପନ୍ୟାସରେ ପରିବର୍ତ୍ତିତ କଲାବେଳେ ଫକ୍‌ନର (Faulkner) ସଜିତ କରିଥିଲେ ଯେଉଁ ଭାଷା ତାକୁ ନାମିତ କରିଥିଲେ Prose poem ବୋଲି ଇଂଲିଶ୍‌ରେ ଏବଂ ଏହାର ଅର୍ଥ Poem in prose ଗଦ୍ୟରେ ତିଆରି କବିତା। ପଦ ସଂଯୋଜନାରେ ଅପରଂପରା ବା ପୃଥକ-ଅବସ୍ଥା (isolations) ରହେ ତିଆରି ବାକ୍ୟରେ ଏବଂ ରୂପକ ପରେ ରୂପକ ଅସୀମତା ରଚେ ଗୁଣାତ୍ମକ ଭାବେ। ର୍‌ୟାମ୍ବୋଙ୍କ 'ଇଲ୍ୟୁମିନେସନ୍‌ସ' ଓ ମାଲାର୍ମେଙ୍କ 'ଡ଼ିଭାଗେସନ୍‌ସ' ପରିବର୍ତ୍ତନର ନୂଆ ରାସ୍ତାଟିଏକୁ କରେ ଉନ୍ମୋଚନ ଯେମିତି ଫ୍ରି ଭର୍ସ, ଷ୍ଟ୍ରୀମ ଅଫ୍ କନ୍‌ସସନେସ୍, ସରରିଆଲିଜିମ୍ ପ୍ରଭୃତି ଜେମ୍‌ସ ଜୟସଙ୍କ କୃତିପ୍ରତି ପଥ ଉନ୍ମୋଚନ କରିଛି। ଜିଦ୍ ଓ ପ୍ରୁଷ୍ଟ ପ୍ରଭୃତି ଏକ୍ସପରିମେଣ୍ଟାଲ୍ ଉପନ୍ୟାସ ଗଦ୍ୟ-କବିତାରେ ସେମାନଙ୍କ ଯୁବବସ୍ଥାରେ ରଚନା କରିଛନ୍ତି।

ଉନବିଂଶ ଶତକ ଶେଷ ବେଳକୁ ଗଦ୍ୟ-କବିତା ଅଧିକାଂଶ ୟୁରୋପୀୟ ଓ ଆମେରିକୀୟ ସାହିତ୍ୟରେ ପ୍ରତିଷ୍ଠିତ ହୋଇସାରିଛି।

## ତିନିଜଣ ଗଦ୍ୟ-କବିତା କବି ଓ ସେମାନଙ୍କ ଗଦ୍ୟ-କବିତା ତିନୋଟି

ସେଣ୍ଟ-ଜନ୍ ପର୍ସେ, ରେନିଚର ଓ ମାକ୍ସ ଯାକୋବ ରଚନା କରିଥିଲେ ଗଦ୍ୟଶୈଳୀୟ କବିତା ତିନୋଟି ପାଠକଙ୍କ ଉପଲବ୍ଧି ଓ ଅବଗତି ନିମନ୍ତେ କରାଯାଉଛି

ଉପସ୍ଥାପିତ। William Alwyn ସଂକଳିତ ଓ ଇଂରାଜୀକୁ ଭାଷାନ୍ତରିତ 'ଆନ୍ ଆଁଥୋଲୋଜୀ ଅଫ୍ ଟୋଣ୍ଟିଥ୍ ସେଞ୍ଚୁରୀ ଫ୍ରେଂଚ ପୋଏଟ୍ରି ପୁସ୍ତକରୁ କବିତା ତିନୋଟି ଭାଷାନ୍ତରିତ।

**ସେଣ୍ଟ-ଜନ୍ ପର୍ସେ :** ଜନ୍ମ ୧୮୮୭ ମସିହା, ପଏଣ୍ଟ-ଏ-ପିଟ୍ରେ, ଫ୍ରାନ୍ସ। ତାଙ୍କ କବିତା ସମ୍ବନ୍ଧରେ କୁହାଯାଇଛି, he has developed a style of high rhythmic originality to express poetry of intense interest and import and a language, sonorous and rhetorical, to match his thought.

ସିଏ ଥିଲେ ଜଣେ କୂଟନୀତିଜ୍ଞ। ଜର୍ମାନମାନେ ଫ୍ରାନ୍ସ ଆକ୍ରମଣ ବେଳେ ସିଏ ଦେଶ ଛାଡ଼ି ଚାଲି ଯାଇଥିଲେ, ଯେତେ ବେଳେ ଫ୍ରାନ୍ସ ଆକ୍ରମଣକାରୀଙ୍କ ସହିତ ଥିଲା ସଂଗ୍ରାମରତ। ତାଙ୍କୁ (traitor) ପ୍ରତାରକଭାବେ କରାଗଲା ବିବେଚିତ ଏବଂ ତାଙ୍କର ଲାଭ କରିଥିବା ସମସ୍ତ ପଦକ ଓ ସମ୍ମାନ ହୋଇଥିଲା ପ୍ରତ୍ୟାହୃତ। ସିଏ ତାଙ୍କର ଅଧିକାଂଶ ସମୟ ଆମେରିକାରେ କରିଥିଲେ ଖର୍ଚ୍ଚ ଏବଂ ୧୯୬୦ ମସିହାରେ ସାହିତ୍ୟ ସାଧନା ପାଇଁ ହୋଇଥିଲେ ନୋବେଲ ପୁରସ୍କୃତ। ଯୁବ ସ୍ରଷ୍ଟାଙ୍କ ଉପରେ ଏବେ ମଧ୍ୟ ରହିଚି ତାହାଙ୍କ ପ୍ରଭାବ। ତାଙ୍କ ପ୍ରକାଶିତ ପୁସ୍ତକ : Eloges, 1911, Amalase, 1924, Exil, 1942, Vents, 1946, Amens, 1960, ପ୍ରଭୃତି।

**ରେନି ଚର :** ଜନ୍ମ ୧୯୦୭ ମସିହା, ଏଲ୍ ଆଇଲ୍ ସୁର-ଲା-ସରଗୁଇ, ଫ୍ରାନସ। ମହାଯୁଦ୍ଧ ପୂର୍ବରୁ ଥିଲେ ସର୍‌ରିଆଲିଷ୍ଟ(୧୯୩୪)। ଜଣେ ପ୍ରତିରୋଧି ଯୋଦ୍ଧା ଭାବେ ପରବର୍ତ୍ତୀ ରଚନା ପ୍ରଭାବିତ। ତାଙ୍କ କବିତା ବେଳେ ବେଳେ ଅବୋଧ୍ୟ, ଗଭୀର ଅନୁଭବୀୟ ଓ ଆକସ୍ମିକ ଖୁବ୍ ଗତିଶୀଳ ବୋଲି କହନ୍ତି William Alwyn । ସମକାଳୀନ ଫରାସୀ କବିତାରେ ପରିଲକ୍ଷିତ ହୁଏ ତାଙ୍କ ପ୍ରଭାବ। ତାଙ୍କ ପ୍ରକାଶିତ ପୁସ୍ତକ : Le Martean sans maitre, 1934, Les Feuillets d' Hypnos 1946, Fureur et mystere, 1948, Les Paysans, 1949,ପ୍ରଭୃତି।

**ମାକ୍ସ ଯାକୋବ:** ଜନ୍ମ ୧୮୭୭ ମସିହା, କୁଇମ୍ପେର,ଫ୍ରାନ୍ସ। ସିଏ ଥିଲେ ମୂଳରୁ ଜଣେ ଚିତ୍ରଶିଳ୍ପୀ। ପିକାଶୋ ଓ ଆପୋଲୀନାଇର୍‌ଙ୍କ ସହିତ ପ୍ୟାରିସ୍‌ରେ ଆରମ୍ଭ (Launching) କରିଥିଲେ (Cubism) ଘନବାଦ। ଜନ୍ମବେଳେ ସିଏ ଥିଲେ ୟୁହୁଦୀ, ପରେ ହୋଇଥିଲେ ଖ୍ରୀଷ୍ଟିଆନ୍। ତାଙ୍କ କବିତାକୁ ପ୍ରଭାବିତ କରିଛି ସମର୍ପିତ ମନ ଓ ପ୍ରେମର ଅନୁଭବ। ଲୋକକଥା ଓ କିଂବଦନ୍ତୀ, ସରଳ ଭାଷା ଓ ନୂତନ ଉତ୍ସାହ ତାଙ୍କ କବିତାକୁ ଉଦ୍ଦୀପିତ କରିଛି। ସିଏ ୧୯୪୪ରେ ଜର୍ମାନ ଗେଷ୍ଟାପୋଙ୍କ ଦ୍ୱାରା ହୋଇଥିଲେ ବଂଦୀ ଏବଂ ଡ୍ରାନ୍‌ସିର୍ ଗୋଟିଏ ଯାତନା ଶିବିରରେ ଲଭିଥିଲେ ମୃତ୍ୟୁ। କିଂନ୍ତୁ ଅମୃତ ତାଙ୍କ ପୁସ୍ତକ: Le Cornet ades,1917, Le Laboratoire Central, 1921, Derniers Poems,1945 ।

**ସେଣ୍ଟ-ଜନ୍ ପର୍ସେ:** ମୋର ଅଶ୍ୱ ଦଣ୍ଡାୟମାନ ହେଲା ଏକ ବୃକ୍ଷତଳେ, ଯା' ଉପରେ ମଧୁକଂଠୀ ପକ୍ଷୀ ଥିଲେ ଭର୍ତ୍ତି, ମୁଁ ତୀବ୍ର କର୍କଶ ସ୍ୱରରେ ମାରିଲି ଗୋଟିଏ ହୁଇସିଲ୍, ଏତେ ପରିଷ୍କାର ଯେ ଶପଥ ରହିତ ସେମାନଙ୍କ ମିଳନ, ଗ୍ରହଣ କଲା ନାହିଁ ଏହି ବାହ୍ୟ ପ୍ରବାହିତ ଶବ୍ଦ (ଉଲ୍ଲାସର ପ୍ରତୀକଭାବେ ସକାଳ ତ୍ୟାଗ କରୁଥିଲା ପତ୍ରମାନ).. ଏବଂ ଏହା ନଥିଲା, ଯେମିତି ଜଣେ ବିଷାଦିତ ବ୍ୟକ୍ତି, ଦିବସଟିର ଉଦୟ ପୂର୍ବରୁ ଥିଲେ ଉଠି, ନିଜେ ସହ୍ୟ କରୁଥିଲେ ମନୋଭାବ ଆଦାନ ପ୍ରଦାନର, ପରସ୍ପର, ଘନିଷ୍ଠ ସଂପର୍କ ହେବାର ଗୋଟିଏ ବୃଦ୍ଧ ବୃକ୍ଷ ସହିତ, ତାଙ୍କ ଚିବୁକ ମାଂସ ସଂପର୍କ ରଚିଥିଲା ଶେଷତାରା ସହିତ, ସିଏ ଦେଖନ୍ତି କ୍ଷୁଧିତ ଆକାଶର ଗଭୀରତା, ବିପୁଳ ପରିଷ୍କାର ଘଟଣାମାନ, ଆବର୍ତ୍ତିତ ହେଉଥିଲେ ସେମାନଙ୍କ ଇଚ୍ଛା ଭିତରେ...

ମୋ ଅଶ୍ୱ ଦଣ୍ଡାୟମାନ ହେଲା କପୋତ କୂଜନରତ ବୃକ୍ଷ ତଳେ, ଗୋଟିଏ କର୍କଶ ପରିଷ୍କାର ହୁଇସିଲ୍ ତଥାପି ଥିଲା ମୋ ଓଠରେ.. ଏବଂ ଶାନ୍ତି, ଯେଉଁମାନେ ମୃତ୍ୟୁର ପାଖାପାଖି, ଏହି ଦିବସ ଦେଖିନାହାଁନ୍ତି। କିନ୍ତୁ ମୋ ଭାଇଙ୍କଠୁ, ଯିଏ ଜଣେ କବି, ଆମର କିଛି ବାର୍ତ୍ତା ରହିଛି। ପୁଣି ଥରେ ସିଏ ଲେଖିଛନ୍ତି ଅତ୍ୟନ୍ତ ମଧୁର କିଛି। ଏବଂ ଆମମାନଙ୍କ ମଧ୍ୟରୁ କିଛି ପାରିଅଛୁ ବୁଝି।(**ଗୀତ**)

**ରୋନି ଚର (ଜର୍ଜ ଡି ଲା ଟୁରଙ୍କ ଖଣ୍ଡେ ଛବି ଅଙ୍କନ ପରେ):**

ଆଜି ମୁଁ ଇଚ୍ଛା କରୁଚି, ଘାସ ହୋଇପାରିଲେ ସଫେଦ୍ ତୁମ ଯାତନାର ପ୍ରମାଣକୁ ଲିଭାଇ ଦେବାକୁ: ମୁଁ ତୁମ ହସ୍ତ ତଳେ ଦେଖାଯିବି ନାଇଁ ଆକୃତିରେ, ଏତେ ଯୁବା ଓ ସୁବଳ, ମୃତ୍ୟୁକୁ ନିଅଣ୍ଟ। ଦିନେ ସାବଧାନଭାବେ, ଅନ୍ୟମାନଙ୍କଠୁ କମ୍ ବ୍ୟଗ୍ର ମୁଁ, ମୁଁ ଖୋଲି ଦେବି ତୁମ ଲାଇନେନ୍ ସେମିଜ ଏବଂ ତୁମ ନିଭୃତ ସ୍ଥାନର ନିଏ ଅଧିକାର। କିନ୍ତୁ, ସେମାନେ ଭୁଲିଯିବେ ପରକେନା ବାଡ଼ିରେ ରାତ୍ରିର ଆଲୋକ ଅନ୍ୱେଷର,ଏବଂ ଖୁବ୍ କମ୍ ତୈଳର ବୁନ୍ଦା ଅସମ୍ଭବର ସମାଧାନ ଶିଖାର ଛୁରିକା ଉପରେ ବିଚିଂବେ।(**ରାତ୍ରିର ଆଲୋକକୁ**)

**ମାକ୍ସ ଯାକୋବ:** ମୋ ଶୈଶବର ଶୋଇବାଘରକୁ ମୁଁ ମନେ ପକାଉଚି। ଝରକା ଉପରେ ସୂକ୍ଷ୍ମ କାର୍ପାସର ପରଦା ଅପରିଚ୍ଛନ୍ନ ଧଳା ଫିତାରେ ହୋଇଥିଲା ଲେଖା। ମୁଁ ବାଧ୍ୟ ହେଲି ନିଜେ ଆବିଷ୍କାର କରିବାକୁ ଅକ୍ଷର ଏବଂ ଯେତେବେଳେ ମୁଁ ବଳପୂର୍ବକ ଅଧିକାର କଲି ଅକ୍ଷରତକ, ସେମାନଙ୍କୁ ରୂପାନ୍ତରିତ କରି ଦେଲି ରୂପରେଖ, ଭାବି ଗୋଟିଏ ଚ, ଯେମିତି ବସିଚି ଜଣେ ମଣିଷ। ବ, ଗୋଟିଏ ପୋଲର ଅର୍ଦ୍ଧାକୃତି, ତଳେ ତା'ର ସ୍ରୋତଟିଏ ପ୍ରବାହିତ ହେଉଚି। କିଂନ୍ତୁ ଭଲ ଲାଗୁଥିଲା ପଥରସ୍ତମ୍ଭ ଉପରେ ଥୁଆ ଦୁଇ ଗୋଲ ପେଣ୍ଡୁ ଯାହା ପରଦାରେ ଥିଲା ବର୍ଣ୍ଣିତ, ମୁଁ ବିଚାରୁଥିଲି ଦୁଇଟି ମୁଣ୍ଡ କାଠ କଂଢ଼େଇଙ୍କ ଯାହା ସହିତ ମୋ ଖେଳିବା ଥିଲା ଅନନୁମତିରହିତ।(**ଛୋଟ କବିତା**)



# ବିଶ୍ୱକବିତାକୁ ବଦଳାଇ ଦେଇଥିବା ସେଇ ଫରାସୀକବି କେତେଜଣ

ପ୍ରାୟ ତିରିଶ ବର୍ଷ ତଳେ ଗୋଟିଏ ପ୍ରବଂଧରେ ଅଧ୍ୟାପକ ତାରିଣୀ ଚରଣ ଦାସ କହିଥିଲେ, ନୂତନ କବିତାର ନୂତନତ୍ୱ ହେଉଛି କବିତାରେ ଶୃଙ୍ଖଳା ଓ ଅର୍ଥକୁ ଗୌଣ ମନେକରିବା। କଥାବସ୍ତୁ ଓ ଭାବର ଘଟିଲା ଗୌଣତା। ଶବ୍ଦ-ଶବ୍ଦ, ଅର୍ଥ-ଅର୍ଥ ଏବଂ ବାକ୍ୟ-ବାକ୍ୟ ଭିତରେ ଥିବା ଧରାବନ୍ଧା ଶୃଙ୍ଖଳା ହେଲା ବି◌ୋପ। କବିତାର ରୂପ ବା ସଜ୍ଜାଗତ ବିଶୃଙ୍ଖଳା, ଧାରାବାହିକତାର ଅଭାବ, ବୌଦ୍ଧିକତାର ସମାହାର, ପୁରାଣ ଓ ଇତିହାସରୁ ଦନ୍ତକଥା ଓ ଆଧୁନିକ ମନୋବିଜ୍ଞାନରୁ ସ୍ୱପ୍ନ ପ୍ରତୀକମାନ◌଼୍ର କାବ୍ୟିକ ପ୍ରୟୋଗ ଓ ଧ୍ୱନିର ପ୍ରାଚୁର୍ଯ୍ୟ ଆଧୁନିକତାର ମର୍ଯ୍ୟାଦା ହେଲା ପ୍ରାପ୍ତ। ନୂତନ ଉପମା, ଉପମେୟ ଓ ରୂପକଚ୍ଛ ପ୍ରଭୃତିର ପ୍ରୟୋଗ ହେଲା ଅଧିକ। କଥିତ ଭାଷା ଓ କାବ୍ୟଭାଷା ମଧ୍ୟରେ ଦୂରତାର ଘଟିଲା ହ୍ରାସ। କଥାବସ୍ତୁ ଓ ଭାବର ପୁଞ୍ଜି ହେଲା ଶୂନ୍ୟ।

ବିଶ୍ୱ କବିତାକୁ ପାଣିପାଗପରି ବଦଳାଇଥିଲେ ଫରାସୀ କବି ତିନି ଜଣ। ସେମାନେ

୧) ବୋଦ୍‌ଲେୟାର

ସିଏ ବ୍ୟକ୍ତିବାଦୀ ପ୍ରତୀକ (personal symbols)ର କଲେ ପ୍ରୟୋଗ ଏବଂ Sudden change ବା Displacement ଯୋଗସୂତ୍ର ହୀନତାକୁ ପଂକ୍ତିରେ କଲେ ପ୍ରୟୋଗ।

(୨) ର୍‍ୟାମ୍ବୋ

ଅନ୍ୟ କବିଗଣଙ୍କ କଲେ ଉଦ୍ଧୃତି ବା ଉଲ୍ଲେଖ ଏବଂ ସୂକ୍ଷ୍ମ ପ୍ରତୀକର କଲେ ପ୍ରୟୋଗ। କବିତାରେ ପ୍ରବେଶ କରାଇଲେ ବୌଦ୍ଧିକତା (Intellectual-ism)

(୩) ଲାଫର୍ଗ

ଅପ୍ରଚଳିତ ଶବ୍ଦର କଲେ ପ୍ରୟୋଗ ଓ ଶବ୍ଦ ଭିତରେ ନୂତନ ଅର୍ଥଦ୍ୱର କଲେ ଆରୋପଣ ଏବଂ ପ୍ରୟୋଗ କଲେ ମୁକ୍ତଛନ୍ଦ (FreeVerse ) ।

ଏହି କବିତ୍ରୟଙ୍କ କାବ୍ୟଶୈଳୀରୁ ବୌଦ୍ଧିକତା, ଯୋଗସୂତ୍ରହୀନତା, ହଠାତ୍ ପରିବର୍ତ୍ତନ, ଉଦ୍ଧୃତି ପ୍ରୟୋଗ, ଧ୍ୱନ୍ୟାତ୍ମକତା ଓ ଶବ୍ଦର ନୂତନ ଅର୍ଥବୋଧକୁ ସମନ୍ୱିତ ଭାବେ

ନିଜ କବିତାରେ ଗ୍ରହଣ କଲେ ଟି.ଏସ୍.ଇଲିୟଟ। ଇଲିୟଟଙ୍କ ପୂର୍ବରୁ ଏହି ଧରଣର ପ୍ରୟୋଗ ମାଲାର୍ମେ, ଭାଲେରୀ ଓ ଆପୋଲନାଇରି ପ୍ରଭୃତି ଫରାସୀ ପ୍ରତୀକବାଦୀ କବି କରି ଚାଲିଥିଲେ।

ଅର୍ଥ ଓ ଭାବ ଯାହାହେଉ, ଥାଉ ବା ନଥାଉ, ପ୍ରଭାବ କିନ୍ତୁ ଥିବ କବିତା ଅନ୍ତସ୍ଥଳକୁ ସ୍ପର୍ଶ କରିବ। ଧ୍ୱନି ଓ ସାମୂହିକ ଐକ୍ୟ ସିଧାସଳଖ ଆତ୍ମାକୁ ଛୁଇଁବ ଏହି କବିତ୍ରୟଙ୍କ ବ୍ୟତୀତ ଗତ ଶତକ କବିତାକୁ ବଳଦାଇଛି ଚିତ୍ରକଳାର ପ୍ରଭାବ। ଅତି ଯଥାର୍ଥବାଦୀ କଳା (surrealist) ପ୍ରଭାବରେ ରଚିତ ହୋଇଛି ଅସଂଖ୍ୟ ସରରିଆଲିଷ୍ଟ କବିତା। ଏଜ୍ରାପାଉଣ୍ଡ, ଲୁଇ ଆରାଗଁ ଓ ଶିଳ୍ପୀ ପିକାଶୋପ୍ରଭୃତି ଏହି ଶୈଳୀ ପ୍ରୟୋଗ କରି କରିଛନ୍ତି ରଚନା। Abstract art ରେ ଅର୍ଥ ଓ ଆଙ୍ଗିକକୁ ପ୍ରାଧାନ୍ୟ ଦିଆଯାଏ। ମିନିଂ ଓ ଫର୍ମର ପରିବର୍ତ୍ତନ ପଛରେ ରହିଛି ଅବଷ୍ଟ୍ରାକ୍ଟ ପ୍ରୟୋଗର ଅବଦାନ। Expressionist ମାନେ ଆତ୍ମିକ ଅଭିବ୍ୟକ୍ତିକୁ ଦିଅନ୍ତି ପ୍ରାଧାନ୍ୟ ଏବଂ ପ୍ରାକୃତିକ ଅନୁକରଣକୁ ନା ପସନ୍ଦ କରନ୍ତି। ତେଣୁ କଳା ଏକ ନୂତନ୍ ସୃଷ୍ଟି। ନୁହେଁ କା ନକଲ। ନକଲ ଫଟୋ ଏବଂ ଫଟୋନୁହେଁ ଆର୍ଟ, ତାହା ମୃତଶିଳ୍ପ। Cubism ରେ ଆଇନଷ୍ଟାଇନ୍‌ଙ୍କ ପ୍ରଭାବରୁ ଦୈର୍ଘ୍ୟ ପ୍ରସ୍ଥ ବ୍ୟତୀତ ଗଭୀରତା ଓ ସ୍ଥୂଳତାକୁ ପ୍ରଦାନ କରାଗଲା ସ୍ଥାନ, ଠିକ୍ ସେହିପରି କବିତାରେ ଶବ୍ଦ-ଅର୍ଥ ବ୍ୟତୀତ ବ୍ୟଂଜନାକୁ ପ୍ରଦାନ କରାଯାଇଛି ସ୍ଥାନ। ସିନେମାରିଲ୍‌ର ପରିବର୍ତ୍ତନ ହେବାଭଳି ମନୋବିଜ୍ଞାନର ଚେତନା ପ୍ରବାହ ଯୋଗୁ କବିତାରେ ବିଷୟବସ୍ତୁରେ ସହସା ଘଟୁଚି ପରିବର୍ତ୍ତନ। ସୃଷ୍ଟି ହେଉଛି ଅସମ୍ବନ୍ଧତା।

ଆଧୁନିକ କବିତାର ମୂଳଭିତ୍ତି, 'It is felt before it is understood' । କବିତାକୁ ବୁଝିବା ପୂର୍ବରୁ  କରିହୁଏ ତାହାର ଅନୁଭବ। ତାହା ସ୍ଥ,ାନ ଓ କାଳର ଉର୍ଦ୍ଧ୍ୱ। ଭୌଗୋଳିକ ଦୂରତ୍ୱ ଶୂନ୍ୟ। ଏକ ସୂତ୍ରରେ ଆବଦ୍ଧ ବିଶ୍ୱାୟନର ସଂସ୍କୃତି। ଯୁଗ ପ୍ରଭାବ ଅନୁଭବ୍ୟ। ପୁନଶ୍ଚ ଶକ୍ତ ଭାବେ ଯାହା ଦୃଷ୍ଟିକୁ ଆକୃଷ୍ଟ କରେ ତାହାହେଲା ମାଲାର୍ମେଙ୍କ ବ୍ୟକ୍ତିବାଦୀ ପ୍ରତୀକ ପ୍ରୟୋଗ ଓ ବ୍ୟାକରଣିକ ବିଘଟନ। ଯାହାକୁ ଅବଲୋକନ କରି ଅନେକ ଆଧୁନିକ କବିତାଠୁ ମୁହଁ ଫେରାଇ ନିଅନ୍ତି। କହନ୍ତି, ହଃ,ଏଥିରେ କ'ଣ ଅଛି ? ? ବ୍ୟକ୍ତିଗତ ପ୍ରତୀକ ପ୍ରୟୋଗ ଓ ବ୍ୟାକରଣିକ ବିଘଟନ କବିତାକୁ ଯେମିତି କରିଦିଏ ହାଲୁକା।

'ଆଧୁନିକ ଫ୍ରେଞ୍ଚ୍ କବିତା ଏକ ଆଲୋଚନା' (ଦିଗନ୍ତ, ଜାନୁଆରୀ-ମାର୍ଚ୍ଚ ୧୯୮୯)ରେ ଅମରେନ୍ଦ୍ର ଖଟୁଆ କହନ୍ତି, ଇଲିୟଟୀୟ 'ଅସ୍ଥିର ସଚେତନତା (Critical awareness) ବା ମାଲାର୍ମେଙ୍କ ବୌଦ୍ଧିକ ସଂଗୀତର ଜାଲରେ ଆଜିର କବି ବଂଦୀ।

ପୁରୁଣା ଗୀତିମୟତାକୁ ଭାଙ୍ଗି ଆଧୁନିକ ତୀକ୍ଷ୍ଣତା, କବିତା ଗଠନ କ୍ରିୟାରେ ବାଦ ବିବାଦର ନୂତନ ଛାଞ୍ଚ, ଆଙ୍ଗିକ ତଥା ଆତ୍ମିକ ବିକାଶ ପାଇଁ ସମାଜ, ଜୀବନ ଓ ଅନ୍ୟାନ୍ୟ କଳାତ୍ମକ ଦର୍ଶନକୁ ଏମାନେ କରିଥିଲେ ଗ୍ରହଣ।

ନିଜ ଆଲୋଚନାରେ ଶ୍ରୀଯୁକ୍ତ ଖଟୁଆ କହନ୍ତି, ଫ୍ରେଞ୍ଚ କବିତାରେ ନୂଆଯୁଗର ଆରମ୍ଭ କରନ୍ତି ପାଞ୍ଚଜଣ କବି। ସେମାନେ ହେଲେ Baudelaire(ବୋଦ୍‌ଲେୟାର୍), Mallarme (ମାଲାର୍ମେ), Rimband (ର୍ୟାମ୍ବୋ), Valery (ଭାଲେରୀ), ଏବଂ Claudel (କ୍ଲଡେଲ୍)। ଲାଫର୍ଗଙ୍କୁ ସିଏ ନିଜ ଆଲୋଚନା ପରିସରରୁ ର୍‌ଖିଛନ୍ତି ରହିତ। ରୋମାଣ୍ଟିକ୍ ଟ୍ରିଟମେଣ୍ଟ ଏବଂ ଅବ୍‌ଷ୍ଟ୍ରାକ୍ଟ ଦାର୍ଶନିକତା ମାଧ୍ୟମରେ ଏମାନେ ଫରାସୀ କବିତାରେ ସୃଷ୍ଟି କରିଛନ୍ତି ସାବଲିଳତା। ଏମାନେ ଫରାସୀ କବିତାକୁ ବଦଳାଇଛନ୍ତି କିପରି, ତାହାକୁ ଶ୍ରୀଯୁକ୍ତ ଖଟୁଆ ବର୍ଣ୍ଣନା କରିଛନ୍ତି।

(କ) ଭଙ୍ଗୀ ଓ ପ୍ରକାଶରେ ସାମୟିକ ଅସ୍ପଷ୍ଟ ମାନସିକ ଚିତ୍ରଙ୍କ କାବ୍ୟିକବିକାଶ

(ଖ) ଶବ୍ଦ ସଂଯୋଜନାରେ ବ୍ୟାକରଣହୀନ ଗ୍ରହଣଶୀଳ ମଧୁରତା ତଥା ତୁଳନାତ୍ମକ ମିଥ୍ ପ୍ରୟୋଗ

(ଗ) ଭାବସୃଷ୍ଟି ଓ ଦର୍ଶନ ବିକାଶରେ ଅଂହବାଦ, ବ୍ୟକ୍ତିଚିତ୍ର, ମାନବ-ସଂପର୍କ ଏବଂ କଦବା ସାମାଜିକତାର ବିଷୟବସ୍ତୁଙ୍କୁ ସତ୍ୟତା ଏବଂ ସ୍ୱପ୍ନ ସଂଚାର ସ୍ତରରେ ଦ୍ୱୈତ-ପରୀକ୍ଷାରେ ମିଶ୍ରଣ କରିବା

ଏବଂ (ଘ) ଦୁର୍ବୋଧତା ବା ଗୀତିମୟ ଛନ୍ଦ କବିତା ମଧ୍ୟସ୍ଥ ତଥାକଥିତ ପାର୍ଥକ୍ୟକୁ ଶେଷ କରିବାକୁ ନେଇ ଏମାନେ ଆରମ୍ଭ କଲେ ଏକ ନୂତନ ଯୁଗ। ଏହି ଯୁଗର ପରବର୍ତ୍ତୀ ସୋପାନରେ ଦେଖିବାକୁ ମିଳିଥିଲା ସରରିଆଲିଜିମ୍, ଡାଡାଜିମ୍, ଇଂପ୍ରେସିଓନିଜିମ୍, ସ୍ୟାଡୋଜିମ୍ ଓ ଇମେଜ୍-ୱାର୍ଡ଼ ପୋଏଟ୍ରୀ ପ୍ରଭୃତିର ସୃଜନାତ୍ମକ ପ୍ରୟୋଗର ନୂତନ ସ୍ୱାଦ।

ସମୟର ତରଙ୍ଗରେ ଗଣିତର ସବୁ ସିଷ୍ଟମ ପୋଛି ହୋଇ ଯାଉଛି। କବିତା ପୃଥିବୀ ଉପରେ ପର୍ବତପରି ଗଦା ହୋଇ ରହୁଛି। ତା ଆଙ୍ଗିକ ଛାତିଭିତରେ ମଣିଷ ଜାତିର ତତଲା ନିଶ୍ୱାସ-ପ୍ରଶ୍ୱାସ ମହଜୁଦ୍ ହୋଇ ରହିଛି। ସବୁଜିନିଷ ତା ପାଖରେ ବାମନ ହୋଇ ଯାଉଛି।

ସେଇ କବିତାକୁ ତ୍ୟାଗ କରି ପାରିବ କେହି? ସେଇ ପର୍ବତ ଯେ ତିଆରି କରିଛି ଏଇ ସଂସାରକୁ। ଏଇ ସଂସାର (Religious) ଆଧ୍ୟାତ୍ମିକ, ଆଧ୍ୟାତ୍ମକ ନୁହେଁ ସ୍ୱର୍ଗ! ସ୍ୱର୍ଗ କଳ୍ପନା ମାତ୍ର। କାଳ୍ପନିକ ବିଳାସର କ୍ଷେତ୍ର। ସେଠି ନଥାଏ ମଣିଷର ଚିନ୍ତା, ଶ୍ରମ ଓ ପ୍ରେମ।

**ବୋଦ୍‌ଲେୟାର (Pierre Charles Baudelaire-1821-67)**

ଗଦ୍ୟ-କବିତା ପାଇଁ ବୋଦଲେୟାର ସର୍ବାଧିକ ଚର୍ଚ୍ଚିତ। ଗଦ୍ୟଶୈଳୀ କବିତାର ଆରମ୍ଭ ତାଙ୍କରି ଠାରୁ, ଧ୍ୱନିମୟ ଗଦ୍ୟ ଓ ଛନ୍ଦ ନିୟମ ଭିତରେ ବଂଚିବାର ଅନୁଭବକୁ ସିଏ ଉପସ୍ଥାପିତ କରିଛନ୍ତ ନିବିଡ଼ ଭାବେ। ତାଙ୍କ ରଚନା ଶୈଳୀ ସଂପର୍କରେ ହର ପ୍ରସାଦ ଦାସ ଲେଖିଛନ୍ତି ନିଜ ପ୍ରବନ୍ଧରେ: 'ଗଦ୍ୟର ପୋଷାକ ପିନ୍ଧି ମାତାଲ ଧାଡ଼ି କେତୋଟି ଯଦି ହଠାତ୍ ରାସ୍ତାରେ ଆସି ଠିଆ ହୁଅନ୍ତି, ତାଙ୍କୁ ଆମେ କୋଳେଇ ନେବା ନା ଦୂରେଇ ଦେବା? କୋଳେଇ ନେଲେ ସେମାନେ

କବିତା ହୋଇଯିବେ, ମାତାଲ ଭଙ୍ଗା ସ୍ୱରରୁ ସତ୍ୟର ବାଣୀ ଶୁଭିବ, ଦୂରେଇ ଦେଲେ ସେମାନେ ଆଉ ଦିଶିବେ ନାହିଁ।'

୧୮୫୭ ମସିହା, ତାଙ୍କ ସୃଷ୍ଟିର ପ୍ରଥମ ସକାଳ 'Les Fleurs du mal' ଯାହାକୁ ଆମ ଶବ୍ଦରେ କୁହାଯାଏ 'ପାପର ପୁଷ୍ପ'। ହର ପ୍ରସାଦ ଦାସ ଏହାକୁ ଭାଷାନ୍ତରିତ କରିଛନ୍ତି 'ଅପପୁଷ୍ପ'। ଏହି କବିତା ସଂକଳନରେ ରହିଛି ଗୋଟିଏ ଚତୁର୍ଦ୍ଦଶପଦୀ କବିତା, ଯାହା ପ୍ରତୀକବାଦର ମୂଳମନ୍ତ୍ର ରୂପେ ସ୍ୱୀକୃତ, ସେହି କବିତାଟିର ଶୀର୍ଷକ 'Correspondences'। ପ୍ରତୀକ ଆନ୍ଦୋଳନକୁ ବୁଝାଇବାକୁ ସେହି କବିତାଟିର ଅନୁବାଦ କରିଥିଲେ ବଙ୍ଗଳା କବି ବୁଦ୍ଧଦେବ ବସୁ।

'ପ୍ରକୃତି, ମଂଦିର ଏକ, ସ୍ତମ୍ଭରାଜି ପ୍ରାଣେର କଂପନେ
ମାଝେମାଝେ ଅସ୍ପଷ୍ଟ ପ୍ରଳାପେ ଦେୟ ସଙ୍କେତ ଗୁଡ଼ିଏ
ସେଖାନେ ମାନୁଷ ଆସେ ରାଗତ, ଗଭୀର, ଅଦ୍ୱର
ଅବଶେଷେ ଖୁଂଜେପାୟ ଅନ୍ଧକାର, ଗାଢ଼ ସମତାନ
ନିଶୀଥେର ମତୋ ବ୍ୟାପ୍ତ ସ୍ୱଚ୍ଛତାର ମତୋ ମହୀୟାନ
ସେଇ ମତୋ ବର୍ଣ୍ଣ, ଗନ୍ଧ ପରସ୍ପର ଜାନାୟ ଉତ୍ତର।'

ଡଃ. ପ୍ରସନ୍ନ କୁମାର ପଟ୍ଟନାୟକ ଉଲ୍ଲେଖ କରିଛନ୍ତି, ପ୍ରକୃତିକୁ ଏକ ସୀମାହୀନ ଦେବାଳୟ ରୂପେ ଦର୍ଶନ କରାଯାଇଛି। ବୃକ୍ଷସକଳ ଦୋଦୁଲ୍ୟମାନ ସ୍ତମ୍ଭ। 'ପ୍ରତୀକାରଣ୍ୟ' ମଧ୍ୟରେ ପବନ ପ୍ରବାହିତ ହେତୁ ବିଭ୍ରାନ୍ତ ଶବ୍ଦ ସମୁଚ୍ଚୟ ହେଉଥାନ୍ତି ଇତସ୍ତତଃ ନିଶ୍ୱସିତ। 'ସୁଗନ୍ଧ ହେଉଛି ଶିଶୁ ତ୍ୱକ୍ ପରି ସତେଜ, ବଂଶୀସ୍ୱନପରି ମଧୁର ଓ ତୃଣଭୂମି ପରି ହରିତାଭ। ଇଂଦ୍ରିୟ ସଂବେଦ ବିବରଣୀରେ ଧାରଣ କରିଛି ଅସୀମ ବସ୍ତୁର ସଂପ୍ରସାରଣ। କବିତାର କାନ୍‌ଭାସରେ ଏକ ଭାବନା ବା ମାନସିକ ପଦାର୍ଥ ଗୋଟିଏ ଚିତ୍ରକଳ୍ପ ବା ପ୍ରତୀକ ରୂପେ ହୋଇପାରେ ପ୍ରକାଶିତ। ଦାର୍ଶନିକ ଇମାନୁଏଲ ସ୍ୱିଡେନବର୍ଗଙ୍କ ମତରେ ସଂସାରର ପ୍ରତ୍ୟେକ ପଦାର୍ଥ ଏକ ପ୍ରତୀକ ଏବଂ ଏହି ପ୍ରତୀକମାନ ହିଁ ହେଉଛି ପ୍ରକୃତିର ଭାଷା। ଜଗତରେ ସମସ୍ତ ପାର୍ଥିବ ବସ୍ତୁ ସମୂହ ସ୍ଥିତିର ମୂଳରେ ରହିଛି 'ଆତ୍ମା'। ଆତ୍ମ-ଜଗତରେ ନିହିତ ମୂଳ ସଂପର୍କକୁ କେବଳ ପ୍ରତୀକ ମାଧ୍ୟମରେ ହିଁ ହେବ ବୁଝି।

ବୋଦ୍‌ଲେୟାର ଥିଲେ ଦାର୍ଶନିକ ସ୍ୱିଡେନବର୍ଗଙ୍କ ଅସାମାନ୍ୟ ଭକ୍ତ। ବୋଦ୍‌ଲେୟାରଙ୍କ ଖଣ୍ଡିଏ ଉପନ୍ୟାସ 'La Fanfarlo' ର ନାୟକ ସ୍ୱିଡେନବର୍ଗଙ୍କ ଖଣ୍ଡିଏ ପୁସ୍ତକ ମୁଣ୍ଡ ତଳେ ରଖି କରିଥାଏ ଶୟନ।

'Correspondences' କବିତାଟିର ବ୍ୟାଖ୍ୟା "Leterary Criticism-A short History" ପୁସ୍ତକରେ କରିଛନ୍ତି Cleanth Brooks, 'All nature is viewed as temple, a natural; temple whose living pillars are the trees. As the wind blows

through these forest of symbols confused words are now and then breathed forth. The poet, because of this special endowment is able to apprehend these words, for in all things there is a symbolic sense and every object in nature has its special connection with a spiritual reality."

ବୋଦ୍‌ଲେୟାର Edgar Allan Poeଙ୍କ ନିକଟରେ ପୋ'ଙ୍କ 'ଦି ପୋଏଟିକ୍ ପ୍ରିନ୍ସିପୁଲ୍' ପ୍ରବନ୍ଧ ପାଇଁ ନିଶ୍ଚିତ ଭାବେ ଋଣୀ। ସିଏ ଦୁଇଟି ତତ୍ତ୍ୱ ତାଙ୍କ 'ଦି ବ୍ଲାକ୍‌କ୍ୟାଟ୍' କବିତାର ଫରାସୀ ଅନୁବାଦରୁ ହୃଦୟଙ୍ଗମ କରିଥିଲେ। (୧) ଆତ୍ମାର ଉଦ୍‌ଗମନ କ୍ଷମତା ଦ୍ୱାରା ଆନନ୍ଦର ହୁଏ ଉତ୍ପତ୍ତି, କବିତାର ଶ୍ରେଷ୍ଠ ନିକଷ। (୨) ବୋଧହୁଏ ସଂଗୀତରେ ହିଁ ଆତ୍ମା ଚରମ ଅବସ୍ଥା ପ୍ରାପ୍ତ ହୁଏ। କବିତା ସହ ସଂଗୀତର ସମିଶ୍ରଣରେ କାବ୍ୟିକ ଅଗ୍ରଗତିର କ୍ଷେତ୍ରହୁଏ ପ୍ରଶସ୍ତ। ଏହି ଦୁଇ ଆଦର୍ଶ ସହିତ ପରିଦୃଶ୍ୟମାନ ଅତୀନ୍ଦ୍ରିୟ ଜଗତର ସୌନ୍ଦର୍ଯ୍ୟ ଉପଲବ୍ଧି Mystic ଭାଷାରେ ବୋଦ୍‌ଲେୟାର ବାଢ଼ି ଦେଇଛନ୍ତି।

**ମାଲାର୍ମେ (stephane Mallarme -୧୮୪୨-୯୮)**

ମାଲାର୍ମେ ଫ୍ରାନ୍ସର ମଙ୍ଗଳବାରିଆ ସାହିତ୍ୟ ସଂସଦର ପ୍ରବକ୍ତା। ଅସ୍କାର ଓ୍ୱାଇଲଡ୍ ଓ ଜର୍ଜ ମୁର ପ୍ରଭୃତି ଅସଂଖ୍ୟ ବିଶ୍ୱବିଖ୍ୟାତ ସାହିତ୍ୟିକଙ୍କ ସହିତ ଏଠାରେ ତାଙ୍କର ସାକ୍ଷାତ ହୋଇଛି। ଜଣେ ଆଲୋଚକ ଲେଖିଛନ୍ତି ମାଲାର୍ମେ ଯଶସ୍ୱୀଶିଳ୍ପୀ କିନ୍ତୁ ଲୋପପ୍ରିୟ ନୁହନ୍ତି। ଅଧିକାଂଶ ଲୋକଙ୍କ ପାଇଁ ତାଙ୍କ କବିତା ଦୁର୍ବୋଧ୍ୟ। ତାଙ୍କର ସିଦ୍ଧି ସ୍ୱଳ୍ପ ଓ ସାଧନା ମନ୍ଥର।

ମାଲାର୍ମେଙ୍କ ମତରେ କବିତା ରୀତିମତ ଏକ ଅଧ୍ୟବସାୟ, ମନ ଓ ବୁଦ୍ଧିର ସକଳ ଶକ୍ତି ପ୍ରଦର୍ଶନର ଏକମାତ୍ର କ୍ଷେତ୍ର। ବୈଦଗ୍ଧ୍ୟ ଓ ଶିଳ୍ପ ଚାତୁର୍ଯ୍ୟ ପ୍ରଦର୍ଶନ ଏହାରଲକ୍ଷ୍ୟ। ମାନବ ଜୀବନର ପରିଦୃଶ୍ୟମାନ ସ୍ତରରେ ରହିଛି ଯେଉଁ ସ୍ୱଚ୍ଛ ଓ ପ୍ରାଞ୍ଜଳ ଅର୍ଥ, ତାହା ଅନ୍ତରାଳରେ ରହିଛି ସେହିପରି ବ୍ୟଂଜନାର ଅନ୍ତଃଶୀଳା ସ୍ରୋତ। ଚିତ୍ରକଳ୍ପପରେ ଚିତ୍ରକଳ୍ପ ଖଂଜି ସଂଗୀତର ଆଙ୍ଗିକରେ ମାଲାର୍ମେ କରିଛନ୍ତି ତାହାକୁ ଉପସ୍ଥାପିତ। ଭଙ୍ଗୁର ଜୀବନକୁ ଅର୍ଥପୂର୍ଣ୍ଣ କରେ କବିତାର ସେହି ବ୍ୟଂଜନା ଏବଂ ଆଧ୍ୟାତ୍ମିକଲୋକର ଦିବ୍ୟ ସୌନ୍ଦର୍ଯ୍ୟର ଦିଏ ବାର୍ତ୍ତା। ତେଣୁ ତାଙ୍କର ଅଧିକାଂଶ କବିତାର ବିଷୟବସ୍ତୁ ମଣିଷ ଅଭିଜ୍ଞତା ବାହାରୁ ସିଏ କରିଛନ୍ତି ସଂଗ୍ରହ।

ମାଲାର୍ମେଙ୍କ କବିତା ସଂକଳନଟିର ଶୀର୍ଷକ 'Le Parnase Contemporia', ବସ୍ତୁକୁ ଅବିକଳ ସିଏ ଉପସ୍ଥାପିତ କରି ନାହାଁନ୍ତି। ବିସ୍ମୟର ସୌରଭ ତାଙ୍କ କବିତାର ମୁଖ୍ୟ ଉପାଦାନ, ଯେଉଁଠୁ ପାଠକ ପ୍ରାପ୍ତ ହୁଏ ଆନନ୍ଦ। ତେଣୁ ପ୍ରତୀକ ତାଙ୍କର ଗୌରବ ଓ ତାର ସମୃଦ୍ଧିର ସିଏ ଦେଇଛନ୍ତି ନିର୍ଦ୍ଦେଶ।

ହରପ୍ରସାଦ ଦାସ ଲେଖିଛନ୍ତି ଗୋଟିଏ ବିଶାଳ ମାନସ ଭୂମିର ଦୁଇଟି ବିପରୀତ ଅଂଶ ବୋଦଲେୟାର ଓ ମାଲାର୍ମେ। ବୋଦ୍‌ଲେୟାରଙ୍କ ପ୍ରତୀକବାଦକୁ ଯଦି ଅଳୀକ

ପ୍ରତୀକବାଦ କୁହାଯିବ, ମାଲାର୍ମେଙ୍କ ପ୍ରତୀକବାଦ ହେବ ଅବଲୌକିକ ପ୍ରତୀକବାଦ। ମାଲାର୍ମେଙ୍କ କବିତା ଶବ୍ଦପ୍ରବଣ। ତାଙ୍କ ଶବ୍ଦର ଜଗତ ସ୍ୱୟଂ ସଂପୂର୍ଣ୍ଣ। ସିଏ ଶବ୍ଦରେ ମାତନ୍ତି ଆବେଗଠୁ ହଟନ୍ତି। ତାଙ୍କ ଶବ୍ଦବାଜୀ ଦୁଇପ୍ରକାର ଏକ-ସାଧାରଣ ଶବ୍ଦଟିର ଯାହାଅର୍ଥ, ତାକୁ ସିଏ ସେହି ଅର୍ଥରେ ପ୍ରୟୋଗ ନକରି କରୁଥିଲେ ଗୋଟିଏ ନୂଆ ଅର୍ଥରେ।

ଦୁଇ-ଦୈନନ୍ଦିନ ବ୍ୟବହାରିକ ଭାଷାର ବ୍ୟାକରଣ ଓ ଛନ୍ଦକୁ ସିଏ ଭାଙ୍ଗି ଦେଇ ଗୋଟିଏ ନୂଆ ଅର୍ଥର ପରିଚୟ ସୃଷ୍ଟି କରିଥିଲେ।

ସ୍ୱତଃସ୍ଫୁର୍ତ୍ତତା ବଦଳରେ ଶବ୍ଦମୟ ପ୍ରତୀକ ପ୍ରବାହ ନେଇଛି ଶିଳ୍ପଚାତୁର୍ଯ୍ୟ। ସିଏ ନିଜ କବିତାରେ ନିର୍ଦ୍ଦିଷ୍ଟ କଥାଟିଏ କହନ୍ତି ନାହିଁ ଶବ୍ଦମାନେ କିଛି କହିବାକୁ ମୌନମୁଖର ହୋଇ ଯେମିତି ଫାଟି ପଡନ୍ତି।

ବୋଦ୍‌ଲେୟାର କଳ୍ପନାରେ ଖୋଜୁଥିଲେ ନିଜ ଆଦର୍ଶର ପୃଥିବୀକୁ। ମାଲାର୍ମେ ନିଜ ଆଦର୍ଶର ପୃଥିବୀ ଖୋଜୁଥିଲେ ଶୂନ୍ୟତାରେ। ଏଇଠି ଦୁହିଁଙ୍କ କଳାତ୍ମକ ସୃଜନତତ୍ତ୍ୱରେ ଥିଲା ଫରକ।

ଶୂନ୍ୟକୋଠରୀ, ମହମବତୀ ରଖିବା ପାଇଁ ମଝିରେ ରହିଛି ଏକ ଧାତୁର ମୂର୍ତ୍ତି। ଝର୍କାପାଖରେ ରହିଛି ଗୋଟିଏ ଦର୍ପଣ, ତହିଁରୁ ସପ୍ତରଙ୍ଗ ରଶ୍ମିର ହେଉଛି ପ୍ରତିଫଳନ। ଏହାକୁ ବ୍ୟାଖ୍ୟା କରାଯାଇଛି, ଧାତୁମୂର୍ତ୍ତି ମସ୍ତକରେ ରଖାଯାଇଥିବା ମହମବତୀ କାହା ସ୍ୱପ୍ନସବୁ ଜାଳି ଦେଇଛି। ଦର୍ପଣଟି ଉତ୍ତରକୁ ମୁହଁକରି ରଖାଯାଇଛି। ଦର୍ପଣ ଶୂନ୍ୟତାର ପ୍ରତୀକ। ପ୍ରତିଫଳିତ ଆଲୋକରଶ୍ମି ଅଲୌକିକ। ଅପାର୍ଥିବ ଅନୁଭବର ସାଂକେତିକ ବିମ୍ବ।

**ର୍‍ୟାମ୍ବୋ** (Jean Arthur Rimband-୧୮୫୪-୯୧)

ବୋଦ୍‌ଲେୟାର ଯେଉଁ ରହସ୍ୟମୟ ଭୁବନକୁ ଶବ୍ଦରେ ଉପସ୍ଥାପନ କରିବାକୁ କରିଥିଲେ ଉଦ୍ୟମ, ର୍‍ୟାମ୍ବୋ ସେହି ରହସ୍ୟାଳୟକୁ ମନ, ପ୍ରାଣ ଓ ଦେହ ଦେଇ କରିଛନ୍ତି ସନ୍ଧାନ। ତେଣୁ ୧୮୭୧ରେ ଖଣ୍ଡିଏ ଚିଠିରେ ସିଏ କରିଥିଲେ ଉଲ୍ଲେଖ: 'The Poet makes hismself Voyant by a long vast reasoned derangement of all the senses.'ତାଙ୍କ ଉଚ୍ଚାରିତ 'Voyant' ଶବ୍ଦଟିର ଭାବ 'ଦିବ୍ୟଦ୍ରଷ୍ଟା'। ପ୍ରାଚୀନ ରୀତିନିତି, ଚିନ୍ତା, ବିଶ୍ୱାସ, ରୁଚି ଓ ଅଭ୍ୟାସ ବିସର୍ଜନ କଲେ ଜଣେ ହେବ Voyant ଜଗତରେ ଉପସ୍ଥିତ। ତାଙ୍କ ଦୃଷ୍ଟିରେ ବୋଦ୍‌ଲେୟାର ଥିଲେ ସେଭଳି ଜଣେ ମଣିଷ।

ର୍‍ୟାମ୍ବୋ ଷୋ ଳବର୍ଷ ବୟସରେ ଆରମ୍ଭ କରିଥିଲେ କବିତାଲେଖା, ଉଣେଇଶ ବର୍ଷ ବୟସ ବେଳକୁ କଲେ ତ୍ୟାଗ। ସରିଗଲା ତାଙ୍କ ଅକ୍ଷରେ କବିତା ଆରମ୍ଭ ହେଲା ବଞ୍ଚିବାର ଅଛନ୍ଦ ଜୀବନ। ସବୁ ପାଣ୍ଡୁଲିପିକୁ ଏକାଠି କରି ଶୀତ ଦେଶର କବିଟି ପୋଇଁ ଦେଲା ନିଆଁ।

ତାଙ୍କ ବିଷୟରେ କବି ହରପ୍ରସାଦ ଦାସ ଉଲ୍ଲେଖ କରିଛନ୍ତି: ଫରାସୀ କବିତାର ଯୁବରାଜ ଆଫ୍ରିକାର ଅରଣ୍ୟରେ ଗୋଟିଏ ନଈକୂଳରେ ବସି ନଈ ପାଣିରେ ଭାସି ଆସୁଥିବା

କାଠଗଣ୍ଡିର ହିସାବ କରୁଚି। ବିଶ୍ୱ କବିତାର ରୋମାଞ୍ଚକାରୀ ବିସ୍ମୟ ଭିଏନାର ରାସ୍ତାରେ ଜୋତାଲେସ୍ ବିକ୍ରୟ କରୁଚି। ସୂକ୍ଷ୍ମ ଇନ୍ଦ୍ରିୟବୋଧର କିନ୍ନର ସ୍କାଣ୍ଡିନେଭିଆର ସର୍କସ୍ କଂପାନୀ ପଛେପଛେ ବଟସ୍କର ହୋଇ ଚାଲିଛି। ସାଇପ୍ରସର ପଥର ଖଣିର ଖନନ କାର୍ଯ୍ୟ ତଦାରଖ କରୁଚି ଦେବଦୂତ। ଅସୁରକ୍ଷିତ କୈଶୋରରୁ ମୁକ୍ତ ହୋଇଥିବା କଳ୍ପନାର ଗୋଟିଏ ପ୍ରଜାପତି ଦୀର୍ଘ ମରୁପଥ ଅତିକ୍ରମ କରି ପହଞ୍ଚିଛି ଏଭଳି ଏକ ଇଲାକାରେ ଯେଉଁଠି ଜୀବିକା ପାଇଁ ସେ ଗ୍ରହଣ କରି ନେଉଚି ଅସ୍ତ୍ରଶସ୍ତ୍ରର ଚୋରାଚାଲାଣ ଓ ଦାସ ବ୍ୟବସାୟ ପନ୍ଥା।

ପୁନଶ୍ଚ ହରବାବୁ ଲେଖିଛନ୍ତି 'କବିତା ସହିତ ତାର ତିନିବର୍ଷର ସଂପର୍କ ଯେମିତି ଥିଲା କଂଢ଼େଇ ଖେଳ, ଯାହାକୁ ଭୁଲିଯିବା ହିଁ ଥିଲା ତା ବୟସ୍କ ହେବାର ପ୍ରମାଣ। ଓଡ଼ିଆ ପତ୍ର ପତ୍ରିକାରେ କବିତା ଲେଖୁଥିବା ଏମିତି ମଣିଷ ଅଛନ୍ତି କେତେଜଣ? ର୍‌ୟାମ୍ବୋଙ୍କ ଚିନ୍ତାଧରା-କବି କାଳର ଅନୁସରଣ କରେ ନାହିଁ, କାଳ କବିର ଅନୁସରଣ କରେ। କବି ଆଗେଆଗେ, କାଳ ଚାଲିଥାଏ ପଛେପଛେ।

ଇନ୍ଦ୍ରିୟବୋଧକୁ ଶବ୍ଦ ମାଧ୍ୟମରେ ବ୍ୟକ୍ତକରି ଦେଲେ ଯଥେଷ୍ଟ । କବିତା ନୁହେଁ 'ଆଜିର ବାର୍ତ୍ତା' କବିତା ଏକ ଭବିଷ୍ୟତ ବାଣୀ, ଥିଲା ତାଙ୍କ କବିତାର ସଂଜ୍ଞା। ନିୟମ, ନିୟନ୍ତ୍ରଣ, ସଂଯମ ଓ ଯୁକ୍ତିସିଦ୍ଧ ସ୍ଥାପତ୍ୟଠୁ ଭିନ୍ନ ଥିଲା ତାଙ୍କ ଶବ୍ଦବସାଣ। କେବଳ ଇନ୍ଦ୍ରିୟବୋଧର ଉଦ୍ଦୀପିତ ଉଚ୍ଚାରଣ!

**ଲାଫର୍ଗ (Jules Laforgue-୧୮୫୦-୮୭)**

ସିଏ ଥିଲେ ମୁକ୍ତ ଛନ୍ଦର ଆଦି ପ୍ରବର୍ତ୍ତକ। ପୋ' ଥରେ କହିଥିଲେ, କବିତା 'Rhythmical Creation of beauty'। କବିତା ଝୁଣ୍ଟିବା ଭଳି ଖାଦ୍ୟହୀନ ମାଧୁର୍ଯ୍ୟର ନିର୍ଝର। ଏହାର ଆଙ୍ଗିକ ଓ ଆତ୍ମିକ ଏକାକାର। ଶବ୍ଦ ଓ ଛନ୍ଦ କବିତାକୁ କରେ ଅନୁଭବ୍ୟ। ଅପ୍ରଚଳିତ ଶବ୍ଦ ଓ ଛନ୍ଦର ପ୍ରୟୋଗରେ ବିସ୍ମୟବୋଧ ଜାଗ୍ରତ କରାଇବା ଲାଫର୍ଗଙ୍କ ମତରେ କବିତାର ଧର୍ମ। ଭାବନାକୁ ଚିତ୍ର ଓ ଚିତ୍ରକୁ ଭାବନାରେ ବିବର୍ତ୍ତିତ କରିବା ଥିଲା ତାଙ୍କ କବିତାର କାମ। ଗୋଟିଏ ଭାବନା କ୍ଷେତ୍ରକୁ ପୃଥକ୍ ଭାବନା କ୍ଷେତ୍ରକୁ ସଂକ୍ରମିତ ହେବା ଆଧୁନିକ କବିତାର ଲକ୍ଷଣ। ଗୋଟିଏ ପଂକ୍ତି ସହିତ ପର ପଙ୍କ୍ତିର ଆଦୌ ନଥାଏ ସଂପର୍କ।ଅଥଚ ଦୁଇଟି ଯାଣ୍ଡ ପଙ୍କ୍ତି କବିତାର ଅଂଶ ବିଶେଷ।

ଏହି କବିମାନଙ୍କ ପୁଞ୍ଜି ବିଶ୍ୱର ସବୁ କବିତା ବ୍ୟାଙ୍କକୁ ବାଣ୍ଟିହୋଇ ଯାଇଛି। ସବୁ ଭାଷାର କବିତା ପ୍ରାୟ ଅଳ୍ପ ବହୁତ ଏଇମାନଙ୍କ ଋଣଗ୍ରହଣ କରି ଆଧୁନିକ ହୋଇଛନ୍ତି। କବିତାର ଆଧୁନିକତା ନୁହେଁ କାଳଗତ, ଏହା କଳାଗତ। କବିତାକୁ ଆଧୁନିକ କରିବାରେ ପ୍ରତୀକର ଭୂମିକା ଯଥେଷ୍ଟ। ଏହି ଫରାସୀ କବିବୃନ୍ଦ ଥିଲେ ପ୍ରତୀକବାଦୀ ଅଧିକାଂଶ।



# ନିସର୍ଗ କାବ୍ୟଲୋକର ଭୂମି ଓ ଭୋଗର ଗାୟତ୍ରୀ

## ମହୁ ସୋରେଇର ଭୂଗୋଳ

ଭକ୍ତକବି ମଧୁସୂଦନ ରାଓ ଗୋଟିଏ କବିତାରେ ବର୍ଣ୍ଣନା କରିଛନ୍ତି : ଆକାଶ ଦିଶେ କି ସୁନ୍ଦର / ତାହାକୁ ରଚିଲେ ଈଶ୍ୱର !

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କ ଆଦ୍ୟ କାବ୍ୟିକ ଚିତ୍ରପଟ୍ଟର ଶୀର୍ଷକ 'ନିଶବ୍ଦ ଆକାଶର ଡାକ'। ଆକାଶ ପ୍ରାକୃତିକ ଏବଂ ଏକ ପରମ ବିସ୍ମୟର ପ୍ରତୀକ। ସୃଷ୍ଟିର ମୌଳିକ ତତ୍ତ୍ୱ ମଧ୍ୟରୁ ଏକ।

ଆକାଶ କେଉଁଠି ଯଦି କାହାକୁ ପଚରା ଯାଏ ସିଏ ଊର୍ଦ୍ଧ୍ୱକୁ ଅଙ୍ଗୁଳି ଉତ୍ତୋଳିତ କରି ଦେଇଥାଏ। କବି Willard Trask ସଂପାଦନ କରିଛନ୍ତି 'The Unwritten songs' ଶୀର୍ଷକ ପୁସ୍ତକ । ଏହାର ଦ୍ୱିତୀୟ ଖଣ୍ଡରେ ବର୍ଣ୍ଣିତ: The sky which floats above the earth/Dwelt with Hawiki...

ଆଉ ଟିକିଏ ଆଗକୁ ଗଲେ ତାଙ୍କ ସେହି କବିତାରେ ଦେଖିବାକୁ ମିଳେ, 'The atmosphere which floats above the earth' ସେହି ପରିବେଶକୁ କରିଥାଏ ଉଜ୍ଜ୍ୱଳ କୁହାମାରି ଜହ୍ନ। ଉଷା ପୂର୍ବର ତାହା ଏକ ବିରାଟ ସ୍ଥଳ। ପୁଣି ବର୍ଣ୍ଣିତ : Forth with was produced the sun / they were thrown up above as the chief eyes of Heaven : ସ୍ୱର୍ଗ ମୁଖିଆଙ୍କ ଦୁଇ ଆଖି ଚନ୍ଦ୍ର ଓ ସେଠାରେ ଉପସ୍ଥିତ ସୂର୍ଯ୍ୟ। ଆକାଶର ଭୂମିକା ମଣିଷର କବିତାରେ କେଉଁ ଆଦି କାଳରୁ ସ୍ଥାନୀତ। ରୋମାନ୍ ଧାର୍ମିକ କବିତାରେ Lucretius (94-55B.C) ତାଙ୍କ ରଚିତ ପୁସ୍ତକ : De Rerum Natura' ରେ କରିଛନ୍ତି ବର୍ଣ୍ଣିତ :

'Life-givingVenus: under the wheeling constellations of the sky'
It is through you that nature teems with life'

Juan Mascaro ତାଙ୍କ ରଚିତ 'Hymn of creation' ରେ ବର୍ଣ୍ଣନା କରିଛନ୍ତି: ଅନ୍ଧକାରରେ ଲୁଚିଗଲା ଅନ୍ଧକାର / ସମସ୍ତ ତାରଲ୍ୟ ଏବଂ ଆକୃତି ବିହୀନ / ସେଠାରେ ଓ ତାହା ମଧ୍ୟରେ ବିଦ୍ୟମାନ ଶୂନ୍ୟ / ଅଗ୍ନିଦ୍ୱାରା ହୋଇ ଉତ୍ସାହିତ / ଜଣେ ହେଲେ ଆବିର୍ଭୂତ / ତାଙ୍କ ମଧ୍ୟରେ ଜନ୍ମିଲା ଅନୁରାଗ (One arose love. Love the first seed of soul.)!

ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟ ତାଙ୍କ ପ୍ରବନ୍ଧ 'କ୍ରିଏଟିଭ୍ ଇମାଜିନେସନ୍ ଏଣ୍ଡ୍ ଇଟ୍ସ୍ ରୋଲ୍' ପ୍ରବନ୍ଧରେ କରିଛନ୍ତି ଉଲ୍ଲେଖ :

The writer or the artist is a Part of nature'। କବି, ଲେଖକ, ଶିଳ୍ପୀ ପ୍ରକୃତିର ଅଂଶ ବିଶେଷ।

'ନିଶବ୍ଦ ଆକାଶ' ବିମଳ ପ୍ରକୃତିର ପ୍ରତୀକ। ତା ଡାକରେ ଥାଏ କ'ଣ? ନିର୍ଦ୍ଧାରିତ ସ୍ୱପ୍ନିଳ ଉପସଂହାର, ନା' ହରେକ ରଙ୍ଗର ଫୁଟନ୍ତା ଫୁଲର ପ୍ରେମ! ଆକାଶ କ'ଣ ସୀମିତ ଗୋଟିଏ ମାଂସାଳ କାମମୟୀ କାରୁକାର୍ଯ୍ୟ? ପ୍ରେମମୟୀର ସୁଠାମ ଚାହାଣୀ ହାଣି ଡାକିବ, ଶଂଖମର୍ମର ହୃଦୟରେ, ମୂର୍ଚ୍ଛନା ତୋଳି, ଗଛପରି ଠିଆ ହୋଇ ତା' ଆଡ଼କୁ ବଢୁଥିବା ମାଟିର ଆତ୍ମାକୁ? କାମନା କରିବ ମାଟିର ନିର୍ମୋହ ଆଲିଙ୍ଗନକୁ? ସମୟହୀନ ଜଂଜାଳର ନକ୍ସା ଭିତରେ ସୁଖର ସଫା ଉତ୍ତରୀୟଟିଏ ପକ୍ଷୀପରି ଡେଣା ଝାଡ଼ି ଯିବ ବସି ଯେମିତି ଏକ ଋଷି!!

ଏଇଥି ପାଇଁ ଅକାଶ ଡାକୁଚି, ଡାକୁଚି ପ୍ରକୃତିର ଆତ୍ମାକୁ?

'ନିଶବ୍ଦ ଆକାଶର ଡାକ' ଆତ୍ମାରେ କ'ଣ ଅଛି, ତାହା Terence Tiller ଙ୍କ କବିତା 'Substitutes'ରୁ ତିନୋଟି ପଂକ୍ତିରେ ଦର୍ଶାଇ ହେଉଛି:

Squeezing the private sadness until words
Pearl round it, and all images became
the Private sadness and the life...'

ଡକ୍ଟର ନଂଦଙ୍କ କାବ୍ୟିକତାର ଏହା ପହିଲି ଆଷାଢ଼ ଏବଂ ଅନ୍ୟ ଖଣ୍ଡିଏ ବହି ସେହି ଶୃଂଖଳାରେ 'ଅରଣ୍ୟର ଡାକ' ତାଙ୍କ ପ୍ରାକ୍- ଶ୍ରାବଣର ସ୍ୱର। ତାଙ୍କ ତୃତୀୟ କାବ୍ୟଲୋକର ଶୀର୍ଷକ 'ଶୂନ୍ୟବିଂଦୁ'। ନିଶବ୍ଦ ଆକାଶର ଶୂନ୍ୟତାରୁ ସୃଷ୍ଟି ଯେଉଁ ନାଂଦନିକ ଚେତନାର ପୁଷ୍ପ ତାହା ଉତ୍ତରଣରେ ହୋଇଛି ଗୋଟିଏ, 'ଶୂନ୍ୟବିଂଦୁ'! ସେ ଶୂନ୍ୟତା ଶୂନ୍ୟତା ନୁହେଁ, ସଂପର୍କର ପୂର୍ଣ୍ଣତାର ଚିତ୍ରଟିଏ। ଦେଖନ୍ତୁ

Emily Dickinson ଏଇ ଧାଡି ! ଠିକ୍ ଏମିତି –

'I'am nobody. who are you?
Are you nobody too?
Then there's a pair of us.
Don't tell-they'd banish us, you know.'

ଯେଉଁ ପ୍ରତିଶ୍ରୁତିର ସ୍ମୃତି, ସ୍ନେହର ଟୁକୁରା, ନଦୀର ସର୍ତହୀନ ହାତ ଓ ସଂପର୍କର ବୋଇତକୁ ଆଧାର କରି ଗଢ଼ି ଉଠିଥିଲା ରାତାରାତି ସୁଖକର ଉତ୍କଣ୍ଠାପୂର୍ଣ୍ଣ ପ୍ରତୀକ୍ଷାର ଚିତ୍ରନଦୀ, ତାହା ଦେବଦାସୀ ପରି ନୃତ୍ୟ ଓ ସ୍ୱଛଂଦର ଅଂଜଳି ବାଢ଼ି ଥୁଣ୍ଟା ଗଛର କଅଁଳ ପତ୍ରର ସବୁଜ ଛତ୍ର ଭିତରେ କେଉଁଠି ଯାଏ ହଜି! ଉଡିଗଲା ପକ୍ଷୀ ଓ ପ୍ରେମର ଚେରକୁ ସାମାଜିକ ଜୀବନର ଅରଣ୍ୟରେ ଖୋଜି ନ ପାଇ ପାଇଥାଏ କବିତାକୁ କବି।

ଅତୀତରେ ପକ୍ଷୀଟି ଥିଲା ରକ୍ତ ମାଂସ ଓ ଅସ୍ଥିର ଆର୍ଟ। ପ୍ରତାରଣାମୟୀ ସ୍ମୃତିର ଚାତୁର୍ଯ୍ୟ ! ବର୍ତ୍ତମାନର ପ୍ରେମିକାଟି ଅରଣ୍ୟର ନୀଳ ସବୁଜିମା ଆଚ୍ଛନ୍ନ ଗୋଟିଏ ନୂତନ ଜୀବନ ଓ ନୂତନ ଭାବ ଏବଂ ସଂପର୍କର ବୈଭବ। ତା'ଠି ନାହିଁ ରକ୍ତ, ମାଂସ ସ୍ନାୟୁ ଓ ଅସ୍ଥିର ଉପାଦାନ, ତାହାଠାରେ ରହିଛି କେବଳ ସାନ୍ତ୍ୱନା ଓ ସହାନୁଭୂତିପୂର୍ଣ୍ଣ ଆଶ୍ୱାସନା ଏବଂ ବଂଚିବାର ପ୍ରେରଣା ! ଆର୍.ଏସ୍. ଥୋମାସ୍ ପ୍ରଶ୍ନ କରିଛନ୍ତି: The artistry of your dwelling in the bare hill? ଆଉ ଟିକିଏ ପୂର୍ବରୁ ପୁଣି ସିଏ ଉଚ୍ଚାରିତ କରିଛନ୍ତି, 'I know, as I listen, that your speech... from your lips,' କ'ଣ ଅରଣ୍ୟର ଡାକରୁ ଶୁଭୁଚି ?

'your want of deference to the painter's skill,' ଯାହା The source of all poetry, clear as a rill' ନିଶବ୍ଦ ଅକାଶ ଓ ଅରଣ୍ୟର ଡାକରୁ ଯାହା ଶୁଭିଚି, ତାହା ଥୋମାସଙ୍କ 'A priest to his people'ଙ୍କୁ ଯେମିତି, କହି ଚାଲିଛନ୍ତି ! ତାହା ନୁହେଁ ଅନ୍ୟକିଛି, ତାହା କବିତାର ସୋର୍ସ ! ତାହା ଜଣେ ଶିଳ୍ପୀର ନିଆରା ଦୃଷ୍ଟି। ସେ ଦୃଷ୍ଟିକୁ ଚିହ୍ନାଇଛନ୍ତି Verrier Elwin Folk-song of maikal Hills' (page XIV)ରେ-

'I learned my back against an oak
I thought was a trusty tree.
But first it bent and then it broke;
My true love has forsaken me.'

ପୁଣି ଗୋଟିଏ କବିତାରେ ସିଏ ଉଚ୍ଚାରଣ କରିଛନ୍ତି:

'The cloth-plant grew till it covered with thorn-bush
The bind weed spread far over the wilds.
My lovely one is - here no more.
With whom? No, I sit alone.'

ପ୍ରକୃତ ପ୍ରେମ ପ୍ରେମିକଟିକୁ ତ୍ୟାଗ କଲା ପରେ ଯେଉଁ ନିସଙ୍ଗତାର ଯାତନା ପ୍ରାଣକୁ କରେ ଜର୍ଜରିତ ତା'ରି ଶବ୍ଦରୂପ କବିତା। ସେହି ଅତୃପ୍ତ ଓ ନିସଙ୍ଗ ମଣିଷର ବେଦନାକୁ ହାଡେ ହାଡେ ଉପଲବ୍ଧି କରିଥିଲେ ଟି.ଏସ୍. ଇଲିୟଟ୍। ତେଣୁ ସିଏ ଉଚ୍ଚାରିତ କରିଥିଲେ

'Go, my song, to the lonely and unsatisfied,
Go also to the nerve - wracked, go to the enslaved-by-convention
Bear to them my contempt for their oppressors.'
(Selected Poems)

ତିନୋଟି କାବ୍ୟଗ୍ରନ୍ଥ ପରେ ଚତୁର୍ଥ କାବ୍ୟ ସୋପାନକୁ ଅବତୀର୍ଣ୍ଣ ହେବାକୁ ଯାଉଛନ୍ତି କବି ଫଣୀନ୍ଦ୍ର ବାବୁ। ଯାହାର ଆରମ୍ଭରେ ଅଛି ଶବ୍ଦ, କବିତା ଓ ଭାବମୟ

ବିମ୍ବ ଏବଂ ତାହା ଅଭିବ୍ୟକ୍ତିର ମାଧ୍ୟମ ଶବ୍ଦ। ପୂର୍ବରୁ ନିଃଶବ୍ଦରୁ ଶବ୍ଦର ରଚନା ସିଏ ସାରି ଦେଇଛନ୍ତି। ଅବଶିଷ୍ଟ ରହିଛି ଯେଉଁ ଶୂନ୍ୟ ବିଂବ ତାହାରି ଆନନ୍ଦ ରୂପ ତାଙ୍କୁ କରିଛି ପ୍ରଣୟ ବିଭୋର। ଜୀବନର ଛନ୍ଦ ତାଙ୍କୁ କରିଛି ଯେଉଁଭଳି ମୁଗ୍ଧ, ତାକୁ ସିଏ ବହୁ ଲୋକଙ୍କୁ ବାଣ୍ଟି ଦେବାକୁ କରିଦେଇଛନ୍ତି ଶବ୍ଦ- ବିଂବ।

ଇଲିୟଟ୍ ଲେଖିଛନ୍ତି, “There is no doubt that a poet wishes to give pleasure, to entertain and divert people x x or diversion is enjoyed by as large and various number of people as possible.” କବିତା ସୁଖ ଦେବା ପାଇଁ, ଲୋକଙ୍କୁ ଆନନ୍ଦିତ କରିବା ପାଇଁ ରଚନା କରିଥାନ୍ତି କବି। କବିତା କବିଙ୍କ ବ୍ୟକ୍ତିଗତ ଅନୁଭବ ଏବଂ ବିମ୍ବମାନଙ୍କ ଏକ ସମ୍ମେଳନ। କିନ୍ତୁ ତାହା କାବ୍ୟିକ କୌଶଳରେ ନିର୍ମିତ ହୋଇଥିବା ହେତୁ ବହୁ ସଂଖ୍ୟକ ପାଠକଙ୍କ ମନକୁ କରିଥାଏ ସ୍ପର୍ଶ। ନିଜର ଅସହାୟତା, ନିଃସଙ୍ଗତା, ପ୍ରଣୟର ବିଫଳତା, ଯାତନା ବା ଅତୃପ୍ତ କଥା ବୋଲି କବିଙ୍କୁ ଦେଇଥାଏ ପ୍ରଶଂସା। ଏହି ଦୃଷ୍ଟିରୁ କବି ଜଣେ ସଫଳ ଲୋକ ପ୍ରତିନିଧି। ଶେଲୀ ମଧ୍ୟ ଲେଖିଛନ୍ତି : Poets are the unacknowledged legislators of the world.

ମହାବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟ ଅଧ୍ୟୟନ ଜୀବନର ‘Temple of delight’ ସରକାରୀ ବୃତ୍ତିଲିପ୍ତ ନିଃସଙ୍ଗ ଜୀବନର ସ୍ମୃତି ହୋଇ ଯାଇଛି। ଚୁପ୍‌ଚାପ୍ ସୌନ୍ଦର୍ଯ୍ୟମୟ ସେହି ଆକାଶର ଆକୁଳ ସ୍ୱର ହୋଇଛି ପରବର୍ତ୍ତୀ ‘Veil’d Meloncholy’ ର ସ୍ୱର। ଅଙ୍ଗୁର ତୋଳା ରତୁଟିଏ ପରି ତାହା ଆସିଛି। ପରିଧାନ କରିଛି ସବୁଜ ପତ୍ରର ମୁକୁଟ। ସବୁଜିମାର ଶିଖାରେ ଉଜ୍ଜ୍ୱଳି ଉଠିଚି ସଂସାର। ଫଳିଚି ଏବଂ ପାଚିଛି କବିତାର ଡାଳ ଭର୍ତ୍ତି ସବୁଜ ଫଳ। କୀଟସ୍‌ଙ୍କ ‘More happy love! more happy, happy love! For ever warm and still to be enjoyed.’ ଯାହାକୁ ଜାଣନ୍ତି କବି ଫଣୀନ୍ଦ୍ର ଏବଂ ବିତରିତ କରି ଦେଇଛନ୍ତି ତାହାକୁ ସମକାଳକୁ। ତାଙ୍କ କବିତା ଭଲ ପାଇବାର ତୃଷା ପ୍ରବେଶ କରିଥାଏ ଆତ୍ମା ଭିତରକୁ। ଶେଲୀ ଲେଖିଛନ୍ତି ଇଡେନ୍ ଧ୍ୱଂସ ପ୍ରାପ୍ତିରୁ ସୃଷ୍ଟି ହୋଇଥିଲା ସ୍ୱର୍ଗର ନଂଦନକାନନ ଏବଂ ତାହା ପାର୍ଥିବ ଫୁଲବନ ନୁହେଁ, ତାହା ନିଜେ କବିତା। ଯାହାକୁ ଉଚ୍ଚାରଣ କରିଛନ୍ତି କବି ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କ ସୁକୁମାର ଶିଳ୍ପ।

**ପ୍ରେମର ଗଜରା, ମୁହୂର୍ତ୍ତର ଯଂତ୍ରଣା, ଆକାଶ ଡାକୁଚି ଆ’**

‘I went off under the sky, Muse and I was yours : oh, la, la what splendid love affairs I dreamed of ! -*Rimband*

ସ୍ମୃତିର ଲଫାପାରେ ପ୍ରେମ, ଜୀବନ ଏକ ସବୁଜ ଗଛ ସୃଜନୀରେ ସଂଜୀବୀତ ଏବଂ ଶେଷକୁ ଆକାଶ ଅନୁପମ ସୌନ୍ଦର୍ଯ୍ୟର ସୂତ୍ର, ବାନ୍ଧି ରଖିଛି ଦୁଃଖ, ସୁଖ, ଦିବା,

ନିଶି, ପ୍ରଗତି ଓ ଗତି, ସମୟର ନିର୍ଜନ ପକ୍ଷୀର ଦୁଇ ଆଖି। ମାଟିର ତୃଷାର୍ତ୍ତ ମାନଚିତ୍ର ଭିତରେ ପୋତି ହୋଇରହିଛି ଜୀବନର ଚେର, ଆକାଶର ସୀମା ଓ ପ୍ରେମର ଅକପଟତା, ଯାହାକବିତାର ଅସ୍ତିତ୍ୱ; ସମୟର ଗଭୀର ତଅଁରରେ ଖୋଜୁଚି ଗୋଟିଏ ବାଟ। ଶତାବ୍ଦୀର ଏଇ ବାଙ୍‌ମୟୀ ଅବତାରକୁ ବାସ୍ନାୟିତ ବାଟଟିଏ ଦେବାକୁ ଡାକିଛି ଆକାଶ! ନିଜ ଭିତରେ ହଜି ଯାଉଛି ଅଦୃଶ୍ୟ ପବନ। ଭସାମେଘ ତୃଷାର୍ତ୍ତ ଚିରଦିନ। ନୀରବତାର ଜଂଜାଳରେ ହଜି ଯାଉଛି ସୂର୍ଯ୍ୟର ଜ୍ୱାଳା, କିଂତୁ ସ୍ମୃତିକୁ ଆଙ୍କିଲେ ସୃଷ୍ଟି ହେଉଛି ମହାନଦୀ। ମଂଦିରର ମୂର୍ତ୍ତିପରି, ଶୀତରାତିର ସ୍ୱପ୍ନପରି, ସେ ନଦୀ ମଗ୍ନ କଟାକ୍ଷରେ କରୁଛି ମତୁଆଲା। 'ନିଶବ୍ଦ ଆକାଶର ଡାକ' ପ୍ରକୃତରେ ଏକ କାମମୟୀ ନକ୍ସା! କବିତାର ପ୍ରତିଟି ନିଶ୍ୱାସରେ ଭରିଛି ଚମ୍ପାଫୁଲର ବାସ୍ନା। 'ନିଶବ୍ଦ ଆକାଶର ଡାକ' ଭଲ ପାଇବାର ଏକ ଶବ୍ଦରୂପ! ମୋଟ ତେୟାଳିଶଟି କବିତା; ସବୁତକ ମଲ୍ଲୀପୁଷ୍ପ କିଂବା ଗୋଲାପ। ପ୍ରତି କବିତା ଶୀର୍ଷରେ ରହିଛି ଗୋଟିଏ ଗୋଟିଏ ଚିତ୍ର। କବିତାକୁ ଆକର୍ଷଣୀୟ କରିବାକୁ ମନଲୋଭା ବସ୍ତ୍ର! 'ନିଶବ୍ଦ ଆକାଶର ଡାକ'... ଆକାଶ ଡାକୁଚି ଶବ୍ଦରେ ନୁହେଁ, ଠାରରେ? ନିଶବ୍ଦରେ ଡାକୁଚି ଆକାଶ, ସଫେଦ୍ ନୀଳ ସତ୍ୟର ସାରାଂଶ! ଉର୍ଦ୍ଧ୍ୱଦୈହିକ ମାୟାର ସ୍ୱତ୍ୱ! ଠିକ୍ ଇମିତି ବିଂବଟିଏ ଅଗ୍ରଜ କବିଙ୍କ କବିତାରୁ ଭେଟୁ : 'ମୁଁ ଭଲପାଏ-ତାକୁ ନୁହେଁ, ପ୍ରେମକୁ : ଭଲ ପାଇବାର ଅନୁଭବକୁ'। (କ+ଖ=ଗ / ରାଜେଂଦ୍ର କିଶୋର ପଣ୍ଡା)।

ପୁଣି ସେଇ ମୂଳ ବିସ୍ମୟବାଚୀ-ଆକାଶ କ'ଣ; କବିତା କ'ଣ; ଫୁଲ କ'ଣ; କାହାକୁ କହନ୍ତି ପ୍ରେମ? ଜୀବନ କ'ଣ? ସ୍ୱର୍ଗ କ'ଣ; ନରକ କେଉଁଠି? ବୈକୁଣ୍ଠକୁ ପାଇବାକୁ ମାନବକୁ ଆଉ କେତେ କାଳ ଭୋଗିବାକୁ ପଡିବ? ଛଂଦି ହୁଏ ଅନ୍ୱେଷାର ପାଦ। ରାସ୍ତା ତ ସିଧା ଆସେ ନାହିଁ ସାମ୍ନାକୁ! ସହଜରେ କ'ଣ ବୁଝି ହୁଏ ଅନୁଭବର ଏହି ମଂତ୍ରମୟୀ ଅପରିହାର୍ଯ୍ୟ ଓ ଅବିଛିନ୍ନ ଧାରାକୁ!କେବଳ ଭୋଗ କରିବାକୁ ହୁଏ ସଂସାରର ଧାର୍ଯ୍ୟ ସ୍ରୋତର ଔଜଲ୍ୟକୁ। ଆଂଜୁଳାରେ ହୁଏ ନାହିଁ ତୋଳି। ନିଃଶବ୍ଦ ଆକାଶର ଡାକକୁ ଶୁଣି ପାରେ ନାହିଁ କର୍ଣ୍ଣ, ଶୁଣି ଥାଏ ମନ ଏବଂ ତାକୁ ଭୋଗ କରିଥାଏ ପ୍ରାଣ। କବିତା କବିର ପ୍ରେମ। କବିତା କବିର ଜୟସ୍ତମ୍ଭ। କବିତା କବିର ନିଜ ପ୍ରେମିକା! ଭ୍ଲାଡ଼ିମିର ମାୟକୋଭସ୍କିଙ୍କ ଦେଖନ୍ତୁ ଏଇ ପଂକ୍ତି କେତେଟା : My words / and my love / form a triumphal arch :/ through it, in all their splendour,/ leaving no trace, will pass / the inamoratas of all the age'! କବିତା କବିର ସବୁକାଳେ ପ୍ରେମିକା ତା' କବିତ୍ୱର ଜୟଟୀକା! ଚିରକାଳ ସାଇତିଛି କବି। କବିତା କବିର ଭଲ ପାଇବା। କବିତା କବିର ଶୂନ୍ୟ ରମଣ। କବିତା ସ୍ରଷ୍ଟାର ଆତ୍ମନେପଦୀ। କବିତା ଗୋଟେ

[illegible], [illegible] ମୁହିଁ ଦେଖେ ଆତ୍ମା; କବିର। 'ନିଶବ୍ଦ ଆକାଶର ଡାକ'; ଆକାଶ ଆତ୍ମାକୁ ଡାକୁଚି ଚୁପ୍‌ଚାପ୍। ଯେମିତି ପ୍ରିୟ ପୁରୁଷ ଡାକେ ଠାରହୀନ ଗୋଟିଏ ଭାଷାରେ ତା' ପ୍ରାଣପ୍ରିୟାକୁ। ସମୟରୁ ସମୟାନ୍ତରକୁ ଶୁଣା ଯାଉଥିବା ଡକ୍ଟର ନଂଦଙ୍କ ପହିଲି ଡାକ 'ପ୍ରତିଶ୍ରୁତି'। 'ମୋ ଆତ୍ମାର ପ୍ରତି ଭଗ୍ନାଂଶରେ / ଭାସି ଆସେ ତମରି ସ୍ୱର୍ଣର ବାସ୍ନା'... ସାଂଖ୍ୟର ପୁରଷ ଓ ପ୍ରକୃତି ରହସ୍ୟ। 'ମୁଁ' କାବ୍ୟ ନାୟକ। ବରଂ ସଂପର୍କଶୀଳ ମଣିଷ ନିଜେ 'ମୁଁ'! ଠିକ୍ ସେହିପରି 'ତୁମେ' କବିତାରେ ଦ୍ୱିତୀୟ ପୁରୁଷ ଏକବଚନ ନୁହେଁ, ନୁହେଁ ପ୍ରିୟତମାର ସର୍ବନାମ, ବରଂଏହା ସଂପର୍କଶୀଳତାର ଏକ ସିଂବଲ୍।

ଡ. ନଂଦ କବିତା ତ ରଚନା କରି ନାହାନ୍ତି, ଅକ୍ଷରରେ ସୃଷ୍ଟି କରିଛନ୍ତି ଓମାର ଖୟାମୀ ଗୋଲାପ। ରବାୟତ୍‌ର ବାସ୍ନାରେ ତାଙ୍କ ସବୁ ଫର୍ଦ୍ଦର କୋଠରୀ ସୁବାସିତ। ଆଖି, ଛାତି ଓ ପାଟି ବୁଜି ଦିଏ ସଜଡ଼ା ଶବ୍ଦର ଗୋଲାପୀ ଆଭା। ପ୍ରକୃତରେ କବିଟି ପ୍ରେମିକ। ସେତେ ପ୍ରେମ ନ ଥିଲେ ଏମିତି ଖୋଲେ ନାହିଁ ହୃଦୟ। ହୃଦୟ କୋଳପ ଖୋଲିବାକୁ ଭଲ ପାଇବା ଈଶ୍ୱରଙ୍କ ଦତ୍ତ ଏକମାତ୍ର, କଂଚି। ସେ କଂଚିଟି ଯେତେବେଳେ ସିଏ ହଜେଇ ବସୁଛି, ଯେମିତି କାଳିଦାସଙ୍କ କାବ୍ୟ-ନାଟକ ନାୟିକା ଶକୁନ୍ତଳା ହଜାଇ ଦିଏ ଦୁଷ୍ମନ୍ତଙ୍କ ଅଭିଜ୍ଞାନ ମୁଦ୍ରିକା; ଚିପୁଡି ହୋଇଯାଏ କଲିଜା। ନିଗିଡି ଆସେ କବିତା। ମାର୍କ୍ୟୁସ୍ ଡି ସେଡ୍ କହିଥିଲେ, ଭଲ ପାଇବା 'An illusion', ସର୍‌ରିଆଲିଷ୍ଟ୍ ଆଁଦ୍ରେ ବ୍ରିଟୋନ୍ କହିଥିଲେ, 'Love is not an illusion: it is the mediation between man and nature'। ମାନବ ଓ ପ୍ରକୃତି ସହିତ ସଂପର୍କର ମଧ୍ୟସ୍ଥି! ଋଷୀୟ କବି Stepan Shchipachev (1899-1980) ଗୋଟିଏ କବିତାରେ ଲେଖିଛନ୍ତି: 'For love is like a glorius song / To write it is no easy task.

ଭଲ ପାଇବା ଗୀତଟିଏ। ତାକୁ କେବଳ ଗାଆ ଯାଇହୁଏ। ପ୍ରେମର ଗଜରାରେ ଗୁଂଥା ଯାଇଥାଏ ଯେଉଁ ପୁଷ୍ପ ତାହା କବିତା, ମୁହୂର୍ତ୍ତର ଗୋଲାପୀ ଯଂତ୍ରଣାର ଅନ୍ୟନାମ ପ୍ରେମ ଓ ତହିଁରୁ ମୁକ୍ତି ପାଇଁ କାମୁଡୁ ଥିବା ତାଟିଆ : ଆକାଶ ଡାକୁଚି ଆ'! ମଣିଷ ତ ନୁହେଁ ତୀର୍ଯ୍ୟକ; ଅନନ୍ୟୋପାୟ ବିଚାରାଟିଏ ସେ କଳ୍ପନାର ଡେଣାରେ ଯାତ୍ରା କରିଥାଏ ପ୍ରଣୟାଲୋକ! 'ତମରି ଜିଭରେ ଲେଖିଗଲି/ପୃଥିବୀର ନିରାହତମ ପାପର ନଗ୍ନ ପ୍ରବଣତା/ଶେଷ ନୀରବତା' ଡ. ନଂଦଙ୍କ ନିରାଲମ୍ବ ବାର୍ତ୍ତା। କବି ଲେଖେ କ'ଣ; ସିଏ ଜାଣେ? ଭ୍ରମର ଗୁଣୁଗୁଣୁ ହୁଏ, କ'ଣ ଗାଏ, ସିଏ ଜାଣେ? ଝରଣା ଜାଣେ ତା' କୁଳୁକୁଳୁର ମାନେ? କବି ବାଟବଣା ପକ୍ଷୀ। ନିଃଶବ୍ଦ ଆକାଶ ତଳେ ଯାଏ ସାଥୀ ପକ୍ଷୀଟିକୁ ଡାକି। ନା' ଜୀଇବାର ଜ୍ୱାଳାରେ ଅସ୍ଥିର ତା' ପ୍ରାଣପକ୍ଷୀ କରୁଥାଏ କରୁଣ ଚିତ୍କାର?

ମୋର ଏ ଆକାଶ ଦରକାର ନାହିଁ, ରେ ଈଶ୍ୱର ଫେରାଇ ନେ' ମୋ'ଠୁ ତୋ ଦୟା ଟିକକ! ଏ ଦେହ ମୋର ଆଉ କ'ଣ ହେବ? ମୁଁ ତ ଅୟୁତ ଯୁଗରୁ ଜୀଉଛି, ଏକ ଅଲୋଡ଼ା ଉଚ୍ଚାରଣ! ମୋ'ଠୁ ଫେରାଇ ନେ'ଏଇ କାମମୟୀ ମାଂସାଳ କାରୁକାର୍ଯ୍ୟ! କବି ଖୋଜେ କ'ଣ? କସ୍ତୁରୀମୃଗ ଖୋଜିଥାଏ କ'ଣ? କାହିଁକି ବାୟୁ ଗୁରିଆ ଲୁଗାପରି ଫିଟି ବ୍ୟାପ୍ତିଯାଏ ସାରା ପୃଥିବୀ? ଆକାଶରେ ଫୁଟେ ତାରା, କାହିଁକି ଫୁଟେ ଫୁଲ? ଯାହା କବିତା ତାହା ପ୍ରେମ! ପ୍ରେମ ଓ କବିତା, ଦୁହେଁ ଯାକ ଏକଏକ ଅନୁତ୍ତରିତ ଜିଜ୍ଞାସା।

କବିତା ନିଜେ ଏକ ପ୍ରେମିକା। ତାକୁ ପାଇବାର ପ୍ରତିଶ୍ରୁତି ପାଦଚିହ୍ନ ପରି ଥିବ; ସିଏ ଆସିବଆସିବ ହେଉଥିବ କିଂତୁ ଆସୁ ନ ଥିବ! ତା ଗର୍ଭକୋଷରେ ଅଲଗା ଲୋକର ଆତ୍ମା ଶାଖା ମେଲିଥିବ! ଅଥଚ ପ୍ରତିଶ୍ରୁତି କଅଁଳ ଛନଛନ ଥିବ। ଯେଣୁ ଏଆରି ନାଁ, ଜୀବନ!

ଡ. ନଂଦଙ୍କ ପ୍ରତ୍ୟେକଟି ନିଶ୍ୱାସ ଶାଗୁଆ। ତାଙ୍କ କବିତା ଏକ ଅବସ୍ଥା; ଯେଉଁଠି ଆକାଶ ସୃଷ୍ଟି କରିଛି ବିଜନତା ଏବଂ ବିଜନତାରୁ ମଧୁରତା ରୋମାଣ୍ଟିକ୍ ମନ୍ମୟତା କରିଛି ଅମୃତ ଅଭୀପ୍ସା। ମିଥ୍ୟା ପାର୍ଥିବ ପ୍ରଣୟ ରୂପାନ୍ତରିତ ହୋଇଛି ଅର୍ଥଯୁକ୍ତ ସ୍ୱତଃସିଦ୍ଧ ସତ୍ୟରୂପେ। ପ୍ରାୟ ସବୁକବିତା ନେଇଛନ୍ତି ଜନ୍ମ ସଦ୍ୟୋଜାତ ବସ୍ତୁ ସହିତ। ବେଶ୍ ସ୍ପର୍ଶନଶୀଳ, ସାଙ୍ଗୀତିକ ଓ ସମସାମୟିକ। ସୀମିତତାକୁ କରି ନାହିଁ ଆଲିଙ୍ଗନ ତୃଷ୍ଣାର ନୀରବତା। ପରିଚିତ ସ୍ମୃତି ଆତୁର ମନ ଆଶା ଝରର ସଂଗୀତରେ ପ୍ରଗଲ୍‌ଭ। ଏ ପ୍ରଗଲ୍‌ଭତା କବିର ସହଚର ଚିରକାଳ। ଆଶାର ଯୌବନ ଯଦି ନ ରହିବ, ଜୀଇବାର ରମଣରତ ହେବ କିପରି ଦେହର ସନ୍ନ୍ୟାସୀ? ଆତ୍ମାତ ଅକାଶଟିଏ; ସଂସାରର ହାନି ଲାଭରେ ତା' ଯାଏ ଆସ ନ ଥାଏ। ସେ କେବଳ ଦର୍ପଣଟିକୁ ଅନାଇ ଥାଏ! ପ୍ରଲୋଭନ ରଜ୍ଜୁଟିଏ ହୋଇ ବାନ୍ଧି ପକାଏ ସବୁ ପ୍ରତିଶ୍ରୁତିକୁ। ପ୍ରତିଶ୍ରୁତିସବୁ ଆକାଶପରି ସୁଂଦର, ମଧୁର ଓ ଫମ୍ପା ବି! କବି ସବୁ ଜାଣେ। କିନ୍ତୁ ବୁଝିବାକୁ ନାରାଜ ଥାଏ। କାରଣ ସେ ଏକ ଶିଶୁ। ଚିତ୍ରମୟ ଜଗତ ତା' ଜନନୀ। ଅନୁଭୂତିର ସ୍ତନ ଚୋଷିଚୋଷି ସିଏ ଅର୍ଦ୍ଧନିଦ୍ରିତ। ଯେମିତି ଜଣେ ବାଟବଣା ପକ୍ଷୀ ନିଃଶବ୍ଦ ଆକାଶରେ ଭାସୁଚି! ଆକାଶର ମଧୁର, କୋମଳ ଓ ସୌନ୍ଦର୍ଯ୍ୟମୟ ଠାରହୀନ ଡାକ ତାକୁ ଭୁଲାଇ ଦେଇଛି ତା' ନୀଡ (ଆତ୍ମା)ର ବାଟ।

ମାନବ ଜଣେ ବାଟବଣା ପଥୁକୀ ନୁହେଁ କି? କିଏ ଏଠି ଅଣନିଶ୍ୱାସୀ ହୋଇ ଭୋକରେ ଦୌଡ଼ୁ ନାହିଁକି? ଖରାମଖା ଟାଙ୍ଗରା ମାନବ ଜୀବନ। ସେଇ ଜୀବନକୁ ନେଇ ଡ.ନଂଦ ଲେଖିଛନ୍ତି, 'ତମେଇ ମୋ ଦୁଃଖ', ପୁଣି- 'ମୋ ଦୁଃଖ ବା କ'ଣ?

ନହୁଲି ସକାଳପରି ତମ ମୁହଁ × × ତମ ମୋ ଭିତରେ ନିବିଡ ସମୁଦ୍ର" ! ସମୁଦ୍ର... ଯେଉଁଠି ନ ଥାଏ ଥଳ କି କୂଳ; ଅମାପ ନୀଳିମା, ଆକାଶ ସହିତ ମିଶି ଯାଇଥାଏ ଚକ୍ରବାଳ ! ମାତ୍ର ଘଟିଥିବା ନିଷ୍ଠୁର ଘଟଣାଟି ହେଲା :

'ସେଇ ମୁହଁର ବଂଦୀଶାଳାରେ / ନୀରବତାକୁ ଶୂଳୀ ଚଢ଼ା ହେଉଛି / ସମୟରେ ଯୋଡି ଦିଆ ଯାଇଛି / ଭିନ୍ନ ଏକ ସ୍ୱର ।' (ପ୍ରିୟତମାଷ୍ଟୁ ନିଶବ୍ଦ ଆକାଶର ଡାକ)

କାବ୍ୟପୁରୁଷ ଘୋଷଣା କରିଛି ଏଥିରେ ନିଜର ଅସ୍ତିତ୍ୱ : 'ଏବେ ପଥର ଭିତରେ ସ୍ୱାକ୍ଷରଟିଏ ମୁଁ ! ଅସ୍ତିତ୍ୱର କି କମନୀୟ ଓ ସିଂବଲିକ୍ ଅଭିବ୍ୟକ୍ତି ! ସେହିପରି - 'ସମୟ କ'ଣ ସର୍ବଶେଷ ଉତ୍ତର ?×× ପ୍ରେମ କ'ଣ ଏକମାତ୍ର ବିକଳ୍ପ ସମାଧାନ' ? ନୁହେଁ ତ ଆଉ କ'ଣ ?

ସ୍ୱପ୍ନମଖା ଚାରା ମହାଦ୍ରୁମ ପାଲଟି ମଣିଷର ଅସହାୟତାକୁ ପ୍ରଶ୍ନ କରିଛି । ଗୋଟିଏ ଶତାବ୍ଦୀ ତଳୁ ନିଜ କବିତାର ସନଂଦରେ ଲେଖି ଦେଇଛନ୍ତି ଟି.ଏସ୍. ଇଲିୟଟ । ସମୟ ହିଁ ସର୍ବଶେଷ ଉତ୍ତର କେବଳ ନୁହେଁ, ପ୍ରଶ୍ନ ମଧ୍ୟ !

ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ- ସବୁ ଏକ ! ଦୂରରୁ ଶୁଭୁଥାଏ ଆକାଶର ଡାକ ! ଉଠୁଥାଏ ମାଟିରୁ ମହକ । ପୂର୍ବମୁଖା ବାଟୋଇ ଚାଲିଥାଏ । ପିଠିରେ ତା' ଓହଳି ଥାଏ ଚିରକାଳ ଦୁଃଖର ସିଂଦୁକ ! ନିରୀହ ମଣିଷ: 'କାନ ଡେରିଲେ ଶୁଭେ ସମୁଦ୍ର/ଦଶ ଦ୍ୱାର ରୁନ୍ଧି ଦେଲେ ଆକାଶ/ଏକ ଶାଶ୍ୱତ ଦୁଃଖର କାନ୍ଥରେ/ସମୟ ବନି ଯାଏ ଚିତ୍ରପଟ' ।

ସମୟର ସେଇ ଚିତ୍ରପଟ ! ଆଧୁନିକ ମଣିଷର ଚେତନା ଜଟିଳ, ଏହା ତା'ରି ବ୍ୟଂଜନା କେବଳ !





ନକୁଳ ଚଂଦ୍ର ସାହୁଙ୍କ

# ସୃଷ୍ଟିର ସ୍ନାୟୁ ଓ ଶବ୍ଦର ଆତ୍ମା

ISBN 978-81-89777-54-8